# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**October 2013**

୭୦ ଭାଗ	୩ୟ ସଂଖ୍ୟା	ଆଶ୍ୱିନ-କାର୍ତ୍ତିକ ଅକ୍ଟୋବର ୨୦୧୩



**ପ୍ରତିଖଣ୍ଡ : ଟ. ୫.୦୦**



ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪-୨୫୩୦୨୧୧

ଅକ୍ଟୋବର –୨୦୧୩

# ସୂଚୀ

❖ ❖ ❖

# ଶ୍ରଦ୍ଧାଞ୍ଜଳି



## ମହାତ୍ମା ଗାନ୍ଧୀ

**୦୨.୧୦.୧୮୬୯ – ୩୦.୦୧.୧୯୪୮**

## ମୋ’ ସ୍ୱପ୍ନର ଭାରତ

‘ମୁଁ ଏପରି ଭାରତବର୍ଷ ନିମନ୍ତେ କାମ କରିବି, ଯେଉଁଠି ଦରିଦ୍ରରୁ ଦରିଦ୍ରତମମାନେ ଅନୁଭବ କରିବେ ଯେ ଏହା ସେମାନଙ୍କର ଦେଶ, ଯାହାର ନିର୍ମାଣରେ ସେମାନଙ୍କର ଫଳପ୍ରଦ ଅବଦାନ ରହିଥିବ, ଏପରି ଭାରତବର୍ଷ ଯେଉଁଠାରେ କି ଜନସାଧାରଣଙ୍କ ମଧ୍ୟରେ ଛୋଟ ବଡ଼ ବୋଲି କିଛି ଶ୍ରେଣୀ ଭେଦ ନଥିବ, ଏପରି ଭାରତବର୍ଷ ଯେଉଁଠାରେ କି ସମସ୍ତ ସମ୍ପ୍ରଦାୟ ପୂର୍ଣ୍ଣ ସଂଗତିରେ ବାସ କରିବେ, ଏପରି ଏକ ଭାରତବର୍ଷ ଯେଉଁଠାରେ ଅଭିଶପ୍ତରୂପୀ ଅସ୍ପୃଶ୍ୟତା କିମ୍ବା ମାଦକ ଓ ନିଶାଦ୍ରବ୍ୟର ସ୍ଥାନ ନଥିବ, ପୁରୁଷଙ୍କ ପରି ମହିଳାମାନେ ସମାନ ଅଧିକାର ଉପଭୋଗ କରିବେ ଆଉ ଅବଶିଷ୍ଟ ପୃଥିବୀ ସହ ଆମେ ଶାନ୍ତିରେ ସହାବସ୍ଥାନ କରିବୁ । ଏହା ହେଉଛି ମୋ’ ସ୍ୱପ୍ନର ଭାରତବର୍ଷ ।’

– ଏମ୍.କେ. ଗାନ୍ଧୀ

# ଶ୍ରଦ୍ଧାଞ୍ଜଳି



ସର୍ଦ୍ଦାର ବଲ୍ଲଭଭାଇ ପଟେଲ

୩୧.୧୦.୧୮୭୫ – ୧୫.୧୨.୧୯୫୦



ଜୟପ୍ରକାଶ ନାରାୟଣ

୧୧.୧୦.୧୯୦୨ – ୦୮.୧୦.୧୯୭୯



ଲାଲ ବାହାଦୂର ଶାସ୍ତ୍ରୀ

୦୨.୧୦.୧୯୦୪ – ୧୧.୦୧.୧୯୬୬



ଉତ୍କଳମଣି ଗୋପବନ୍ଧୁ ଦାସ

୦୯.୧୦.୧୮୭୭ – ୧୭.୦୬.୧୯୨୮

# ସହଯୋଗ ପାଇଁ ଧନ୍ୟବାଦ – ମୁଖ୍ୟମନ୍ତ୍ରୀ



ବନ୍ଧୁଗଣ, ନମସ୍କାର

ଗତକାଲି ଆମେ ଏକ ବଡଧରଣର ବାତ୍ୟାର ସାମନା କରିଛେ । ଏହି ବିପଦ ସମୟରେ ଭୟ ନକରି ସରକାରଙ୍କୁ ସହଯୋଗ କରିବାକୁ ମୁଁ ଅନୁରୋଧ କରିଥିଲି । ଆପଣମାନେ ମୋର ଅନୁରୋଧ ରକ୍ଷା କରି ସରକାରଙ୍କୁ ସହଯୋଗ ଦେଇଥିବାରୁ ମୁଁ ଆପଣମାନଙ୍କୁ ଧନ୍ୟବାଦ ଜଣାଉଛି ।

୧୯୯୯ରେ ଓଡିଶା ଏକ ମହାବାତ୍ୟାର ସାମନା କରିଥିଲା । ସେହି ସ୍ମୃତି ଆଜି ମଧ୍ୟ ଆମ ସମସ୍ତଙ୍କ ମନରେ ଜାଗ୍ରତ ରହିଛି । ଆଜି ଆମେ ସମସ୍ତଙ୍କ ସହଯୋଗରେ ପ୍ରାୟ ନଅ ଲକ୍ଷ ଲୋକଙ୍କୁ ନିରାପଦ ସ୍ଥାନକୁ ନେଇପାରିଛୁ ଏବଂ Human Casualtyକୁ ଆମେ ରୋକି ପାରିଛୁ । ଏହା ହେଉଛି ପ୍ରାକୃତିକ  ବିପର୍ଯ୍ୟୟ ସମୟରେ ଦେଶର ସବୁଠାରୁ ବଡ evacuation operation.

ଏହି ବିପତ୍ତି ସମୟରେ ସରପଞ୍ଚ ଏବଂ ଅନ୍ୟ ନିର୍ବାଚିତ ଲୋକ ପ୍ରତିନିଧିମାନେ ଜନସାଧାରଣଙ୍କୁ ଯେଭଳି ସେବା ଯୋଗାଇ ଦେଇଛନ୍ତି, ସେଥିପାଇଁ ମୁଁ ସେମାନଙ୍କୁ ଧନ୍ୟବାଦ ଜଣାଉଛି ।

ଦଶହରା ପୂଜା ସମୟରେ ସରକାରୀ କର୍ମଚାରୀମାନେ ଯେଭଳି ନିଃସ୍ୱାର୍ଥପର ଭାବରେ ସେବା ଯୋଗାଇଛନ୍ତି, ସେଥିପାଇଁ ମୁଁ ସେମାନଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି । ଏହା ସହିତ ସେମାନଙ୍କ ପରିବାରର ସହଯୋଗ ପାଇଁ ମଧ୍ୟ ମୁଁ ଧନ୍ୟବାଦ ଜଣାଉଛି ।

ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଗଣମାଧ୍ୟମର ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଆନନ୍ଦର କଥା ଏହି ବିପଦ ସମୟରେ ଇଲେକ୍ଟ୍ରୋନିକ ଓ ପ୍ରିଣ୍ଟ ଗଣମାଧ୍ୟମ ଲୋକଙ୍କୁ ସଚେତନ କରିବାରେ ମଧ୍ୟ ସହଯୋଗ କରିଛନ୍ତି । ସେଥିପାଇଁ ମୁଁ ଗଣମାଧ୍ୟମକୁ ଧନ୍ୟବାଦ ଜଣାଉଛି । ସେହିପରି ସିଭିଲ୍ ସୋସାଇଟ୍ ଯେଭଳି ସାହାଯ୍ୟ ଓ ସହଯୋଗ ପାଇଁ ଆଗେଇ ଆସିଛି, ସେଥିପାଇଁ ମୁଁ ସେମାନଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି ।

ବାତ୍ୟାର ପ୍ରଭାବ ଧୀରେ ଧୀରେ କମୁଛି । ସ୍ୱାଭାବିକ ଅବସ୍ଥା ମଧ୍ୟ ଶୀଘ୍ର ଫେରି ଆସିବ । ବାତ୍ୟା ସମୟରେ ଲୋକଙ୍କ ଜୀବନ ରକ୍ଷା ଆମର ସବୁଠାରୁ ବଡ ଦାୟିତ୍ୱ ଥିଲା । ମୁଁ ଭାବୁଛି ଆମେ ସେଥିରେ ସଫଳ ହୋଇଛୁ । କିନ୍ତୁ ବାତ୍ୟାରେ ଅନେକ ସମ୍ପତ୍ତି ନଷ୍ଟ ହୋଇଛି । କ୍ଷତିଗ୍ରସ୍ତ ଲୋକଙ୍କ ଥଇଥାନ ବର୍ତ୍ତମାନ ଆମ ପାଇଁ ସବୁଠାରୁ ବଡ ଚ୍ୟାଲେଞ୍ଜ । ଥଇଥାନ କାମ ଯେପରି ଖୁବ୍ କମ୍ ସମୟ ମଧ୍ୟରେ ହୋଇପାରିବ, ସେଥିପ୍ରତି ମୁଁ ବିଶେଷ ଦୃଷ୍ଟି ଦେବି । ମୋର ବିଶ୍ୱାସ ଆପଣମାନଙ୍କ ସହଯୋଗରେ ଆମେ ଥଇଥାନ କ୍ଷେତ୍ରରେ ମଧ୍ୟ ସଫଳ ହୋଇପାରିବା ।

**ଧନ୍ୟବାଦ**

**(ବାତ୍ୟା ପରଦିନ (ତା୧୩.୧୦.୧୩ରିଖ) ରାଜ୍ୟବାସୀଙ୍କ ଉଦ୍ଦେଶ୍ୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ବାର୍ତ୍ତା)**

**ସମ୍ପାଦକୀୟ**

# ଗାନ୍ଧୀ ଜୟନ୍ତୀର ଅନୁଚିନ୍ତା: ଗାନ୍ଧିଜୀ କାହାନ୍ତି ?

ଅକ୍ଟୋବର ମାସର ଆଗମନ ଆମ ଭାବ ରାଜ୍ୟକୁ ଏପରି ଭାବେ ଆନ୍ଦୋଳିତ କରି ଦିଏ ଯେ, ଅନ୍ୟ କୌଣସି ମାସ ସେପରି ଭାବେ ଆମ ମନ, ମୁନ ଚୈତନ୍ୟକୁ ଏତେ ଆନ୍ଦୋଳିତ କରିପାରେନା । ଅକ୍ଟୋବର ଦୁଇ ତାରିଖ– ଆମ ପାଇଁ ଅର୍ଥାତ୍ ଭାରତୀୟମାନଙ୍କ ପାଇଁ ଏଇଥି ଲାଗି ମହତ୍ତ୍ୱପୂର୍ଣ୍ଣ ଯେ, ୧୮୬୯ ସାଲ୍‌ର ଠିକ୍ ଏହିଦିନ ଭାରତ ଭୂମିରେ ଗୌତମ ବୁଦ୍ଧଙ୍କ ପରେ ଅହିଂସାକୁ, ମାନବପ୍ରେମକୁ ଓ ସମଗ୍ର ଜଗତକୁ ଏତେ ପରିମାଣରେ ଦିବ୍ୟ ଦୃଷ୍ଟିରେ ନିରୀକ୍ଷଣ କରିଥିବା ଆଉ ଜଣେ ମହାମାନବଙ୍କର ଆବିର୍ଭାବ ଘଟିଥିଲା । ତାଙ୍କର କଥନୀ ଓ କରଣୀ, କର୍ମ ଓ ଉଚ୍ଚାରଣରେ ଆଦୌ ପ୍ରଭେଦ ନଥିଲା । ସେହି ମହାମାନବ ଜନ୍ମ ବେଳେ ନାମ ପାଇଥିଲେ ମୋହନ ଅର୍ଥାତ୍ ମୋହନ ଦାସ କରମଚାନ୍ଦ ଗାନ୍ଧୀ, ମାତ୍ର ମୃତ୍ୟୁ ବେଳକୁ ସେ ଆମ ପାଇଁ କେବଳ ବାପୁଜୀ ହୋଇ ରହିଯାଇଥିଲେ ଏବଂ ଜଗତ୍‌ଜନଙ୍କ ନିକଟରେ ମହାତ୍ମା ଗାନ୍ଧୀ ।

ତାଙ୍କର ଜନ୍ମ ଏକ ଦିବ୍ୟ ସଂଦେଶକୁ ବହନ କରିଥିଲା । ତାଙ୍କ ମୃତ୍ୟୁ କିନ୍ତୁ ତା'ଠାରୁ ଆହୁରି ଅଧିକ ଦିବ୍ୟତାର ବାର୍ତ୍ତା ପ୍ରଚାର କରିଯାଇଛି । ଆତତାୟୀର ଗୁଳିରେ ସେ ନିହତ ହୋଇଥିଲେ ସତ, ମାତ୍ର ସେ ସମର୍ପଣ କରି ଯାଇଥିଲେ ନିଜର ଚିରନ୍ତନ ଆତ୍ମାକୁ ଅହିଂସା, ସତ୍ୟ ଓ ମାନବିକତା ଉଦ୍ଦେଶ୍ୟରେ । ସେ ବଞ୍ଚିଥିବା ବେଳେ ଯେତେ ମହାନ୍ ଥିଲେ, ତିରୋଧାନ ପରେ ତା'ଠାରୁ ଆହୁରି ଅଧିକ ଅନେକ ଗୁଣରେ ଅଧିକ ମହାନ୍ ହୋଇ ରହିଛନ୍ତି ଓ ରହିଥିବେ ଚିରଦିନ । ଗୌତମ ବୁଦ୍ଧ କଠିନ ତପ ବଳରେ, ସାଧନା ବଳରେ ସିଦ୍ଧି ପ୍ରାପ୍ତ ହୋଇଥିଲେ, ବୁଦ୍ଧତ୍ୱ ଲାଭ କରିଥିଲେ । ଗାନ୍ଧିଜୀ ଠିକ୍ ସେହିପରି ଦକ୍ଷିଣ ଆଫ୍ରିକାଠାରୁ ଭାରତ ପର୍ଯ୍ୟନ୍ତ ପ୍ରତ୍ୟେକ ଦିନ, ପ୍ରତିମୁହୂର୍ତ୍ତରେ କଠିନ ଆଚରଣଗତ ତପସ୍ୟା ଦ୍ୱାରା ଯେଉଁ ସିଦ୍ଧିପ୍ରାପ୍ତ ହୋଇଥିଲେ, ତାହାହିଁ ତାଙ୍କର ଅହିଂସା ରୂପକ ପରମ ଜ୍ଞାନ ଥିଲା । ସେହି ତପସ୍ୟାର ସିଦ୍ଧି ସ୍ୱରୂପ ଆମର ଜାତୀୟ ସ୍ୱାଧୀନତା କେବଳ ହାସଲ ହୋଇନଥିଲା, ଦୀର୍ଘ ପରାଧୀନତା ପରେ ଏକ ଜୀବନ୍ତ ଜାତିରେ ରୂପାନ୍ତରିତ ହେବାର ବୀଜମନ୍ତ୍ର ମଧ୍ୟ ସେହି 'ଅହିଂସା' ରୂପକ ତିନୋଟି ଅକ୍ଷରରେ ପ୍ରତିଫଳିତ ହୋଇ ଆମକୁ ପୃଥିବୀର ଏକ ଶ୍ରେଷ୍ଠ ଜାତିରେ ପରିଣତ କରିବାକୁ ପ୍ରଚୋଦିତ କରିଥିଲା ।

ଶହ ଶହ ଭାଷା, ବହୁ ଧର୍ମ ଓ ସମ୍ପ୍ରଦାୟ, ଅନେକ ଜାତି, ଉପଜାତି, ଅନେକ ସଂସ୍କୃତି ଓ ପରମ୍ପରାର ଏକ ବିରାଟ ଭୂଖଣ୍ଡକୁ ଏକତାର ମନ୍ତ୍ରରେ ବାନ୍ଧି ରଖିବାର ପ୍ରେରଣା, ଗାନ୍ଧିଜୀଙ୍କର ଅହିଂସା ତଥା ମାନବବାଦ ଦ୍ୱାରା ହିଁ ସମ୍ଭବପର ହୋଇପାରିଛି । ଘୃଣା ଓ ଈର୍ଷାରୁ ଜାତ ପାକିସ୍ତାନ ତାର ସ୍ୱାଧୀନତାର ରଜତ ଜୟନ୍ତୀ ପାଳନ କରିବା ପୂର୍ବରୁ ବିଭକ୍ତ ହୋଇଗଲା ଏବଂ ସ୍ୱାଧୀନ ବାଂଲାଦେଶ ଜନ୍ମଲାଭ କଲା । ଭାରତ କିନ୍ତୁ ସ୍ୱାଧୀନତା ବେଳେ ଯେତେ ବୃହତ୍ ନଥିଲା, ସ୍ୱାଧୀନତା ପରେ ତା'ଠାରୁ ଅଧିକ ବୃହତ୍ ହୋଇଗଲା । ପ୍ରଥମେ ଗୋଆ, ପର୍ତ୍ତୁଗୀଜ ଉପନିବେଶରୁ ମୁକ୍ତିଲାଭ କରି ୧୯୬୧ରେ ଭାରତର ଅଂଶବିଶେଷ ହେଲା ଏବଂ ୧୯୭୫ରେ ହିମାଳୟ ପାଦଦେଶରେ ଥିବା କ୍ଷୁଦ୍ର ଦେଶୀୟ ରାଜ୍ୟ ସିକ୍କିମ୍ ରାଜତନ୍ତ୍ରର ନିଗଡରୁ ମୁକ୍ତ ହୋଇ ଭାରତୀୟ ଗଣ ରାଜ୍ୟର ଏକ ପ୍ରଦେଶରେ ପରିଣତ ହୋଇ ପାରିଥିଲା ।

ଏହି ଚମତ୍କାର ହିଁ ଗାନ୍ଧିଜୀଙ୍କ ମାନବପ୍ରେମ ଓ ଅହିଂସା ବଳରେ ସମ୍ଭବ ହୋଇପାରିଲା ।

ଏ ଦେଶ ହିନ୍ଦୁ ବହୁଳ ହୋଇବି 'ହିନ୍ଦୁରାଷ୍ଟ୍ର' ନୁହେଁ । ଏହା ଏକ ଧର୍ମନିରପେକ୍ଷ, ସମାଜବାଦୀ ଗଣତାନ୍ତ୍ରିକ ସାଧାରଣତନ୍ତ୍ର । ଏହା ମଧ୍ୟ ଗାନ୍ଧିଜୀଙ୍କ ସ୍ୱପ୍ନର ସ୍ୱରାଜ ଯୋଗୁଁ ସମ୍ଭବ ହୋଇଛି ଏବଂ ଗତ ୬୫ ବର୍ଷର ସ୍ୱାଧୀନତା ଭିତରେ ବହୁ ବାହ୍ୟ ତଥା ଆଭ୍ୟନ୍ତରୀଣ ଉତ୍‌ଥାନ ପତନ ଭିତରେ ବେଶ୍ କେତୋଟି ଯୁଦ୍ଧ ଓ କିଛି ଅଙ୍ଗ ରାଜ୍ୟରେ ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ହେବା ସତ୍ତ୍ୱେ ଭାରତ ଏକ ରାଷ୍ଟ୍ର ଭାବେ କେବଳ ତିଷ୍ଠି ରହିନାହିଁ ବରଂ ଏକ ଶକ୍ତିଶାଳୀ ରାଷ୍ଟ୍ରଭାବେ ବିଶ୍ୱରେ ନିଜର ସ୍ଥିତି ସୁଦୃଢ଼ କରିପାରିଛି । ଭାରତ ଗାନ୍ଧିଜୀଙ୍କ ପ୍ରଦର୍ଶିତ ଉଦାର ସହାବସ୍ଥାନ ନୀତି ଆପଣେଇ ସମସ୍ତଙ୍କ ଦ୍ୱାରା ଗ୍ରହଣୀୟ ଓ ପ୍ରିୟ ହୋଇପାରିଛି ।

ଆତ୍ମବଳିଦାନ ଦ୍ୱାରା ଭାରତକୁ ଏକ ମହାନ୍ ରାଷ୍ଟ୍ର ଓ ଭାରତୀୟଙ୍କୁ ଏକ ମହାନ୍ ଜାତିରେ ପରିଣତ କରି ଯାଇଥିବା ଅହିଂସାର ପରମ ପୂଜାରୀ ଗାନ୍ଧିଜୀଙ୍କୁ ଆଜି ପୁନରାୟ ନିତ୍ୟପ୍ରତି ହତ୍ୟା କରିବା ପାଇଁ କିଛି ଘୃଣା ଉଦ୍ରେକକାରୀ ଶକ୍ତି ଯେଉଁଭଳିଭାବେ ଚକ୍ରାନ୍ତ ଆରମ୍ଭ କରିଛନ୍ତି, ତାହାହିଁ ଚିନ୍ତାର ବିଷୟ ।

ଅହିଂସାର ଉପାସକ ମହାମାନବ ଗାନ୍ଧିଜୀଙ୍କ ଜୟନ୍ତୀ ବାସରେ ପ୍ରତ୍ୟେକ ଭାରତୀୟ ଆଜି ଚିନ୍ତା କରିବାର ବେଳ ଆସିଛି ଯେ, ଗ୍ରାମ ସ୍ୱରାଜ୍ୟର ସ୍ୱପ୍ନ ଦ୍ରଷ୍ଟା, ଦରିଦ୍ରମାନବର ମୁକ୍ତିପାଇଁ କୁଟୀର ଶିଳ୍ପ ତଥା କୃଷିର ବିକାଶ ଓ ସର୍ବୋପରି ଭାରତର ସର୍ବଶ୍ରେଷ୍ଠ ସମ୍ପଦ– ମାନବ ସମ୍ବଳର ବିକାଶ ପାଇଁ ପଦକ୍ଷେପ ନିଆଯିବ, ନା କିଛି ଦେଶୀ, ବିଦେଶୀ କର୍ପୋରେଟ୍ ପୁଞ୍ଜିଐରାବତଙ୍କ ସନ୍ତୁଷ୍ଟି ପାଇଁ ଦେଶକୁ ତଥା ଦେଶର ଜନଗଣଙ୍କୁ ବଳି ଦିଆଯିବ ।

କର୍ପୋରେଟ ପୁଞ୍ଜିର ସୁରକ୍ଷା ପାଇଁ ସାମ୍ପ୍ରଦାୟିକତାର ହିଂସା ଓ ମୂଳନିବାସୀମାନଙ୍କୁ ନିଜ ଭିଟାମାଟି (ଅରଣ୍ୟ–ପର୍ବତ)ରୁ ଉଚ୍ଛେଦ କରି ଶିଳ୍ପ ସାମ୍ରାଜ୍ୟ ଗଢ଼ିବାକୁ ନିମନ୍ତ୍ରଣ ଦିଆଯିବାର ଯେଉଁ ଅଦେଖା ଷଡଯନ୍ତ୍ର ରଚାଯାଉଛି, ତା' ବିରୁଦ୍ଧରେ ଗାନ୍ଧୀ ପ୍ରଦର୍ଶିତ ଅହିଂସା ଆନ୍ଦୋଳନ ମାଧ୍ୟମରେ ପ୍ରତିବାଦ କରିବା ପାଇଁ ପ୍ରତ୍ୟେକ ଦେଶବାସୀ ବାହାରକୁ ବାହାରିବା ଉଚିତ ।

ଜଣେ ନିଆଁଜଳା, ଘୃଣାଭାବ ପ୍ରଚାରକ, ଜନଗଣଙ୍କ ଭିତରେ ଥିବା ସାମ୍ୟ, ମୈତ୍ରୀ ଓ ସଂହତିର ସେତୁକୁ ବିଧ୍ୱଂସ କରି ହିଂସା, ନରହତ୍ୟା ଓ ସାମ୍ପ୍ରଦାୟିକତାର ମଞ୍ଜି ବୁଣି, ଦିଲ୍ଲୀ ସିଂହାସନକୁ ଅଧିକାର କରିବାକୁ ପ୍ରୟାସୀ, ଭିନ୍ନ ଏହି ନାଥୁରାମକୁ ପୁଣିଥରେ ପରାଭବ ଦେଇ ଗାନ୍ଧୀ ପ୍ରଦର୍ଶିତ ପଥରେ ଭାରତକୁ ଆଗେଇ ନେଇ ଚାଲିବାକୁ ପଞ୍ଚଷଠି ବର୍ଷ ସ୍ୱାଧୀନତା ପରର ନବଯୁବକ ଓ ନବଯୁବତୀମାନଙ୍କୁ ଗାନ୍ଧୀ ଜୟନ୍ତୀର ଏହି ପବିତ୍ର ଅବସରରେ ନିବେଦନ । କାରଣ ଏଇ ମହାମାନବଙ୍କ ପ୍ରଦର୍ଶିତ ଅହିଂସା ମାର୍ଗ ବ୍ୟତୀତ ଆମ ପାଖରେ ବିକାଶ ତଥା ଦାରିଦ୍ର୍ୟ ଦୂରୀକରଣ ପାଇଁ ଅନ୍ୟ କୌଣସି ବିକଳ୍ପ ମାର୍ଗ ନାହିଁ ।

## ଦଶହରାର ଅଭିନନ୍ଦନ

ଶାରଦୀୟ ଦୁର୍ଗୋତ୍ସବ ବା ଦଶହରା ଆମ ପରମ୍ପରାରେ କାହିଁ କେଉଁ ଯୁଗରୁ ପାଳିତ ହୋଇଆସୁଅଛି ଏକ ସାମାଜିକ ଆନନ୍ଦମୟ ପର୍ବ ଭାବରେ ଯେଉଁଠି ଆଧ୍ୟାତ୍ମିକ ଭାବ ସହିତ ଅବସର ବିନୋଦନ ଭାବ ସମ୍ମିଳିତ ହୋଇ ରହିଆସିଛି । ଏହି ଆନନ୍ଦ ଉଲ୍ଲାସର ଅବସରରେ ଆମେ ସମସ୍ତେ ସତର ବିଜୟ ଓ ଅସତ୍‌ର ପରାଜୟକୁ ସଦା ସ୍ମରଣ ରଖିବା । ଦେବୀ ଦୁର୍ଗା ସମସ୍ତ ପ୍ରକାର ସତ୍ ଭାବର ପ୍ରତୀକ ଓ ମହିଷାସୁର ସମସ୍ତ ପ୍ରକାର ଅସତ୍ ଭାବର ପ୍ରତିନିଧି । ବିଜୟାଦଶମୀ ଅବସରରେ ଆମ ଜୀବନରୁ, ଆମ ସମାଜରୁ ଏବଂ ସମଗ୍ର ମାନବଜାତି ଭିତରୁ ଅସତ୍ ଭାବର ବିଲୋପ ଘଟାଇ ସତ୍‌ଶକ୍ତିକୁ ଆବାହନ କରିବା ସମସ୍ତଙ୍କର ଧ୍ୟେୟ ହେବା ଉଚିତ । ସୁନା, ରୂପାର ମୁକୁଟ, ଅଳଙ୍କାର ବା ମେଢ଼ ନିର୍ମାଣ କରିବା ଠାରୁ ମନ ଭିତର ମୂଲ୍ୟହୀନ ପାର୍ଥିବ ଭୋଗଲାଳସାର ଚିନ୍ତା ପରିତ୍ୟାଗ କରି ଶୁଦ୍ଧ ସୁବର୍ଣ୍ଣର ମନଟିଏ ତିଆରି କରିପାରିଲେ, ଶାରଦୀୟ ଦୁର୍ଗୋତ୍ସବ ପାଳନ ଯଥାର୍ଥ ହୋଇପାରିବ ତଥା ଆମ ଜୀବନ ଧନ୍ୟ ହୋଇଯିବ ।

ଆଜିର ଏହି ଶୁଭ ଅବସରରେ ଓଡ଼ିଶାବାସୀ ଜନଗଣଙ୍କୁ 'ଉତ୍କଳ ପ୍ରସଙ୍ଗ' ବିଜୟାଦଶମୀର ଅଭିନନ୍ଦନ ଜ୍ଞାପନ କରିବା ସହିତ ଆମ ସମସ୍ତଙ୍କ ଚିତ୍ତ ସତ୍ ଭାବନାପୂର୍ଣ୍ଣ ହେଉ । ଏକ ସୁନ୍ଦର ଜଗତ ନିର୍ମାଣ ପାଇଁ ଜଗତ୍‌ଜନନୀ ଦେବୀ ଦୁର୍ଗା ନିଜର ଆଶିଷ ଆମକୁ ଦିଅନ୍ତୁ । ଆଜିର ଶୁଭ ଅବସରରେ 'ଉତ୍କଳ ପ୍ରସଙ୍ଗ'ର ଏତିକି କାମନା ।

# ପୁଣ୍ୟାତ୍ମା ଗୋପବନ୍ଧୁ ଜୟନ୍ତୀରେ ଜୟଗାନ

ମହାତ୍ମା ଗାନ୍ଧୀଙ୍କ ସମ୍ପର୍କରେ ଆଲୋଚନା କରିବା ବେଳେ ଜାତୀୟ ସ୍ୱାଧୀନତାର ଅମନ୍ଦ ମନ୍ଦାକିନୀକୁ ଓଡ଼ିଶା ଭୂମିରେ ପ୍ରବାହିତ କରିବାକୁ ଭଗୀରଥ ପରି ତପସ୍ୟା କରି ସିଦ୍ଧି ପ୍ରାପ୍ତ ହୋଇଥିବା ପୁଣ୍ୟାତ୍ମା ଗୋପବନ୍ଧୁ ମଧ୍ୟ ଏହି ଅକ୍ଟୋବର ୯ ତାରିଖ ଦିନ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ ପୁରୀ ଜିଲ୍ଲା ସତ୍ୟବାଦୀ ନିକଟ ସୁଆଣ୍ଡୋ ଗ୍ରାମରେ । ଗାନ୍ଧିଜୀଙ୍କ ପ୍ରଦର୍ଶିତ ଅହିଂସା ଓ ଅସହଯୋଗ ଆନ୍ଦୋଳନ ଓଡ଼ିଶାରେ ଭିତ୍ତିଭୂମି ପ୍ରତିଷ୍ଠା କରି ଗୋପବନ୍ଧୁ ଯଥାର୍ଥରେ ଥିଲେ ଉତ୍କଳର ମଣି, ଉତ୍କଳମଣି ।

ତାଙ୍କର ଜୟନ୍ତୀ ଅବସରରେ 'ଉତ୍କଳ ପ୍ରସଙ୍ଗ' ଏହି ମାନବବାଦୀ ମହାପୁରୁଷଙ୍କୁ କୋଟି ପ୍ରଣାମ ଜଣାଉଛି ଏବଂ ତାଙ୍କ ପରିକଳ୍ପିତ ଉତ୍କଳ ପ୍ରଦେଶ ଗଠନ ପାଇଁ ନିଷ୍ଠାପର ଭାବେ ଯେଉଁ ଉଦ୍ୟମ କରାଯାଉଛି, ସେହି ଉଦ୍ୟମକୁ ଅଦୃଶ୍ୟରେ ଥାଇ ଆଶୀର୍ବାଦ କରିବା ପାଇଁ ପ୍ରାର୍ଥନା କରାଯାଉଛି । ଏହି ଉଦ୍ୟମର ଅନନ୍ୟ କାଣ୍ଡାରି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଉତ୍କଳମଣିଙ୍କ ସ୍ୱପ୍ନର ଓଡ଼ିଶା ଗଢି ତୋଳିବାରେ ସକ୍ଷମ ହୁଅନ୍ତୁ, ଏହାହିଁ ଜଗତର ନାଥଙ୍କ ନିକଟରେ ଆମର ଗୁହାରି ।

# ଆମର ବିନମ୍ର ପ୍ରଣିପାତ

ଅକ୍ଟୋବର ୧୧ ତାରିଖ ଭାରତ ଇତିହାସରେ ଏକ ଉଲ୍ଲେଖନୀୟ ଦିବସ । ଏହି ଦିନ ମହାତ୍ମା ଗାନ୍ଧୀଙ୍କ ଅନ୍ୟତମ ଶ୍ରେଷ୍ଠ ଅନୁଗାମୀ, ଅହିଂସ ଆନ୍ଦୋଳନର ଅନନ୍ୟ ସୂତ୍ରଧର, ଏକଛତ୍ରବାଦୀ ଶାସନ ବ୍ୟବସ୍ଥାର ମହାନ୍ ପ୍ରତିବାଦକାରୀ, ସମ୍ପୂର୍ଣ୍ଣ କ୍ରାନ୍ତିର ବ୍ୟାଖ୍ୟାକାର ଲୋକ ନାୟକ ଜୟପ୍ରକାଶଜୀ ଧରାବତରଣ କରିଥିଲେ । ସେହି ମହାନ୍ ସମାଜବାଦୀ ଦାର୍ଶନିକ ଲୋକ ନାୟକ ଜୟ ପ୍ରକାଶଜୀଙ୍କୁ ଆମର ସଶ୍ରଦ୍ଧ ପ୍ରଣିପାତ ।

ଅକ୍ଟୋବର ୨ ତାରିଖରେ (ଅର୍ଥାତ୍ ଗାନ୍ଧିଜୀଙ୍କ ଜନ୍ମଦିବସ) ଭାରତର ଅନନ୍ୟ ଜନନେତା 'ଜୟ ଜବାନ, ଜୟ କିଷାନ୍'ର ଉଦ୍‌ଘୋଷକ, ଶାନ୍ତିଦୂତ, କ୍ରାନ୍ତିବୀର ପୂର୍ବତନ ପ୍ରଧାନମନ୍ତ୍ରୀ ଲାଲବାହାଦୁର ଶାସ୍ତ୍ରୀ ମଧ୍ୟ ଜନ୍ମ ଗ୍ରହଣ କରିଥିଲେ । ଜୟନ୍ତୀ ବାସରେ ଶାସ୍ତ୍ରୀଜୀଙ୍କ ସ୍ମୃତି ପ୍ରତି ଆମେ ବିନମ୍ର ପ୍ରଣାମ ଜଣାଉ ଅଛୁଁ ।

ଓଡ଼ିଆ ସାହିତ୍ୟର ରୋମାଣ୍ଟିକ ଯୁଗର ଅନନ୍ୟ ସାରସ୍ୱତ ସାଧକ କବି ମାୟାଧର ମାନସିଂହ ମଧ୍ୟ ଅକ୍ଟୋବରରେ ଜନ୍ମ ଗ୍ରହଣ କରିଥିଲେ । ଏହି ବିଶିଷ୍ଟ ସାରସ୍ୱତ ସ୍ରଷ୍ଟାଙ୍କୁ ଆମର ନମ୍ର ନମସ୍କାର ।

# ମହାତ୍ମା ଗାନ୍ଧୀ ଓ ବିବେକାନନ୍ଦଙ୍କ ଚିନ୍ତନରେ 'ମନୁଷ୍ୟ'

ସୌରୀବଂଧୁ କର

ଭାରତରେ ଜନ୍ମିତ ଦୁଇଜଣ ମହାପୁରୁଷ ସମଗ୍ର ମାନବ ଜାତିର ଚିନ୍ତା ଓ ଚେତନାରେ ଅନେକ ପରିବର୍ତ୍ତନ ଆଣିପାରିଛନ୍ତି, ସେ ଦୁହେଁ ଅନ୍ୟ କେହି ନୁହଁନ୍ତି । ଜଣେ ହେଉଛନ୍ତି ସ୍ୱାମୀ ବିବେକାନନ୍ଦ ଓ ଅନ୍ୟଜଣେ ମହାତ୍ମା ଗାନ୍ଧୀ । ଯେଉଁ ମାନବ ଜାତିର ଭାଗ୍ୟକୁ ପରିବର୍ତ୍ତନ କରିବା ପାଇଁ ସେମାନେ କାର୍ଯ୍ୟ କରିଛନ୍ତି, ବର୍ତ୍ତମାନର ଆବଶ୍ୟକତା ହେଉଛି ସେମାନଙ୍କ ମତରେ ମନୁଷ୍ୟର ସଂଜ୍ଞା କ'ଣ ଜାଣିବା । ଏହି ପ୍ରବନ୍ଧ ଲେଖିବା ବେଳେ ମୁଁ ଆଶା କରୁନାହିଁ ଯେ ପାଠକମାନେ ସମ୍ପୂର୍ଣ୍ଣ ଭାବେ ମୋ ବିଚାର ସହିତ ଏକମତ ହେବେ । କିନ୍ତୁ ମୁଁ ଚାହେଁ ପାଠକମାନେ ଏ ଦିଗଟି ପ୍ରତି ଗଭୀର ଦୃଷ୍ଟି ନିକ୍ଷେପ କରିବେ । କାରଣ ଏହାର ଆବଶ୍ୟକତା ବହୁତ ବେଶୀ ।

ଏହି ପ୍ରବନ୍ଧରେ ସାମାନ୍ୟ ପ୍ରାକ୍ ସୂଚନା ଦିଆଯାଇଛି ଏବଂ ତତ୍‌ପଶ୍ଚାତ୍ ସ୍ୱାମୀ ବିବେକାନନ୍ଦ ଓ ମହାତ୍ମା ଗାନ୍ଧୀଙ୍କର 'ମନୁଷ୍ୟ' ସଂପର୍କରେ ମତ ବିଷୟରେ ଆଲୋଚନା କରାଯାଇଛି । ଏହାଦ୍ୱାରା ମାନବିକ ସ୍ଥିତିର ପ୍ରବୃତ୍ତି ସଂପର୍କରେ ଆମର ଚିନ୍ତାନାୟକମାନେ ଯେଉଁ ବିଚାର ରଖିଛନ୍ତି, ତାହାକୁ ବୁଝିବାକୁ ସକ୍ଷମ ହେବା ।

### ପ୍ରାକ୍ ସୂଚନା

ଏହି ବିଷୟଟିକୁ ବିସ୍ତାର କରି ଆଲୋଚନା କରିବା ସମୟରେ ମନୁଷ୍ୟ ସଂପର୍କରେ ସ୍ୱାମୀଜୀଙ୍କ ଦୃଷ୍ଟିଭଙ୍ଗୀ ଓ ଗାନ୍ଧୀଜୀଙ୍କର ଦୃଷ୍ଟିକୋଣ ମଧ୍ୟରେ କୌଣସି ତୁଳନାତ୍ମକ ବିଚାର ଏଥିରେ କରାଯାଇନାହିଁ କିମ୍ବା ଇତିହାସରେ କିଏ ବେଶୀ ମହାନ୍ ବୋଲି ମତପ୍ରକାଶ କରାଯାଇନି । କାରଣ ଏପରି ତୁଳନାତ୍ମକ ଆଲୋଚନା ମୂଲ୍ୟହୀନ । ଯେପରି ଆମେ କହିପାରିବା ନାହିଁ ଯେ ମହାଭାରତ ଶ୍ରେଷ୍ଠଗ୍ରନ୍ଥ କିମ୍ବା ରାମାୟଣ । ଯେପରି ଆମେ ଆଦୌ ତୁଳନା କରି କହିପାରିବା ନାହିଁ ଯେ ସଂଗୀତ ଇତିହାସରେ ବେଥୋଭେନ୍, ବ୍ୟାଚ୍ କିମ୍ବା ମୋଜରାଟ୍‌ଙ୍କଠାରୁ ଶ୍ରେଷ୍ଠ । ଏହା ସତ୍ୟ ଯେ ସ୍ୱାମୀଜୀ ଓ ଗାନ୍ଧିଜୀଙ୍କ ଭାବ ଆମର ପରମ୍ପରାକୁ ନିର୍ଦ୍ଦିଷ୍ଟ ରୂପରେଖ ପ୍ରଦାନ କରିଛି ଏବଂ ସେହି ଅନୁସାରେ ସେମାନେ ଯେଉଁ ବିଚାର ରଖିଛନ୍ତି ଓ ପ୍ରଚାର କରିଛନ୍ତି, ତା'ର ଅତ୍ୟାବଶ୍ୟକ ମୂଲ୍ୟବୋଧ ରହିଛି ।

ସେମାନଙ୍କ ବିଚାରର ପରିସର କ'ଣ ସେଥିରେ ସୀମାରେଖା ନିର୍ଦ୍ଧାରଣ କରିବା ମଧ୍ୟ ଏହି ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ ବରଂ ଏହାର ଲକ୍ଷ୍ୟ ହେଉଛି 'ମନୁଷ୍ୟ'ର ସଂଜ୍ଞା ସଂପର୍କରେ ଗାନ୍ଧୀ ଓ ସ୍ୱାମୀଜୀଙ୍କ ମଧ୍ୟରେ କେଉଁଠି ସହମତି ରହିଛି କିମ୍ବା ଅନ୍ୟ ଅର୍ଥରେ କହିଲେ ସେମାନେ କେଉଁଥିରେ ସହମତି ପ୍ରକାଶ କରିଛନ୍ତି । କାରଣ ସେମାନେ ମାନବିକତାକୁ ପରିପୁଷ୍ଟ କରିଛନ୍ତି, ମଣିଷ ଉପରେ ବିଶ୍ୱାସ ରଖିଛନ୍ତି । ମନୁଷ୍ୟର ମର୍ଯ୍ୟାଦା, ଦକ୍ଷତା ଏବଂ ଭବିଷ୍ୟତ ସଂପର୍କରେ ଗୁରୁତ୍ୱ ଦେବା ସହିତ ମନୁଷ୍ୟ ଏକ 'ମୁକ୍ତଜୀବ' ବୋଲି ଗ୍ରହଣ କରିଛନ୍ତି । ଗାନ୍ଧୀ, ବିବେକାନନ୍ଦଙ୍କ ମନୁଷ୍ୟ ସଂପର୍କରେ ବିଚାର କରିବାକୁ ହେଲେ ଆମକୁ ଦୁଇଗୋଟି ମୁଖ୍ୟ ପ୍ରଶ୍ନକୁ ପ୍ରଥମେ ବୁଝିବାକୁ ହେବ ।

(୧) ମନୁଷ୍ୟର ପ୍ରବୃତ୍ତିକୁ କେଉଁ ଭାବରେ ଚିହ୍ନିତ କରାଯାଇପାରିବ ?

(୨) ମନୁଷ୍ୟ କି ପ୍ରକାର ସକାରାତ୍ମକ କାର୍ଯ୍ୟ କରିବାକୁ ଆମେ ଗ୍ରହଣ କରିପାରିବା ?

### ମନୁଷ୍ୟ ସଂପର୍କରେ ଭାରତୀୟ ମତ

ମନୁଷ୍ୟ ସଂପର୍କରେ ଭାରତୀୟ ମତ ହେଉଛି, ମନୁଷ୍ୟ ଓ ପ୍ରକୃତି ପରସ୍ପରର ପରିପୂରକ । ଏହାର ଅର୍ଥ ହେଉଛି ବ୍ୟକ୍ତିର ଜିଜ୍ଞାସା ପ୍ରକୃତିଠାରୁ । ଯେହେତୁ ବ୍ୟକ୍ତିର ଗୁଣ ହେଉଛି ପ୍ରକୃତିଠାରୁ ଜ୍ଞାନପ୍ରାପ୍ତି ସେହେତୁ ପ୍ରକୃତି ବ୍ୟକ୍ତି ନିକଟକୁ ମଧ୍ୟ ପ୍ରେରିତ । ତେଣୁ

ଜ୍ଞାନ ଓ ବ୍ୟକ୍ତି ଏକ ଓ ଅଭିନ୍ନ । ଭାରତର ଲମ୍ବା ସାଂସ୍କୃତିକ ଓ ଆଧ୍ୟାତ୍ମିକ ଇତିହାସରେ, ଆମେ ଦେଖୁ ପୁରୁଷ ଓ ପ୍ରକୃତି ପରସ୍ପର ଚିରନ୍ତନ ସମନ୍ୱୟ ଓ ସଂହତିର ସହିତ ସମାନ ଭାବରେ ଉପସ୍ଥିତ ।

ମନୁଷ୍ୟ ସଦାବେଳେ ଅତ୍ୟନ୍ତ ସମ୍ମାନ, ସହୃଦୟ ଓ ଏକନିଷ୍ଠ ଭାବରେ ପ୍ରକୃତି ଆଡକୁ ଅଗ୍ରସର ହୁଏ ଯେପରିକି ଏହା ବ୍ୟକ୍ତିସତ୍ତାର ନିଗୂଢ଼ତମ ପରିପ୍ରକାଶ । ଏହା ତାକୁ ଏକ ପ୍ରକାର ଆଧ୍ୟାତ୍ମିକ ଓ ନୈତିକ ଦୃଷ୍ଟିକୋଣ ପ୍ରଦାନ କରେ । ଏହିପରି ଭାବରେ ତା'ର କର୍ମ କେବଳ ନିଜର ରକ୍ଷଣ ପାଇଁ ସଂସାରରେ ଆବାସସ୍ଥଳୀ ଖୋଜିବା ନୁହେଁ, ବରଂ ତା'ର କର୍ମ ହେଉଛି ତା ପ୍ରକୃତିର, ଆକାଂକ୍ଷାର ପରିପ୍ରକାଶ । ଏହା ନିଜକୁ ତାକୁ ପ୍ରକୃତି ସହିତ ଯୋଡେ । ତେଣୁ ଖୁସି ବା ଆନନ୍ଦ ତା' ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ, ବସ୍ତୁଗତ ସଫଳତା ନୁହେଁ ।

## ଜୀବନର ପୂର୍ଣ୍ଣତା ପାଇଁ ସ୍ୱାମୀ ବିବେକାନନ୍ଦଙ୍କର ଯାତ୍ରା

ସ୍ୱାମୀ ବିବେକାନନ୍ଦ ହେଉଛନ୍ତି ଏପରି ଏକ ବ୍ୟକ୍ତିତ୍ୱ ଯେ ସମଗ୍ର ଜଗତକୁ ଦୋହଲାଇ ଦେଇଥିଲେ ଏବଂ ରୂପରେଖ ମଧ୍ୟ ପ୍ରଦାନ କରିଥିଲେ । ସେ ମାନବିକ ବିଚାରକୁ ପ୍ରଭାବିତ କରିଥିଲେ ।

ସ୍ୱାମୀଜୀଙ୍କ ପ୍ରାକ୍‌ଜୀବନ ବହୁ ବିଭକ୍ତ ସାମାଜିକ ଓ ଧାର୍ମିକ ଚିନ୍ତା ଦ୍ୱାରା ପ୍ରଭାବିତ ଯାହାକୁ ସେ ଅତ୍ୟନ୍ତ ଗୁରୁତ୍ୱର ସହିତ ପର୍ଯ୍ୟାଲୋଚନା କରିଥିଲେ ଏବଂ ସମିଶ୍ରଣ କରିଥିଲେ । ଆମେ ଦେଖୁ ସେ ତାଙ୍କ ମା'ଙ୍କର ଧାର୍ମିକ ଉପଦେଶ, ପିତାଙ୍କର ପାଶ୍ଚାତ୍ୟ ମୂଲ୍ୟବୋଧ ପ୍ରତି ଉଦାର ମନୋଭାବ, ବ୍ରାହ୍ମ ସମାଜର ବୌଦ୍ଧିକତାବାଦ, ଶ୍ରୀରାମକୃଷ୍ଣଙ୍କର ଆଧ୍ୟାତ୍ମିକତା ଓ ସର୍ବୋପରି ପରିବ୍ରାଜକ ସନ୍ୟାସୀ ଭାବେ ଭାରତ ଭ୍ରମଣ କରି ତାଙ୍କର ଅନୁଭୂତିକୁ ଏକୀଭୂତ କରିଥିଲେ ଏବଂ ତାହାହିଁ ତାଙ୍କର ଦୃଷ୍ଟିକୁ କରିଥିଲା ପ୍ରସାରିତ ।

ଏହା କୁହାଯାଇଛି ଯେ ଶ୍ରୀରାମକୃଷ୍ଣ ସ୍ୱାମୀ ବିବେକାନନ୍ଦଙ୍କୁ ମାନବ ସମାଜ ସମ୍ମୁଖରେ ବେଦାନ୍ତର ସୂକ୍ଷ୍ମ ଦର୍ଶନକୁ ଶିକ୍ଷାଦେବା ପାଇଁ ସତ୍ୟର ଏକତ୍ୱ, ମନୁଷ୍ୟର ଦେବତ୍ୱ ଓ ଧର୍ମ ସମନ୍ୱୟ ସଂପର୍କରେ ପ୍ରଚାର କରିବା ପାଇଁ କାର୍ଯ୍ୟଭାର ଅର୍ପଣ କରିବାକୁ ଆଣିଥିଲେ । ତେଣୁ ସେ ତାଙ୍କ ଉଦ୍ଦେଶ୍ୟରେ ପ୍ରାକ୍ କାଳରେ ଘୋଷଣା କରି କହିଥିଲେ ଯେ 'ମୋର ପାଶ୍ଚାତ୍ୟ ଜଗତକୁ ଗୋଟିଏ ବାର୍ତ୍ତା ଦେବାକୁ ଅଛି, ଯେପରି ବୁଦ୍ଧଙ୍କର ପ୍ରାଚ୍ୟ ପାଇଁ ବାର୍ତ୍ତା ଥିଲା' ଏବଂ ତାଙ୍କ ଉଦ୍ଦେଶ୍ୟରେ ଶେଷ ପର୍ଯ୍ୟାୟରେ ସେ କହିଥିଲେ, ଏହା ହୁଏତ ହୋଇପାରେ ଯେ ମୁଁ ମୋର ଏହି ଶରୀରକୁ ଜୀର୍ଣ୍ଣବସ୍ତ୍ର ପରି ଫିଙ୍ଗି ଦେଇପାରେ, କିନ୍ତୁ କେତେବେଳେ କାର୍ଯ୍ୟ କରିବାରୁ ବିରତ ହେବିନାହିଁ । ମୁଁ ସବୁ ସ୍ଥାନରେ ଲୋକମାନଙ୍କୁ ପ୍ରେରଣା ପ୍ରଦାନ କରିବି ଯେପର୍ଯ୍ୟନ୍ତ ଏ ବିଶ୍ୱ ଈଶ୍ୱରଙ୍କ ସହିତ ଏକ ବୋଲି ନ ଜାଣିଛି ।

ସ୍ୱାମୀ ରଙ୍ଗନାଥାନନ୍ଦଙ୍କ ଭାଷାରେ, ''ସେ ତାଙ୍କ ବ୍ୟକ୍ତିତ୍ୱ ମଧ୍ୟରେ ପାଶ୍ଚାତ୍ୟର ମନୁଷ୍ୟତ୍ୱ ଓ ପ୍ରାଚ୍ୟର ସାଧୁତ୍ୱକୁ ସମନ୍ୱିତ କରିଥିଲେ । ସେ ପରିଷ୍କାର ଭାବରେ ଦେଖି ପାରିଥିଲେ ଯେ ଏହି ଦୁଇ ମାନବିକ ପରଂପରାରେ କେତେ ଶ୍ରେଷ୍ଠତା ଓ ସଙ୍କୋଚନତା ରହିଛି, ଯାହାକୁ ମାନବିକ ପ୍ରକୃତିର ଦୁଇଟି ଗୁଣ ଭାବରେ ସେ ଗ୍ରହଣ କରିଥିଲେ ଏବଂ ଘୋଷଣା କରି କହିଥିଲେ ଯେ ଆଧୁନିକ ସମୟ ହେଉଛି ଏ ଦୁଇଟିର ସମନ୍ୱୟର ଯୁଗ ।''

## ସ୍ୱାମୀଜୀଙ୍କ ଦୃଷ୍ଟିରେ ମନୁଷ୍ୟର ପ୍ରକୃତି

ମନୁଷ୍ୟର ପ୍ରକୃତି ସଂପର୍କରେ ଅଧ୍ୟୟନ କରିବା ବେଳେ କୌଣସି ବ୍ୟବସ୍ଥାର ଦର୍ଶନ ତାହା ସାମାଜିକ ରାଜନୈତିକ ବା ଧାର୍ମିକ ହେଲେ ମଧ୍ୟ ସ୍ୱୟଂ ସଂପୂର୍ଣ୍ଣ ନୁହେଁ । ମନୁଷ୍ୟର ପ୍ରକୃତି ସଂପର୍କରେ ବିଚାରବୋଧ ସାମାଜିକ ବ୍ୟବସ୍ଥାରେ ଓ ଦର୍ଶନରେ ପୂର୍ଣ୍ଣତା ଆଣେ । ତେଣୁ ଜୀବନର ସବୁ ବିଭାଗକୁ ନେଇ ମନୁଷ୍ୟ ସଂପର୍କରେ ଚିନ୍ତା କରିବା ଆବଶ୍ୟକ । ସ୍ୱାମୀଜୀ ମନୁଷ୍ୟ ସଂପର୍କରେ ଏକପାଖିଆ ଦୃଷ୍ଟିକୋଣକୁ ଏଡାଇ ଯାଉଥିଲେ । ତାଙ୍କ ମତରେ, ବ୍ୟକ୍ତି ତାର ସାଂସାରିକ ଜୀବନ ଭୋଗ କରିବା ଉଚିତ୍ ଏବଂ ତତ୍‌ପଶ୍ଚାତ୍ ଉଚ୍ଚତମ ଆଦର୍ଶ ପାଇଁ ତାକୁ ତ୍ୟାଗ କରିବା ଦରକାର । ମନୁଷ୍ୟ ତେଣୁ ସାମଗ୍ରିକ ଭାବରେ ନିଜକୁ ବିଚାର କରିବା ଆବଶ୍ୟକ ଯାହା ଫଳରେ ତା'ର ପୂର୍ଣ୍ଣତାପ୍ରାପ୍ତି ହୋଇପାରିବ । ସ୍ୱାମୀଜୀ ମନୁଷ୍ୟର ଦର୍ଶନ ସଂପର୍କରେ ତାହା ପ୍ରାଚ୍ୟ ବା ପାଶ୍ଚାତ୍ୟ ହେଉ ବିଚାର କରୁଥିଲେ ଯାହା ଫଳରେ ମନୁଷ୍ୟ ନିଜକୁ ଗୃହ ମଧ୍ୟରେ ରହିବାର ଅନୁଭବ କରିବ ଏବଂ ପ୍ରେରଣା ପ୍ରାପ୍ତ ହୋଇ ଜୀବନର ପୂର୍ଣ୍ଣତା ହାସଲ କରିବ ।

ତେଣୁ ସ୍ୱାମୀଜୀଙ୍କର ଚିନ୍ତା, ଉପଦେଶ ଓ ବାର୍ତ୍ତା ଅନ୍ୟ କିଛି ନୁହେଁ । ତାହା ହେଉଛି ବେଦାନ୍ତ ବା ନବ୍ୟବେଦାନ୍ତ । ବେଦାନ୍ତ ଦର୍ଶନ ଅନୁସାରେ ମନୁଷ୍ୟ ହେଉଛି ଏହି ସଂସାରରେ ସବୁଠାରୁ ଶ୍ରେଷ୍ଠଜୀବ... ଦେବଦୂତ ବା ଦେବତା, ତୁମେ ସେମାନଙ୍କୁ ଯେଉଁ ନାମରେ ଡାକିଲେ ମଧ୍ୟ, ସମସ୍ତେ ମନୁଷ୍ୟ ହେବେ ଯଦି ସେମାନେ ସଂପୂର୍ଣ୍ଣ ହେବାକୁ ଚାହାଁନ୍ତି । ମନୁଷ୍ୟ ସଂପର୍କରେ ଏହି ବିଚାରକୁ ଆଦୌ ମପାଯାଇ ପାରିବ ନାହିଁ ଯଦି ମନୁଷ୍ୟ ତା' ମଧ୍ୟରେ ଥିବା ଅଜ୍ଞତାକୁ ଦୂରକରି ପୂର୍ଣ୍ଣତାପ୍ରାପ୍ତ ନହୁଏ, ଈଶ୍ୱରଙ୍କ ନିକଟରେ

ପହଞ୍ଚିବାକୁ ଚେଷ୍ଟା ନ କରେ ଏବଂ ଈଶ୍ୱରଙ୍କୁ ଦର୍ଶନ ନ କରେ, କାରଣ ସ୍ୱାମୀଜୀ କୌଣସି କଥାରେ ବିଶ୍ୱାସ କରୁ ନଥିଲେ ଅପରନ୍ତୁ ଉତ୍ତମ, ପୂର୍ଣ୍ଣତା ଓ ମନୁଷ୍ୟର ଦେବତ୍ୱ ସଂପର୍କରେ ଅପରୋକ୍ଷାନୁଭୂତି ଉପରେ ଗୁରୁତ୍ୱ ଦେଉଥିଲେ ।

'ମନୁଷ୍ୟର ଦେବତ୍ୱ' ହେଉଛି ତାଙ୍କ ଦର୍ଶନର ମୂଳପିଣ୍ଡ । ସ୍ୱାମୀଜୀ ଚାହୁଁ ଥିଲେ ଯେ ମନୁଷ୍ୟ ଯେହେତୁ ଏହି ସୃଷ୍ଟିରେ ସର୍ବଶ୍ରେଷ୍ଠ ପ୍ରାଣୀ, ତେଣୁ ତା'ର ଦେବତ୍ୱ, କ୍ଷମତା, ଶକ୍ତି ଏବଂ କର୍ମୋତ୍ସାସ ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ପରିପ୍ରକାଶ ହେବା ଆବଶ୍ୟକ । ସେ କହିଛନ୍ତି, 'ଆତ୍ମା ମାତ୍ରେ ହିଁ ଅବ୍ୟକ୍ତ ବ୍ରହ୍ମ' ବାହ୍ୟ ଓ ଅନ୍ତଃ ପ୍ରକୃତିକୁ ବଶୀଭୂତ କରି ଆତ୍ମାର ଏହି ବ୍ରହ୍ମଭାବ ବ୍ୟକ୍ତ କରିବା ହିଁ ଜୀବନର ଚରମ ଲକ୍ଷ୍ୟ । କର୍ମ, ଉପାସନା, ମନଃ ସଂଯମ ଅଥବା ଜ୍ଞାନ– ଏମାନଙ୍କ ମଧ୍ୟରୁ ଏକ, ଏକାଧିକ ବା ସକଳ ଉପାୟ ଦ୍ୱାରା ନିଜର ବ୍ରହ୍ମ–ଭାବ ବ୍ୟକ୍ତ କର ଓ ମୁକ୍ତ ହୁଅ । ଏହା ହିଁ ଧର୍ମର ପୂର୍ଣ୍ଣାଙ୍ଗ । ମତବାଦ, ଅନୁଷ୍ଠାନ–ପଦ୍ଧତି, ଶାସ୍ତ୍ର, ମନ୍ଦିର ବା ଅନ୍ୟ ବାହ୍ୟ କ୍ରିୟା କଳାପ ଏହାର ଗୌଣ ଅଙ୍ଗପ୍ରତ୍ୟଙ୍ଗ ମାତ୍ର ।'

### ସ୍ୱାମୀଜୀଙ୍କ ଦେବତ୍ୱର ଅର୍ଥ କ'ଣ ?

ତାଙ୍କର ମନୁଷ୍ୟ ସଂପର୍କରେ ବିଚାର ତାଙ୍କର ଦେବତ୍ୱ କିମ୍ୱା ଈଶ୍ୱରଙ୍କଠାରୁ ଭିନ୍ନ ନୁହେଁ । ତାଙ୍କର ବିଚାର ମନୁଷ୍ୟ ଈଶ୍ୱର ସଂପର୍କରେ ମିଶାମିଶି । ଯଦି ମନୁଷ୍ୟର ପ୍ରକୃତି ଦେବତ୍ୱ ହୁଏ, ମନୁଷ୍ୟ ଏହାକୁ ହାସଲ କରିବା ଆବଶ୍ୟକ ଏବଂ ଏଥିପାଇଁ ମନୁଷ୍ୟକୁ ତା'ର ମନ ଓ ଇନ୍ଦ୍ରିୟଠାରୁ ମୁକ୍ତ କରିବାକୁ ହେବ । କାରଣ ମନ ଓ ଇନ୍ଦ୍ରିୟ ସଂସାରର ଜାଗତିକ ସୁଖ ଅନୁଭବ କରିବା ପାଇଁ ବ୍ୟଗ୍ର । ଏହି ଶକ୍ତିକୁ ଅନ୍ତଃସ୍ଥ କରିବାର ପ୍ରଚେଷ୍ଟା ହେଉଛି ଏକାଗ୍ରତାର ସର୍ବଶ୍ରେଷ୍ଠ ପ୍ରଚେଷ୍ଟା । ଏହିପରି ଅନ୍ତଃସ୍ଥ କରିବା ଏକଗ୍ରତା କରିବାର ପ୍ରଚେଷ୍ଟା ନିଜର ସ୍ୱ–ଉଦ୍ୟମ, ସ୍ୱ–ଅବଲମ୍ୱନ ଏବଂ ସ୍ୱ–ନିୟନ୍ତ୍ରଣ ଦ୍ୱାରା ହେବା ଉଚିତ୍ । ତେବେ ଯାଇ ମନୁଷ୍ୟ ନିଜର ପ୍ରକୃତ ପ୍ରକୃତିକୁ ଅପରୋକ୍ଷାନୁଭୂତି କରିପାରିବ । କିନ୍ତୁ ମନୁଷ୍ୟ ନିଜର ପ୍ରକୃତ ପ୍ରକୃତିକୁ ଅନୁଭୂତ କରିପାରେ ନାହିଁ ଯେହେତୁ ମନୁଷ୍ୟ ଶରୀର ଓ ମନ ସହିତ ଏହି ଦୁଇଟି ବିଭାଜିତ । ମନୁଷ୍ୟ ବାସ୍ତବରେ ଗୋଟିଏ ଆତ୍ମା ଏବଂ ଆତ୍ମା ଏହି ଶରୀର ମନ ବିଭାଜନ ସହିତ ପରିଚିତି ବିଚ୍ଛିନ୍ନ ହେବାର କାରଣ । ଏହା ବ୍ୟତୀତ ତା'ର ମୌଳିକ ଦେବତ୍ୱ ସଂପର୍କରେ ଅଜ୍ଞତା ହେତୁ ସେ ଦୈନ୍ୟତା, ଦୁର୍ବଳ ଓ ଅସହାୟ ଅନୁଭବ କରେ । ସ୍ୱାମୀଜୀ ସ୍ୱର୍ଗରୁ ଆଦାମ୍‌ର ପତନର କିମ୍ୱଦନ୍ତୀ ଗଳ୍ପଟିର ଉଦାହରଣ ଦେଇ ଦର୍ଶାଇଛନ୍ତି ଯେ ମୂଳତଃ ମନୁଷ୍ୟ ପବିତ୍ର ଏବଂ ମୁକ୍ତ କିନ୍ତୁ ଅଜ୍ଞତା ଓ ମିଥ୍ୟା ଆଚରଣ ଯୋଗୁ ତାର ପତନ ହୁଏ ଏବଂ ସେ ନିଜର ପ୍ରକୃତିଠାରୁ ପୃଥକ୍ ହୋଇଯାଏ । ତେଣୁ ସ୍ୱାମୀଜୀ କହିଛନ୍ତି, 'ପ୍ରତ୍ୟେକଙ୍କୁ ସେମାନଙ୍କର ବାସ୍ତବ ପ୍ରକୃତି ସଂପର୍କରେ ଶିକ୍ଷା ଦିଅ, ସୁପ୍ତ ଆତ୍ମାକୁ ଆହ୍ୱାନ କର ଏବଂ ଦେଖ ଏହା କିପରି ଜାଗ୍ରତ ହେଉଛି । କ୍ଷମତା ଆସିବ, ଭଲ ପଣିଆ ଆସିବ, ପବିତ୍ରତା ଆସିବ ଯେତେବେଳେ ସୁପ୍ତ ଆତ୍ମା ସ୍ୱଚେତନ କର୍ମରେ ଜାଗ୍ରତ ହେବ ।

ଧାର୍ମିକ, ସାମାଜିକ ଓ ବସ୍ତୁଗତ ଦିଗରୁ ହେଉଥିବା ପୃଥକୀକରଣ ଓ ଅଜ୍ଞତାରୁ ଉପରକୁ ଉଠିବା ପାଇଁ, ସ୍ୱାମୀଜୀ ସେମାନଙ୍କର ବାସ୍ତବ ପ୍ରକୃତି ସଂପର୍କରେ ଶିକ୍ଷା ଦେବା ଉପରେ ଜୋର ଦେଇଥିଲେ । ସୁପ୍ତ ଆତ୍ମା ଧର୍ମ ଜରିଆରେ ଜାଗ୍ରତ ହେବ, ଅର୍ଥାତ୍ ବେଦାନ୍ତ ହେଉଛି ବିଜ୍ଞାନସମ୍ମତ ଓ ପ୍ରୟୋଗାତ୍ମକ । ତାଙ୍କ ନିକଟରେ ଧର୍ମ ଅନ୍ଧବିଶ୍ୱାସ ନୁହେଁ କିମ୍ୱା ପ୍ରଣାଳୀ ନୁହେଁ କିମ୍ୱା ଜୀବନହୀନ ଧାର୍ମିକ କର୍ମାନୁଷ୍ଠାନ ନୁହେଁ, ଏହା ନିଜେ ହେବା ଓ ଅନ୍ୟକୁ ହେବାରେ ସାହାଯ୍ୟ କରିବା ।

ଧର୍ମ ହେଉଛି ଆଧାତ୍ମିକ ଅନୁଭୂତି, ଦେବତ୍ୱର ସଂପୂର୍ଣ୍ଣ ପରିପ୍ରକାଶ ଜୀବନ ମଧ୍ୟରେ ଓ ଆଚରଣରେ । ଖାଦ୍ୟ, ବସ୍ତ୍ର, ବାସଗୃହ ଏବଂ ସୁରକ୍ଷା, କ୍ଷମତା ଏବଂ ଜ୍ଞାନ ଇତ୍ୟାଦି ସାଧନର ଶେଷ ନାହିଁ । ସେମାନେ ହେଉଛନ୍ତି ସାଧ୍ୟ ଯେତେବେଳେ ସାଧନ ହେଉଛି ମନୁଷ୍ୟର ପୂର୍ଣ୍ଣାଙ୍ଗ ବିକାଶ, ମନୁଷ୍ୟ ମଧ୍ୟରେ ଥିବା ପୂର୍ଣ୍ଣତାର ସଂପୂର୍ଣ୍ଣ ପରିପ୍ରକାଶ । ବେଦାନ୍ତ ଜୀବନର ସାମଗ୍ରିକ ଦୃଷ୍ଟିକୁ ବିଚାର କରେ । ଏହାର ବିଷୟବସ୍ତୁ ହେଉଛି ମନୁଷ୍ୟ । ମନୁଷ୍ୟ ସଦାସର୍ବଦା ସତ୍ୟ, ସୌନ୍ଦର୍ଯ୍ୟ ଓ ଉତ୍ତମର ସାମଗ୍ରିକତାକୁ ଖୋଜେ । ବାହ୍ୟ ଜଗତରେ ଏହାର ଆଂଶିକ ଅନୁସନ୍ଧାନ କରାଯାଏ କିନ୍ତୁ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅନୁସନ୍ଧାନ ଅନ୍ତଃସ୍ଥ ସଂସାରରେ କରାଯାଏ । ପ୍ରଥମଟି ଶାରୀରିକ ଓ ସାମାଜିକ ବିଜ୍ଞାନର ପ୍ରୟୋଗ ଫଳରେ ସାମାଜିକ ମଙ୍ଗଳ ହାସଲ କରେ, ଦ୍ୱିତୀୟଟି ସୃଷ୍ଟି କରେ ଆଧାତ୍ମିକ ସ୍ୱାଧୀନତା ନୈତିକତା ଓ ଧାର୍ମିକ ଶୃଙ୍ଖଳା ମାଧ୍ୟମରେ । ଏହି ଦୁଇଟିରେ କୌଣସି ଦ୍ୱନ୍ଦ୍ୱ ନାହିଁ– ଧର୍ମ ନିରପେକ୍ଷତା ଓ ଧାର୍ମିକତା ମଧ୍ୟରେ । କାରଣ ଉଭୟ ବ୍ୟକ୍ତିର ବିକାଶ କ୍ଷେତ୍ରରେ ଦୁଇଟି ବିଭିନ୍ନ ପର୍ଯ୍ୟାୟ ।

ତେଣୁ ମନୁଷ୍ୟର ବାସ୍ତବ ବିଚ୍ଛିନ୍ନତା, ସ୍ୱାମୀଜୀଙ୍କ ଦୃଷ୍ଟିରେ ତା'ର ଦେବତ୍ୱ ପ୍ରକୃତିଠାରୁ ବିଚ୍ଛିନ୍ନତା । ମନୁଷ୍ୟକୁ ନିଜର ସ୍ୱୟଂ ସମ୍ପୂର୍ଣ୍ଣତା ଲାଭ କରିବାକୁ ହେଲେ ଏହାକୁ ଅତିକ୍ରମ କରିବାକୁ ହେବ । ସ୍ୱୟଂ ସମ୍ପୂର୍ଣ୍ଣତା – ତା'ଠାରୁ ଉତ୍ତମ ଆତ୍ମାନୁଭୂତି ହାସଲ କରାଯାଇପାରେ କର୍ମ, ଉପାସନା, ମନଃସଂଯମ ଅଥବା ଜ୍ଞାନ

ଏମାନଙ୍କ ମଧ୍ୟରୁ ଏକ, ଏକାଧିକ ବା ସକଳ ଉପାୟ ଦ୍ୱାରା। ଆତ୍ମାନୁଭୂତି ପାଇଁ ସ୍ୱାମୀଜୀ କର୍ମ ଉପରେ ଗୁରୁତ୍ୱ ଦେଇଛନ୍ତି। ଏତଦ୍‌ବ୍ୟତୀତ ଅନ୍ୟ ପ୍ରଣାଳୀ ଯଥା ଉପାସନା, ମନଃସଂଯମ ଏବଂ ଜ୍ଞାନ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ବାସ୍ତବରେ, ଏ ସମସ୍ତ ଅତ୍ୟନ୍ତ ସୁସଂହତ ଭାବରେ ଏକତ୍ରିତ ହେବାର ଆବଶ୍ୟକତା ରହିଛି ଯଦି ମନୁଷ୍ୟକୁ ନିଜର ଦେବତ୍ୱ ପ୍ରକୃତି ସମ୍ପର୍କରେ ଅନୁଭୂତ କରିବାକୁ ହେବ।

ସ୍ୱାମୀଜୀ ବର୍ତ୍ତମାନକୁ ଉଜ୍ଜ୍ୱଳ କରିବା ପାଇଁ ଅତୀତକୁ ଆବାହନ କରିଛନ୍ତି। ସେ ବେଦ ଓ ଉପନିଷଦର ଅଧ୍ୟାତ୍ମିକ ସଫଳତାକୁ ଉର୍ଦ୍ଧ୍ୱକୁ ଉତ୍ତୋଳନ କରିଛନ୍ତି କିନ୍ତୁ ଆଧୁନିକ ଟେକ୍ନୋଲୋଜିର ବସ୍ତୁଗତ ଉପଲବ୍ଧିକୁ ନ୍ୟୂନ କରିନାହାନ୍ତି। ସେ ଆଧ୍ୟାତ୍ମିକତା ଓ ବିଜ୍ଞାନ ମଧ୍ୟରେ ସମନ୍ୱୟ ସ୍ଥାପନ କରିଛନ୍ତି।

ଡକ୍ଟର ଆଲବର୍ଟ ଆଇନ୍‌ଷ୍ଟାଇନ୍‌ଙ୍କ ମତରେ, ଧର୍ମ ବିନା ବିଜ୍ଞାନ ହେଉଛି ଅନ୍ଧ ଏବଂ ଧର୍ମ ବିଜ୍ଞାନ ବିନା ହେଉଛି ଛୋଟା। ବେଦାନ୍ତ ଦୃଷ୍ଟିକୋଣ ସମ୍ପର୍କରେ ସ୍ୱାମୀଜୀ ଯେଉଁ ମତ ଦେଇଛନ୍ତି, ତାହା ବିଜ୍ଞାନ ଓ ଧର୍ମର ଏବଂ ମସ୍ତିଷ୍କ ଓ ହୃଦୟର ସମନ୍ୱୟ। ମନୁଷ୍ୟ ଚିନ୍ତାଜଗତ ପାଇଁ ଏହି ସମନ୍ୱୟର ଦୃଷ୍ଟିଭଙ୍ଗୀ ସ୍ୱାମୀଜୀଙ୍କର ଅନବଦ୍ୟ ଅବଦାନ।

ଭଗିନୀ ନିବେଦିତା କହିଛନ୍ତି, ଏହା ଆମ ଗୁରୁଙ୍କ ଜୀବନର ମହିମାମୟ ବିଶେଷତ୍ୱ, କାରଣ ଏଠାରେ ସେ କେବଳ ପ୍ରାଚ୍ୟ ଓ ପାଶ୍ଚାତ୍ୟ ନୁହେଁ ବରଂ ଅତୀତ ଓ ବର୍ତ୍ତମାନର ଯୋଗସୂତ୍ରର ବିନ୍ଦୁ। ଯଦି ସମଷ୍ଟି ଓ ବ୍ୟଷ୍ଟି ସେହି ଏକମାତ୍ର ବାସ୍ତବତା, ତେବେ ସମସ୍ତ ମାର୍ଗ ଦ୍ୱାରା ସୃଷ୍ଟି ଅନୁଭୂତିର ମାର୍ଗ ନୁହେଁ। ତେଣୁ ଧର୍ମ ଓ ଧର୍ମ ନିରପେକ୍ଷତା ମଧ୍ୟରେ କୌଣସି ପାର୍ଥକ୍ୟ ନାହିଁ। ଶ୍ରମ ଅର୍ଥ ହିଁ ଉପାସନା। ସଫଳତା ହିଁ ତ୍ୟାଗ। ଜୀବନ ହେଉଛି ଧର୍ମ। ଏହାର ପ୍ରାପ୍ତି ଏବଂ ଧରି ରଖିବା ହେଉଛି ଗଭୀର ବିଶ୍ୱାସ ଯେପରି ନିଶ୍ୱାସିତ ହେବା ଏବଂ ଏଡ଼େଇ ଯିବା । ଏହି ଅପରୋକ୍ଷାନୁଭୂତି ସ୍ୱାମୀ ବିବେକାନନ୍ଦଙ୍କୁ କର୍ମର ମହାନ୍ ପ୍ରଚାରକ କରିଛି, ଏଥିରୁ ପୃଥକ ହୋଇ ନୁହେଁ ବରଂ ଜ୍ଞାନ ଓ ଭକ୍ତିର ପରିପ୍ରକାଶ ଦ୍ୱାରା। ତାଙ୍କ ନିକଟରେ ଉପାସନା, ଅଧ୍ୟୟନ, ଖଳାବାଡ଼ି, କ୍ଷେତ ହେଉଛି ସତ୍ୟ ଏବଂ ଈଶ୍ୱର ରୂପୀ ମନୁଷ୍ୟକୁ ପାଇବା ପାଇଁ ପ୍ରକୃତ କ୍ଷେତ୍ର ଯେପରି ସନ୍ନ୍ୟାସୀର ଗୁମ୍ଫା ଅଥବା ମନ୍ଦିରର ଦ୍ୱାର। ତାଙ୍କ ନିକଟରେ ମନୁଷ୍ୟର ସେବା ଓ ଈଶ୍ୱର ଉପାସନା କିମ୍ବା ମନୁଷ୍ୟତ୍ୱ ଏ ବିଶ୍ୱାସ ମଧ୍ୟରେ କିମ୍ବା ପ୍ରକୃତ ଧର୍ମ ନିଷ୍ଠା ଓ ଆଧ୍ୟାତ୍ମିକତା କୌଣସି ପାର୍ଥକ୍ୟ ନାହିଁ। ତାଙ୍କର ପ୍ରତ୍ୟେକ ଶବ୍ଦ , ଗୋଟିଏ ଦିଗରୁ ଦେଖିଲେ, ତାଙ୍କର କେନ୍ଦ୍ରିତ ବିଶ୍ୱାସର ଭାଷ୍ୟ। କଳା, ବିଜ୍ଞାନ ଓ ଧର୍ମ ସେ ଥରେ କହିଥିଲେ, ଏକମାତ୍ର ସତ୍ୟକୁ ପ୍ରକାଶ କରବାର ତିନିଗୋଟି ମାର୍ଗ। କିନ୍ତୁ ଏହାକୁ ବୁଝିବା ପାଇଁ ଆମ ସମ୍ମୁଖରେ ଅଦ୍ୱୈତ ତତ୍ତ୍ୱ ରହିବା ଆବଶ୍ୟକ।

ବ୍ୟକ୍ତି ତା'ର ଦେବତ୍ୱ କାର୍ଯ୍ୟ ମଧ୍ୟରେ ପ୍ରକାଶ କରିବା ଉଚିତ। ସ୍ୱାମୀଜୀଙ୍କର କାର୍ଯ୍ୟର ଦୃଷ୍ଟିଭଙ୍ଗୀ ହେଉଛି ଉପାସନା ହିଁ କର୍ମ। ଶିବ ଜ୍ଞାନେ ଜୀବସେବା କର। ଉପାସନା ବା ପୂଜା ପାଇଁ ହେଉଥିବା କର୍ମ ମନୁଷ୍ୟ (ଜୀବ)ର ଶିବ ସେବା ଭାବରେ କରାଯାଏ। ଏହା ମନୁଷ୍ୟକୁ ଉଚ୍ଚତମ ଅବସ୍ଥାକୁ ନିଏ ଯାହାଫଳରେ ତା'ର ଅନ୍ୟ ପାର୍ଶ୍ୱର ପ୍ରଭାବ କ୍ଷୁଣ୍ଣ ହୁଏ। ଏହା ବ୍ୟତୀତ ଯେକୌଣସି ଭାବରେ ସେବା ଆସକ୍ତି, ପରାଧୀନ, ଯନ୍ତ୍ରଣା ଓ ବନ୍ଧନର କାରଣ ହୋଇଥାଏ।

'କର୍ମ ହିଁ ପୂଜା' ହେଉଛି ଗୋଟିଏ ଦର୍ଶନ, ଯାହା ବାହ୍ୟ କର୍ମ, ଯାହାର ଲକ୍ଷ୍ୟ ହେଉଛି ସମାଜର ଉନ୍ନତିକରଣ ସହିତ ଅନ୍ତସ୍ଥକର୍ମ ବ୍ୟକ୍ତିର ଆଧ୍ୟାତ୍ମିକ ଉନ୍ନତିର ଲକ୍ଷ୍ୟ ହୁଏ। ଆଧ୍ୟାତ୍ମିକ ଭାବନା ନେଇ ସେବାଭାବ ଦାତା ଓ ଗ୍ରହୀତା ଉଭୟଙ୍କୁ ଉପରକୁ ଉଠାଏ।

ବେଦାନ୍ତ ସଦାସର୍ବଦା ଗୁରୁତ୍ୱ ଦିଏ ଯେ ମନୁଷ୍ୟ ନୈତିକ ଓ ଆଧ୍ୟାତ୍ମିକ ଭାବରେ ବିକାଶ ଲାଭ କରିବା ଦରକାର। ଯେତେବେଳେ ମନୁଷ୍ୟ ନିଜର ଆଧ୍ୟାତ୍ମିକ ବିକାଶର ମାର୍ଗ ନିଜର କର୍ମ ମଧ୍ୟରେ ନମ୍ରତାର ସହିତ ଓ ସମାଜ ପ୍ରତି ସମ୍ମାନର ସହିତ ଗ୍ରହଣ କରେ, ତା'ର ସମସ୍ତ କର୍ମ କେବଳ ସେବା ହୁଏ ନାହିଁ ବରଂ ଉପାସନାରେ ରୂପାନ୍ତରିତ ହୁଏ। ଏହିପରି କର୍ମ ଦ୍ୱାରା, ସେ କେବଳ ନିଜର ସମଧର୍ମା ମନୁଷ୍ୟମାନଙ୍କର ମଙ୍ଗଳ ଓ ଆନନ୍ଦ ବିଧାନ କରେ ନାହିଁ, ଯେଉଁମାନଙ୍କୁ ସେ ସମ୍ମାନର ସହିତ ସେବା ପ୍ରଦାନ କରେ, ବରଂ ନିଜେ ଆଧ୍ୟାତ୍ମିକ ଉନ୍ନତି ଲାଭ କରେ। 'ଦରିଦ୍ରଦେବୋଭବ' ବାକ୍ୟାଂଶ ବ୍ୟବହାର କରି ସେ ଆମ୍ଭମାନଙ୍କଠାରୁ ଚାହିଁଛନ୍ତି ଯେ ଆମ୍ଭେମାନେ ଦରିଦ୍ରମାନଙ୍କୁ ଦୃଷ୍ଟିଦେଇ ସେବା କରିବା।

ସ୍ୱାମୀଜୀ କହିଛନ୍ତି, ଏହା ଶିଖିବାକୁ ଚେଷ୍ଟା କର ଯେ ଜୀବନ ତମାମ ଦେବାକୁ ହେବ। ପ୍ରକୃତି ତୁମକୁ ଦେବାକୁ ବାଧ୍ୟ କରିବ। ତେଣୁ ସ୍ୱଇଚ୍ଛାରେ ଦିଅ, ଏବେ ହେଉ ବା ପରେ ହେଉ ତୁମକୁ ତ୍ୟାଗ କରିବାକୁ ହେବ। ତେଣୁ ଭିକାରୀ ହୁଅ ନାହିଁ ବରଂ ଅନାସକ୍ତ ହୁଅ । ଏହା ହେଉଛି ଜୀବନର ସବୁଠାରୁ କଷ୍ଟକର କାର୍ଯ୍ୟ।

ତେଣୁ ମନୁଷ୍ୟଙ୍କୁ ସବୁଠାରୁ କଷ୍ଟସାଧ କାର୍ଯ୍ୟ ଅନାସକ୍ତ ହୋଇ କରିବାକୁ ହେବ, ଗରିବମାନଙ୍କ ପାଇଁ, ତଳେ ପଡ଼ିଥିବା ମନୁଷ୍ୟ ପାଇଁ, ଯାହାଙ୍କୁ ସ୍ୱାମୀଜୀ କହିଛନ୍ତି 'ଦରିଦ୍ର ନାରାୟଣ'। ତାଙ୍କର ଉପନିଷଦୀୟ ଆହ୍ୱାନ, 'ଉତ୍ତିଷ୍ଠତାଜାଗ୍ରତ ! ପ୍ରାପ୍ୟ ବରାନ୍ ନିର୍ବୋଧତ।' ଉଠ, ଜାଗ, ଲକ୍ଷ୍ୟ ସ୍ଥଳରେ ନ ପହଞ୍ଚିବା ପର୍ଯ୍ୟନ୍ତ କର୍ମରୁ ବିରତ ହୁଅ ନାହିଁ। ଏହା ମନୁଷ୍ୟଙ୍କୁ ଉଠାଇବାର ଆହ୍ୱାନ, ମନୁଷ୍ୟ ଉଠି ବିଜ୍ଞାନ ଓ ସଭ୍ୟତାର ନୈତିକତା ଓ ସାମାଜିକ ନ୍ୟାୟକୁ ଦେଖ। ଯଦି ସେହି ଚେତନାର ଆହ୍ୱାନ ଅଧିକ ଗଭୀର ହେବ, ତେବେ ମନୁଷ୍ୟ ଈଶ୍ୱରଙ୍କ ପଦପ୍ରାନ୍ତରେ ପହଞ୍ଚିବ ଏବଂ ଅନୁଭୂତ କରିପାରିବ ଯେ ମନୁଷ୍ୟ ହିଁ ହେଉଛି ଈଶ୍ୱର। ଗାନ୍ଧିଜୀ ସ୍ୱାମୀଜୀଙ୍କ ପ୍ରତି ଶ୍ରଦ୍ଧାସୁମନ ଅର୍ପଣ କରି କହିଥିଲେ, ମୁଁ ତାଙ୍କର କାର୍ଯ୍ୟକୁ ପୁଙ୍ଖାନୁପୁଙ୍ଖ ଭାବରେ ଅନୁଶୀଳନ କରିଛି ଏବଂ ତା' ମଧ୍ୟ ଦେଇ ଯିବାବେଳେ, ମୋର ମୋ ଦେଶ ପାଇଁ ଯେଉଁ ପ୍ରେମ ଥିଲା, ତାହା ହଜାରେ ଗୁଣରେ ବୃଦ୍ଧି ପାଇଛି। ତେଣୁ ସ୍ୱାମୀଜୀଙ୍କର ମନୁଷ୍ୟ ସମ୍ପର୍କରେ ବିଚାର ମାନବିକତାର ନବଯୌବନ ପ୍ରାପ୍ତି ପାଇଁ ନୂତନ ଆଶା।

**ବର୍ତ୍ତମାନ ଗାନ୍ଧିଜୀଙ୍କର ମନୁଷ୍ୟ ସମ୍ପର୍କରେ ବିଚାରକୁ ଦେଖିବା**

ଗାନ୍ଧିଜୀ ମହାନ୍ ହୋଇ ଜନ୍ମଲାଭ କରି ନଥିଲେ। ସେ ଥିଲେ ଜଣେ ସାଧାରଣ ମଣିଷ। ସେ ନିଜର ପ୍ରଚଣ୍ଡ ଭାବାବେଗକୁ ଅଦମ୍ୟ ଧୈର୍ଯ୍ୟ ଯେପରି ଜଣେ ଶିଳ୍ପୀ ନିହାଣ ମୂନରେ ପଥରରେ ଭାସ୍କର୍ଯ୍ୟ ଆଙ୍କେ, ମାଧ୍ୟମରେ ନିଜକୁ ପରିବର୍ତ୍ତନ କଲେ। ସେ ନିଜ ପାଇଁ ଖୋଦିତ ଯେଉଁ ଭାସ୍କର୍ଯ୍ୟ ପ୍ରସ୍ତୁତ କଲେ ତାହାଠାରୁ ଅଧିକ ସୃଷ୍ଟିଶୀଳ କାର୍ଯ୍ୟ କ'ଣ ହୋଇପାରେ ?

ସେ ଏ ସମ୍ପର୍କରେ ନିଜେ ସଚେତନ ହୋଇ ଲେଖିଥିଲେ, ''ମୁଁ ମୋର ଅନେକ ଅସ୍ଥିରତାକୁ ସ୍ୱୀକାର କରୁଛି କିନ୍ତୁ ଏହା ମଧ୍ୟରେ ଗୋଟିଏ ସ୍ଥିରତା ମୋର ଅସ୍ଥିରତା ମଧ୍ୟ ଦେଇ ଗତି କରୁଛି ଯେପରି ପ୍ରକୃତି ମଧ୍ୟରେ ବହୁ ବହୁତ୍ୱ ମଧ୍ୟରେ ଏକତ୍ୱ ଥାଏ ।''

ସ୍ୱାମୀଜୀଙ୍କ ଜୀବନ ପରି ଗାନ୍ଧିଜୀଙ୍କ ଜୀବନ ହଠାତ୍ ପରିବର୍ତ୍ତିତ ହୋଇ ନାହିଁ। ତାଙ୍କର ଧାର୍ମିକ ଅନୁଷ୍ଠାନ ଦକ୍ଷିଣ ଆଫ୍ରିକାରୁ ଆରମ୍ଭ ହୋଇଛି ଏବଂ ଜଣେ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ବାରିଷ୍ଟରରୁ ସେ ଏକ ଲଙ୍ଗଳା ଫକୀର ହୋଇଛନ୍ତି– ଜଣେ ସନ୍ନ୍ୟାସୀ। ଗାନ୍ଧିଜୀଙ୍କର ରାଜନୈତିକ ଉଦ୍ଦେଶ୍ୟ ଓ ଧାର୍ମିକ ଅନୁସନ୍ଧାନ ଏକ ସମୟରେ ଆରମ୍ଭ ହୋଇଛି ଯେତେବେଳେ ତାଙ୍କର ବୟସ ମାତ୍ର ୨୦ବର୍ଷ। ତାଙ୍କର ଧାର୍ମିକ ବିଶ୍ୱାସ ପଚାଶ ବର୍ଷର ରାଜନୈତିକ କାର୍ଯ୍ୟର ଗହଳି ମଧ୍ୟରେ ଶକ୍ତି ଓ ସାମର୍ଥ୍ୟ ପ୍ରଦାନ କରିଛି। ସେ ଦୃଢ଼ ଭାବରେ କହିଛନ୍ତି ଯେ ଧର୍ମକୁ ରାଜନୀତିଠାରୁ ପୃଥକ୍ କରି ହେବ ନାହିଁ, କିନ୍ତୁ ସେ ମଧ୍ୟ ଏହା ପରିଷ୍କାର କରିଦେଇଛନ୍ତି ଯେ ସେ କୌଣସି ଉଗ୍ର ମତବାଦ ଓ ଧାର୍ମିକ କର୍ମକାଣ୍ଡ ପ୍ରତି ଗୁରୁତ୍ୱ ଦିଅନ୍ତି ନାହିଁ। କିନ୍ତୁ ସମସ୍ତ ପ୍ରଧାନ ଧର୍ମଗୁଡ଼ିକର ବାସ୍ତବ ଧାର୍ମିକ ଚିନ୍ତନ ଉପରେ ଗୁରୁତ୍ୱ ଦିଅନ୍ତି। ସେ ନିଜ ଜୀବନରେ ଗୀତାର ଉପଦେଶକୁ ଲାଗୁ କରିବା ପାଇଁ ଚେଷ୍ଟା କରିଛନ୍ତି ଏବଂ ଶେଷ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ସମସ୍ତ ପ୍ରକାର ଆକାର ଓ ରୂପରେ ଅହିଂସା ପ୍ରୟୋଗ ବ୍ୟତୀତ ସମ୍ପୂର୍ଣ୍ଣ ଅନାସକ୍ତ ହେବା ସମ୍ଭବ ନୁହେଁ। ତେଣୁ ସେ ଅଦ୍ୱୈତରେ ବିଶ୍ୱାସ କରିଛନ୍ତି।

**ତେବେ ଆମେ କିପରି ଭାବରେ ଗାନ୍ଧିଜୀଙ୍କର ମନୁଷ୍ୟ ସମ୍ପର୍କରେ ବିଚାରର ସଂଜ୍ଞା ନିରୂପଣ କରି ପାରିବା ?**

ମନୁଷ୍ୟ କେବଳ ବୁଦ୍ଧି ନୁହେଁ କିମ୍ବା ପଶୁର ଶରୀର ନୁହେଁ କିମ୍ବା ଗୋଟିଏ ଆତ୍ମାର ହୃଦୟ ନୁହେଁ। ଏହି ତିନିଗୋଟିର ଯଥାଯଥ ସମନ୍ୱୟ ଆବଶ୍ୟକ ସମ୍ପୂର୍ଣ୍ଣ ମନୁଷ୍ୟ ଗଠନ କରିବା ନିମିତ୍ତ ଏବଂ ତାହାହିଁ ନିର୍ମିତ କରେ ଶିକ୍ଷାର ଅର୍ଥନୀତି। ତେଣୁ ଗାନ୍ଧିଜୀ ପ୍ରଥମେ ବିଶ୍ୱାସ କରିଛନ୍ତି ମାନବ ପ୍ରକୃତିର ଏକତ୍ୱ ଯଦିଓ ମନୁଷ୍ୟ ସଂସ୍କୃତି ଓ ପରମ୍ପରା ଅନୁସାରେ ପୃଥକ୍। ଯାହା ମନୁଷ୍ୟ ପ୍ରାଣୀ ପାଇଁ ସତ୍ୟ, ତାହା ମନୁଷ୍ୟର ପ୍ରକୃତି ଓ ଏକତ୍ୱ ପାଇଁ ମଧ୍ୟ ସତ୍ୟ।

ସେ ଏନ୍.କେ. ବୋଷ, ନୃତତ୍ତ୍ୱବିତ୍‌ଙ୍କୁ କହିଥିଲେ, 'କୌଣସି ମନୁଷ୍ୟ ବାସ୍ତବ ପ୍ରତିନିଧିତ୍ୱ କରେ ତା'ର କ୍ଷଣିକ ମୁହୂର୍ତ୍ତର ଶ୍ରେଷ୍ଠତମ ସଫଳତାରେ ଉପସ୍ଥିତ ହୋଇ ନୁହେଁ ବରଂ ତା'ର ଦୈନନ୍ଦିନ ଜୀବନର କର୍ମ ଦ୍ୱାରା ହିଁ ତାକୁ ବିଚାର କରିବାକୁ ହେବ।' ଏହା କହିବା ଦ୍ୱାରା ଗାନ୍ଧିଜୀ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ଯେ ମନୁଷ୍ୟ ତା'ର ଦୈନନ୍ଦିନ ଜୀବନ ଦ୍ୱାରା ହିଁ ବିଚାର କରିବାକୁ ହେବ।

ଗାନ୍ଧିଜୀ ବିଶ୍ୱାସ କରୁଥିଲେ ଯେ ମନୁଷ୍ୟର ଆତ୍ମା ଅବିନିଶ୍ୱର ଏବଂ ପ୍ରତ୍ୟେକ ବ୍ୟକ୍ତିସତ୍ତା ସେ ଯେତେ ନିଷ୍ଠୁର ପ୍ରତୀତ ହେଉଥିଲେ ମଧ୍ୟ ତା' ମଧ୍ୟରେ ଲୁକ୍କାୟିତ ଭଲ ପଣିଆ, ଦେବତ୍ୱର ଝଲକ ରହିଛି ଯାହାକୁ ଉଦ୍ଦିପିତ କରାଯାଇ ପାରିବ।

ଗାନ୍ଧିଜୀଙ୍କର ଧାର୍ମିକ ଅନୁସନ୍ଧାନ କେବଳ ତାଙ୍କର ବ୍ୟକ୍ତିତ୍ୱକୁ ଗଠନ କରି ନାହିଁ ବରଂ ରାଜନୈତିକ କୌଶଳ ଯାହାକୁ ବର୍ଣ୍ଣ ବୈଷମ୍ୟ ରୂପରେ ଦକ୍ଷିଣ ଆଫ୍ରିକାରେ ଏବଂ ଭାରତର ଉପନିବେଶବାଦ ରୂପରେ ସେ ସମ୍ମୁଖୀନ ହୋଇଥିଲେ। ତାଙ୍କ

ମତରେ ସତ୍ୟାଗ୍ରହର କ୍ରମବିକାଶ ଏବଂ ତାହାର ପ୍ରୟୋଗ ହେତୁ ସେ ବିରାଟ ମନୁଷ୍ୟ ସମାଜର ପ୍ରକୃତିକୁ ବୁଝିବାକୁ ସକ୍ଷମ ହୋଇଥିଲେ ଏବଂ ପରିସମାପ୍ତିରେ ପହଞ୍ଚି ଥିଲେ ଯେ ଅନ୍ୟମାନଙ୍କଠାରୁ ଧାର୍ମିକ ଲୋକ ପାଇଁ ସତ୍ୟାଗ୍ରହର ମୌଳିକ ଗୁଣଗୁଡ଼ିକ ଗ୍ରହଣ କରିବା ସହଜ । ଏଥିପାଇଁ ସଂଗ୍ରାମ କରିବାର ମୂଲ୍ୟ ରହିଛି, ଏପରିକି ମୃତ୍ୟୁ ଲାଭ କିନ୍ତୁ ଆତ୍ମା ବଞ୍ଚି ରହେ ଏବଂ କୌଣସି ନିଷ୍ଠୁର ଶାସକ ମନୁଷ୍ୟର ଏହି ଅବିନିଶ୍ୱର ଆତ୍ମାକୁ ନଷ୍ଟ କରିପାରିବ ନାହିଁ ।

ଗାନ୍ଧିଜୀଙ୍କର ଈଶ୍ୱରଙ୍କ ଉପରେ ଥିଲା ଅଟଳ ବିଶ୍ୱାସ । ଗାନ୍ଧିଜୀଙ୍କ ମତରେ ଈଶ୍ୱର ହେଉଛନ୍ତି ସତ୍ୟ, ନ୍ୟାୟ ଓ ପ୍ରେମ । ସେ ବିଶ୍ୱାସ କରୁଥିଲେ ଯେ ଈଶ୍ୱର ଓ ମନୁଷ୍ୟକୁ ପରସ୍ପର ଯୁକ୍ତ ହୋଇ ସହାବସ୍ଥାନ କରିବାକୁ ହେବ, ନଚେତ୍ ଈଶ୍ୱର ଅନ୍ତର୍ଦ୍ଧାନ ହୋଇଯିବେ ଏବଂ ମନୁଷ୍ୟ ଜୀବନ ଜଙ୍ଗଲ ମଧ୍ୟରେ ଏକାକୀ ରହିଯିବ । କିନ୍ତୁ ଏହା ଅସମ୍ଭବ । ସେ ବିଶ୍ୱାସ କରୁଥିଲେ ଯେ ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ଆତ୍ମା ବିଦ୍ୟମାନ । ମାନବ ପ୍ରଜାତି ମଧ୍ୟରେ ଭୌଗୋଳିକ, ଐତିହାସିକ ପରିସ୍ଥିତି ହେତୁ କିମ୍ବା ହଜାର ହଜାର ବର୍ଷର ଅବସ୍ଥା କାରଣରୁ ଯେଉଁ ପାର୍ଥକ୍ୟ ଥିଲେ ମଧ୍ୟ ପ୍ରତ୍ୟେକଙ୍କର ଆତ୍ମା ଅନ୍ୟମାନଙ୍କର ଆତ୍ମା ପରି ସମାନ ଭାବରେ ରହିଛି । ଈଶ୍ୱର ତାଙ୍କର ପ୍ରତିଛବି ନେଇ ମନୁଷ୍ୟକୁ ଗଠନ କରୁଛନ୍ତି, ଏହା ବାଇବେଲରେ କୁହାଯାଇଛି । ପ୍ରତ୍ୟେକ ମନୁଷ୍ୟ ପ୍ରାଣୀ ମଧ୍ୟରେ ଈଶ୍ୱର ବିଦ୍ୟମାନ, ଏହା ଗୀତାରେ ବର୍ଣ୍ଣିତ । ବୁଦ୍ଧ ଓ ମହମ୍ମଦ ସେହି ସତ୍ୟକୁ ପୁନଃ ଉଦ୍‌ଘୋଷଣା କରିଛନ୍ତି । ତେଣୁ ଗାନ୍ଧିଜୀ ମନୁଷ୍ୟର ଆତ୍ମାର ସମାନତାକୁ ବିଶ୍ୱାସ କରୁଥିଲେ ।

ଗାନ୍ଧିଜୀଙ୍କର ଏହି ସମାନତାର ବିଶ୍ୱାସ ତାଙ୍କର ଆତ୍ମବିଶ୍ୱାସରୁ ଉତ୍ପନ୍ନ । ତାଙ୍କ ନିକଟରେ କୌଣସି ପୁରୁଷ ବା ସ୍ତ୍ରୀ କେହି କ୍ଷୁଦ୍ର ନୁହଁନ୍ତି, ଦୁର୍ବଳ ବା ନିରାଶ୍ରୟ ନୁହଁନ୍ତି । ଯେହେତୁ ସେମାନେ ନିଜ ଭିତରେ ଥିବା ଆତ୍ମାର ଶକ୍ତିକୁ ଆବିଷ୍କାର କରିପାରୁ ନାହାନ୍ତି ଏବଂ ତାହାକୁ ସମ୍ପୂର୍ଣ୍ଣ ଭାବେ ବ୍ୟବହାର କରି ପାରୁନାହାନ୍ତି, ଯେତେବେଳେ ଜୀବନ ସେମାନଙ୍କ ନିକଟରେ ଦୁର୍ବିସହ । ଗାନ୍ଧୀ କେବଳ ମାନବୀୟ ଅନୁଭବର ଊର୍ଦ୍ଧ୍ୱରେ ଥିବା ଈଶ୍ୱରଙ୍କୁ ବିଶ୍ୱାସ କରିନାହାନ୍ତି ବରଂ ପ୍ରତ୍ୟେକ ପୁରୁଷ ଓ ନାରୀ ମଧ୍ୟରେ ସମାନ ଭାବରେ ବାସ କରୁଥିବା ଈଶ୍ୱରଙ୍କୁ ବିଶ୍ୱାସ କରିଛନ୍ତି ।

ଗାନ୍ଧିଜୀ କହିଛନ୍ତି, ମୁଁ ବିଶ୍ୱାସ କରେ ନାହିଁ ଯେ କୌଣସି ବ୍ୟକ୍ତି ଆଧ୍ୟାତ୍ମିକ ଭାବରେ ସଫଳ ହେବ ଏବଂ ତା' ଚାରିପାଖରେ ଥିବା ଅନ୍ୟମାନେ ଯନ୍ତ୍ରଣା ଭୋଗ କରିବେ । ମୁଁ ସଦାସର୍ବଦା ମନୁଷ୍ୟର ବାସ୍ତବ ଏକତ୍ୱ ଉପରେ ବିଶ୍ୱାସ କରେ ଅର୍ଥାତ୍ ପ୍ରତ୍ୟେକ ଜୀବ ମଧ୍ୟରେ ଦେଖେ । ଯେହେତୁ ଯେ ମନୁଷ୍ୟର ବାସ୍ତବ ଏକତ୍ୱ ସମ୍ପର୍କରେ ବିଶ୍ୱାସ କରନ୍ତି, ତେଣୁ ସେ ଅତ୍ୟନ୍ତ ବିନୟୀ ଓ ସମ୍ବେଦନଶୀଳ ଏବଂ ପ୍ରତ୍ୟେକ ସତ୍ୟକୁ ବିଚାର କରିବା ପାଇଁ ସଦାସର୍ବଦା ପ୍ରସ୍ତୁତ । କିନ୍ତୁ ସେ ମଧ୍ୟ ଯାହା ସତ୍ୟ ନୁହେଁ, ଯାହା ବ୍ୟକ୍ତି ମଧ୍ୟରେ ପୃଥକୀକରଣ ସୃଷ୍ଟି କରେ ସେସବୁକୁ ଏଡ଼ାଇ ଯିବା ବ୍ୟକ୍ତିତ୍ୱ ।

ଗାନ୍ଧିଜୀ ଗୁରୁତ୍ୱ ଦେଇଥିଲେ ଯେ ଭାରତୀୟ ପରମ୍ପରାରେ ମନୁଷ୍ୟ ଗୋଟିଏ ବିଚାରଶୀଳ ପଶୁ, ଗୋଟିଏ ପଶୁ ଯାହାର ତର୍କସିଦ୍ଧ କରିବାର କ୍ଷମତା ରହିଛି । ବରଂ ତାକୁ 'ଆଧ୍ୟାତ୍ମିକ ବ୍ୟକ୍ତି' ଭାବରେ ବିଚାର କରାଯାଇ ପାରେ । ଏପରି ଏକ ପ୍ରାଣୀ ଯାହାର ଆତ୍ମ ସ୍ଥିତି ଓ ଆତ୍ମ ସଚେତନତାର ସକ୍ଷମତା ରହିଛି । ମନୁଷ୍ୟ ସମ୍ପର୍କରେ ଏହି ବିଚାର ହେତୁ ଭାରତରେ ନୈତିକତାର ସକ୍ଷମତା ରହିଛି । ମନୁଷ୍ୟ ସମ୍ପର୍କରେ ଏହି ବିଚାର ହେତୁ ଭାରତରେ ନୈତିକତା ଓ ଧର୍ମକୁ ମାନବିକ ଅବସ୍ଥିତି ଓ କର୍ମର ମୌଳିକତା ଭାବେ ଗ୍ରହଣ କରାଯାଇଛି । ଥରେ ମନୁଷ୍ୟର ସ୍ଥିତି ସମ୍ପର୍କରେ ତା'ର ମାନବୀୟ ଅନୁଭବ ଆଦର୍ଶର ଊର୍ଦ୍ଧ୍ୱରେ ବୁଝିଗଲେ, ମନୁଷ୍ୟ ପ୍ରଚେଷ୍ଟାର ଗୁରୁତ୍ୱକୁ ସଠିକ୍ ଭାବେ ଓ ତା'ର ବିଶେଷତ୍ୱ ପରିଷ୍କାର ଜଣାପଡ଼ିବ । ଗାନ୍ଧିଜୀଙ୍କର ବିଶ୍ୱାସ ଯେ ଏହି ମାନବିକ ଅନୁଭୂତିର ଊର୍ଦ୍ଧ୍ୱ ଆଦର୍ଶ ଅଚିନ୍ତ୍ୟନୀୟ ବ୍ରହ୍ମ ବା ପୂର୍ଣ୍ଣତା ସତ୍ୟ କିମ୍ବା ଈଶ୍ୱର ଯାହାଙ୍କୁ ଆମେ କଳ୍ପନା କରି ପାରୁନା ଯେହେତୁ ଆମର ସୀମାବଦ୍ଧତା ରହିଛି । ଯେହେତୁ ଆମେ ମରଣଶୀଳ ଜଞ୍ଜିର ଦ୍ୱାରା ବନ୍ଧା ହୋଇଛୁ, ତେଣୁ ଏହା ଆମମାନଙ୍କ ଦ୍ୱାରା ସମ୍ଭବ ନୁହେଁ । ତେଣୁ ଗାନ୍ଧିଜୀ ଚାହୁଁଥିଲେ ଆମେ ଆମର ମାନବିକ ଅନୁଭୂତିକୁ ଏହି ଶରୀରରେ ପ୍ରଜ୍ୱଳିତ କରିବା ଦ୍ୱାରା ହିଁ ଦେବତ୍ୱର ପୂର୍ଣ୍ଣ ପରିପ୍ରକାଶ କରିପାରିବା । ସେଥିପାଇଁ ଏହି ବିଶ୍ୱାସକୁ ସମ୍ପୂର୍ଣ୍ଣ ଗ୍ରହଣ କରି ଆମେ ଯନ୍ତ୍ରଣା ଭୋଗ କରୁ ଏବଂ ଆଦର୍ଶର ନିମ୍ନତମ ଗୁଣଗୁଡ଼ିକୁ ଗ୍ରହଣ କରି କାର୍ଯ୍ୟ କରୁ ଏଥିପାଇଁ ଅନ୍ୟ ପ୍ରତି ନମ୍ର ହେବା ଆବଶ୍ୟକ କରେ । ମନୁଷ୍ୟ ମଧ୍ୟରେ ଏହି ଦୁଇଗୋଟି ଗୁଣର ସମନ୍ୱୟ ତା' ନିକଟରୁ ଛଳନା, ଭୀରୁତା ଓ ହିଂସାକୁ ଦୂର କରିଦିଏ ଯଦିଓ ଏହା ମନୁଷ୍ୟକୁ ସତ୍ୟରେ ପହଞ୍ଚାଇବାର ବାଧକ । ଏଣୁ ଆମ ନିଜ ଉପରେ ଜୀବନ୍ତ ବିଶ୍ୱାସ ଆବଶ୍ୟକ, କାରଣ ଏହାହିଁ କେବଳ ଇଚ୍ଛା ଶକ୍ତିର ଦୃଢ଼ତା ଦିଏ ଯାହାକୁ ଆମେ ସତ୍ୟ ଅନୁସନ୍ଧାନରେ ଆବଶ୍ୟକ କରୁ ।

ଅନ୍ୟ ପ୍ରତି ସମ୍ବେଦନ ଓ ନମ୍ର ଆଚରଣ ହେଉଛି ପ୍ରାଥମିକ ଆବଶ୍ୟକତା କାରଣ ସତ୍ୟ ସେହି ବ୍ୟକ୍ତିବିଶେଷମାନଙ୍କୁ ମିଳିବ

ନାହିଁ ଯେଉଁମାନଙ୍କ ପାଖରେ ପର୍ଯ୍ୟାପ୍ତ ପରିମାଣର ନମ୍ରତା ନାହିଁ। ଯଦି ତୁମକୁ ସତ୍ୟ ସମୁଦ୍ରର କୋଳରେ ସନ୍ତରଣ କରିବାକୁ ହେବ, ତେବେ ତୁମେ ନିଜକୁ ଶୂନ୍ୟ କରିଦେବାକୁ ହେବ।

ଗାନ୍ଧିଜୀ ଆହୁରି ମଧ୍ୟ ଗୁରୁତ୍ୱ ଦେଇ କହିଛନ୍ତି ଯେ ମନୁଷ୍ୟ ପୂର୍ଣ୍ଣବ୍ରହ୍ମ ବା ଈଶ୍ୱରଙ୍କ ନିକଟତମ 'ପ୍ରେମ' ମାଧ୍ୟମରେ ହୋଇପାରିବ। ତେଣୁ ଗାନ୍ଧୀଙ୍କ ନିମିତ୍ତ 'ଦୈବୀପ୍ରେମ' ଆମ୍ଭମାନଙ୍କର ବିଳାସବ୍ୟସନରେ ପରିପ୍ରକାଶ ହୁଏନାହିଁ ବରଂ ଆମର ଦୁଃଖ, ଦୈନ୍ୟ ଭୋଗିବା ଯୋଗୁଁ ହୁଏ । ଯନ୍ତ୍ରଣା ଭୋଗ କରିବା ହେଉଛି ବ୍ୟକ୍ତିସତ୍ତାର ନିୟମ। ଏହା ମନୁଷ୍ୟର ଅନ୍ତଃସ୍ଥ ବୁଝାମଣାକୁ ପ୍ରକାଶ କରେ। ତେଣୁ ତାଙ୍କର ଗୁରୁତ୍ୱ ବିଶ୍ୱାସ ଓ ନମ୍ରତା ଉପରେ। ଗାନ୍ଧିଜୀ ମଧ୍ୟ ମନୁଷ୍ୟର ଅତ୍ୟାବଶ୍ୟକ କ୍ଷୁଦ୍ରତାକୁ ଉନ୍ମୋଚନ କରିଛନ୍ତି। ସେମାନେ ତାକୁ ଅଦମ୍ୟ ଚେଷ୍ଟା ଦ୍ୱାରା ଅତିକ୍ରମ କରିବାକୁ ବାଧ୍ୟ କରନ୍ତି ଏବଂ ଆଦର୍ଶକୁ ସ୍ୱଷ୍ଟ ଭାବରେ ଦୃଷ୍ଟି ପକାଇବାରେ ସକ୍ଷମ କରାନ୍ତି।

ଗାନ୍ଧିଜୀଙ୍କ ନିକଟରେ ନୈତିକତା ହେଉଛି ସମାଜ ଦୃଷ୍ଟିକୋଣରୁ ବ୍ୟକ୍ତି ଚରିତ୍ରର ସମସ୍ୟା। ବ୍ୟକ୍ତି ଯଦି ଶୃଙ୍ଖଳା ଓ ଉଦାହରଣ ଦ୍ୱାରା ପରିଚାଳିତ ହୁଏ, ତେବେ ସେ ନିଜକୁ ନିୟନ୍ତ୍ରିତ କରିପାରେ। ଆଇନ୍‌ର ଶାସନ ତାକୁ ଠିକ୍ ରାସ୍ତାରେ ଚଳାଇପାରିବ ନାହିଁ। ଏହାକୁ ମାନବିକ ପୂର୍ଣ୍ଣତା କୁହାଯାଇପାରେ। ଏହା ମଧ୍ୟ ଗୋଟିଏ ସମାଜର ସୁବ୍ୟବସ୍ଥିତ ବ୍ୟବସ୍ଥା ଯେଉଁଠାରେ ମାନବିକ ଓ ମାନବିକତା ବିଦ୍ୟମାନ।

ଗାନ୍ଧୀଙ୍କର ଏହି ମତ ସ୍ୱାମୀଜୀଙ୍କର ମତ ସହିତ ସାମଞ୍ଜସ୍ୟ ରଖେ। ଏହା ଅତ୍ୟନ୍ତ କୌତୁହଳର ବିଷୟ ଯେ ମାର୍କ୍ସବାଦୀ ଚିନ୍ତାନାୟକ ଶ୍ରୀ ଏମ୍.ଏନ୍. ରାୟ ମନୁଷ୍ୟଠାରୁ ସେହି ଆଶା ପାଇବା ଉପରେ ଗୁରୁତ୍ୱ ଦେଉଛନ୍ତି। ସେ କହିଛନ୍ତି, 'ଗୋଟିଏ ଉତ୍ତମ ସମାଜ ଉତ୍ତମ ଲୋକମାନଙ୍କ ଦ୍ୱାରା ହିଁ ସୃଷ୍ଟି ହୋଇ ପାରିବ। ମନୁଷ୍ୟ ପ୍ରକୃତିର ଅଂଶବିଶେଷ ଏବଂ ପ୍ରକୃତି ପୃଷ୍ଠଭୂମିରେ ତା'ର ବିକାଶ, ପ୍ରକୃତି ସହିତ ବସବାସ କରେ, ଜଡ଼ ପ୍ରକୃତିର ବିବର୍ତ୍ତନରୁ ଏହାର ଉଦ୍ଭବ। ଏହି ମାନବିକତାବାଦ କୌଣସି କାରଣ ନ ଥାଇ ଏହି ଉଦ୍ଦେଶ୍ୟ ହିଁ ଗଠନ କରାଯାଇଛି। ନିୟମ ଅନୁସାରେ – ସୁସଂହତ ଶାରୀରିକ ଜଗତରେ, ମନୁଷ୍ୟର ପ୍ରକୃତି ମଧ୍ୟ ସୁସଂହତ। ମାନବିକ ପ୍ରକୃତି ମଧ୍ୟ ତର୍କ ସଂଗତ ଓ ତାର୍କିକ ଭିତ୍ତି ସମ୍ପନ୍ନ ଯାହା ଆଇନ୍‌ଗତ ଶାସନରେ ପ୍ରତିଫଳିତ ଏବଂ ପରିଣାମରେ ଏହା ମାନବିକ ପ୍ରକୃତି ସହିତ ଯୁକ୍ତ ଯାହାକି ନୈତିକ ବିଚାର ରଖିବାର ଦକ୍ଷତା ରଖେ।

ଗାନ୍ଧିଜୀ ବ୍ୟକ୍ତିସତ୍ତା ମଧ୍ୟରେ ଥିବା ଆତ୍ମାର କ୍ଷମତା ଉପରେ ବିଶ୍ୱାସ କରୁଥିଲେ ଏବଂ ଲୋକମାନଙ୍କୁ ଏହାକୁ ଉଜ୍ଜୀବିତ କରିବାକୁ ଆହ୍ୱାନ ଦେଇଥିଲେ ଏବଂ ଦକ୍ଷିଣ ଆଫ୍ରିକା ଓ ଭାରତରେ ଅହିଂସା ମାର୍ଗରେ କାର୍ଯ୍ୟ କରିବାକୁ କହିଥିଲେ। ଏଥିପାଇଁ ମିଳିଥିଲା ଅଭୁତପୂର୍ବ ସମର୍ଥନ ଏବଂ ଗାନ୍ଧିଜୀଙ୍କର ଈଶ୍ୱର ଓ ମନୁଷ୍ୟ ଉପରେ ବିଶ୍ୱାସର ପ୍ରାମାଣିକତା। ଗାନ୍ଧୀଙ୍କର କର୍ମର ଅସ୍ତ୍ର ଥିଲା ସତ୍ୟାଗ୍ରହ ଓ ଅହିଂସା। 'ସତ୍ୟାଗ୍ରହ'ର ଆକ୍ଷରିକ ଅର୍ଥ ହେଉଛି 'ସତ୍ୟ ପ୍ରତି ଆଗ୍ରହ'। ଅହିଂସା ଓ ସତ୍ୟାଗ୍ରହ ହେଉଛି ସାମାଜିକ ଅନ୍ୟାୟ ବିରୁଦ୍ଧରେ ଯୁଦ୍ଧ କରିବାର ମାଧ୍ୟମ। ସତ୍ୟାଗ୍ରହ ଓ ଅହିଂସା ସାମାଜିକ ଓ ରାଜନୈତିକ ଦମନ ବିରୁଦ୍ଧରେ। ତାଙ୍କ ସଂଗ୍ରାମର ମାଧ୍ୟମ ହୋଇଥିଲା ନୈତିକତା ଉପରେ ଆଧାରିତ। ଗାନ୍ଧୀ ଗୁରୁତ୍ୱ ଦେଇ କହିଥିଲେ ଯେ ସତ୍ୟ ଓ ଅହିଂସା ମୋ ପାଇଁ ଗୋଟିଏ ମୁଦ୍ରାର ସେହି ଏକା ମୁହଁ । ମୋର ଉଦ୍ଦେଶ୍ୟ ହେଉଛି, ସେ ୧୯୨୯ରେ ଲେଖିଥିଲେ, 'କେବଳ ଭାରତୀୟ ଜାତିର ଭ୍ରାତୃତ୍ୱ ନୁହେଁ ବା ଭାରତର ସ୍ୱାଧୀନତା ନୁହେଁ, ଯଦିଓ ଏହା ବର୍ତ୍ତମାନ ମୋର ସମଗ୍ର ଜୀବନକୁ ଓ ସମୟକୁ ଆଚ୍ଛାଦିତ କରିଛି। କିନ୍ତୁ ଭାରତର ସ୍ୱାଧୀନତା ହାସଲ କରିବା ମାଧ୍ୟମରେ ମୁଁ ଅନୁଭବ କରିବାକୁ ଚାହେଁ ଏବଂ ମୋର ଉଦ୍ଦେଶ୍ୟ ମନୁଷ୍ୟର ଭ୍ରାତୃତ୍ୱ ପ୍ରତିଷ୍ଠା କରିବା ପାଇଁ କାର୍ଯ୍ୟ କରିବା।

୩୦ ଜାନୁୟାରୀ ୧୯୪୮ରେ ମହାତ୍ମା ଗାନ୍ଧୀଙ୍କର ନୂଆଦିଲ୍ଲୀ ଠାରେ ହତ୍ୟା ହେବା ପରେ ରାମକୃଷ୍ଣ ମଠ ଓ ମିଶନ, କରାଚି, ପାକିସ୍ଥାନଠାରେ ୧୫ ଫେବୃୟାରୀ ୧୯୪୮ରେ ଗୋଟିଏ ସାଧାରଣ ସଭାରେ ଉଦ୍‌ବୋଧନ ଦେଇ ସ୍ୱାମୀ ରଙ୍ଗାନଥାନନ୍ଦ କହିଥିଲେ, ଜନଗଣଙ୍କର ସାମ୍ପ୍ରତିକ ନେତୃମଣ୍ଡଳୀଙ୍କ ମଧ୍ୟରେ ଗାନ୍ଧୀଜୀ ନିଜର ଅସାଧାରଣତ୍ୱ ଓ ମହନୀୟତ୍ୱରେ ଏକାକୀ ଦଣ୍ଡାୟମାନ। ତାଙ୍କର ନେତୃତ୍ୱ ବିସ୍ମୟାଭୂତ ଉଦାହରଣ ଯେ କି ଯାହା ସେ କହୁଥିଲେ, ତାହା ପାଳନ କରୁଥିଲେ ଏବଂ ନିଜ ଜୀବନରେ ପରୀକ୍ଷିତ ସତ୍ୟକୁ ସେ ଲୋକମାନଙ୍କୁ ପ୍ରଦାନ କରୁଥିଲେ, ଏହା ହୁଏତ ରାଜନୀତି କିମ୍ବା ଅର୍ଥନୀତି, ଧର୍ମ କିମ୍ବା ବ୍ୟକ୍ତିଗତ ନୈତିକତା ସମ୍ପର୍କରେ ହେଉ।

ଏହି ଉପର ବର୍ଣ୍ଣିତ ବକ୍ତବ୍ୟରୁ ଜଣାପଡ଼େ ଯେ ଗାନ୍ଧିଜୀଙ୍କର ମନୁଷ୍ୟ ଉପରେ ଥିଲା ଗଭୀର ବିଶ୍ୱାସ। ମନୁଷ୍ୟର ସମ୍ମାନ ଓ ଭାଗ୍ୟ ଏବଂ ନିଜର ଅନ୍ତଃସ୍ଥ ପ୍ରକୃତି ଜାଣିବା ଉପରେ, ଦକ୍ଷତା ସମ୍ପର୍କରେ ଗାନ୍ଧୀ ଗଭୀର ବିଶ୍ୱାସ ସ୍ଥାପନ କରୁଥିଲେ।

ଏଥିରୁ ସ୍ପଷ୍ଟ ଅନୁମିତ ଯେ ଆତ୍ମାନୁଭୂତି, ବ୍ୟକ୍ତି ଜୀବନର ଅଫୁରନ୍ତ ଅନୁଭୂତିର ଫଳ। ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ଏ ସମ୍ପର୍କରେ ଉଲ୍ଲେଖ କରାଯାଇପାରେ ଯେ ଗାନ୍ଧିଜୀଙ୍କର ମାନବିକତାବାଦ, ସ୍ୱାମୀଜୀଙ୍କ ପରି ମନୁଷ୍ୟର ଅଫୁରନ୍ତ ସମ୍ଭାବନା ବିଶ୍ୱାସରୁ ହିଁ ଉଦ୍ଭବ ଏବଂ ସେମାନଙ୍କର ବିଶ୍ୱାସ ଯେ ମନୁଷ୍ୟ ତା'ର ଅଫୁରନ୍ତ ସମ୍ଭାବନାକୁ ଅନୁଭୂତ କରିବା ପାଇଁ ଆଗକୁ ଅଗ୍ରସର ହେବ।

**ପରିସମାପ୍ତି :** ଊନବିଂଶ ଶତାବ୍ଦୀର ସବୁଠାରୁ ପ୍ରତିଭା ସମ୍ପନ୍ନ ଭାରତୀୟ ସନ୍ଥନେତା ଥିଲେ ସ୍ୱାମୀଜୀ ଏବଂ ଗାନ୍ଧିଜୀ ଥିଲେ ବିଂଶ ଶତାବ୍ଦୀର । ସେମାନେ ସମସାମୟିକ କିନ୍ତୁ କେବେହେଲେ ପରସ୍ପରକୁ ଭେଟିନଥିଲେ କିମ୍ବା ଆଲୋଚନା କରିନଥିଲେ। ସେମାନଙ୍କର ସର୍ବସାଧାରଣ ଜୀବନ ଏକା ସମୟରେ ଆରମ୍ଭ ହୋଇଥିଲା ଏହାକୁ କେହି ଦୃଷ୍ଟି ପକାଇ ନାହାନ୍ତି। ୧୮୯୩ ମସିହାରେ ସ୍ୱାମୀଜୀ ଚିକାଗୋ ବିଶ୍ୱଧର୍ମ ସମ୍ମେଳନରେ ତାଙ୍କର ବିଶ୍ୱବିଜୟୀ ବକ୍ତୃତା ପ୍ରଦାନ କରିଥିଲେ ଏବଂ ଗାନ୍ଧିଜୀ ମଧ୍ୟ ସେହି ବର୍ଷ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ବିରୁଦ୍ଧରେ ଆନ୍ଦୋଳନ କରିଥିଲେ। ଉଭୟ ପୃଥକ୍ ପୃଥକ୍ ପ୍ରେକ୍ଷାପଟ୍ଟରୁ ଆସିଥିଲେ। ସ୍ୱାମୀଜୀ ୧୯୦୨ ମସିହାରେ ୩୯ବର୍ଷ ବୟସରେ ଦେହତ୍ୟାଗ କଲେ, ଯେତେବେଳେ ଗାନ୍ଧିଜୀ ରାଜନୈତିକ ପରିସର ମଧ୍ୟକୁ ୨୪ବର୍ଷ ବୟସରେ ପ୍ରବେଶ କରି ବର୍ଣ୍ଣବୈଷମ୍ୟ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗ୍ରାମ କରି ୧୯୪୮ରେ ସହିଦ୍ ହେଲେ ।

ଏହି ଭିନ୍ନତା ସତ୍ତ୍ୱେ , ସେମାନଙ୍କର ଚିନ୍ତା ଓ ଉପଦେଶ ମଧ୍ୟରେ ଅନେକ ସାମଞ୍ଜସ୍ୟ ଦେଖିବାକୁ ମିଳେ ଏବଂ ଯଦି ଆମେ ଏହାକୁ ସଠିକ୍ ଭାବରେ ଲକ୍ଷ୍ୟ କରିବା, ତେବେ ସ୍ୱାମୀଜୀ ଯେଉଁ କାର୍ଯ୍ୟକୁ ଅଧୁରା ଛାଡ଼ି ଯାଇଥିଲେ ସେହି ଭାରତର ପୁନର୍ଜାଗରଣ ଓ ସଂସ୍କାରକୁ ଗାନ୍ଧୀଜୀ ଆଗକୁ ନେଇଥିଲେ।

ବର୍ତ୍ତମାନ ମାନବ ସମାଜ ଏକ ସନ୍ଧିକ୍ଷଣରେ। ବ୍ୟାପକ ହିଂସା, ସନ୍ତ୍ରାସବାଦ, ସାଂପ୍ରଦାୟିକତାବାଦ, ବିଚ୍ଛିନ୍ନତାବାଦ ଯୋଗୁଁ ମନୁଷ୍ୟର ସ୍ଥିତି ବିପନ୍ନ। ଖାଦ୍ୟ, ପରିବେଶ ଓ ଜଳର ଉତ୍କଟ ସମସ୍ୟା ସମଗ୍ର ମାନବ ସମାଜକୁ ଆଚ୍ଛନ୍ନ କରିଛି।

ବର୍ତ୍ତମାନ ଭାରତ ଯେଉଁ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ଦେଇ ଯାଉଛି, ତାହା ହେଉଛି ବିଶ୍ୱାସ ଏବଂ ଚରିତ୍ରର ସମସ୍ୟା, ମାନସିକ ଓ ନୈତିକ ଅଧଃପତନ ଏବଂ ପାରମ୍ପରିକ ମୂଲ୍ୟବୋଧର ଅବକ୍ଷୟ। ଉଭୟ ଯେଉଁ ପ୍ରେରଣାପ୍ରଦ ଆହ୍ୱାନ ଦେଇଥିଲେ, ତାହା ବର୍ତ୍ତମାନ ଆମର ନୀତି ନିର୍ଦ୍ଧାରକ, ଯେଉଁମାନେ ଦେଶର ନେତୃତ୍ୱ ନେଉଛନ୍ତି ସେମାନଙ୍କ ବଧିର କାନରେ ପଡ଼ୁନାହିଁ। ଯାହା ଫଳରେ ସେମାନେ ରାଷ୍ଟ୍ରକୁ ଅଧିକ ଗଭୀର ସଂକଟ ମଧ୍ୟକୁ ନେଉଛନ୍ତି। ଏପରି ସମୟରେ ଗାନ୍ଧୀ ଓ ସ୍ୱାମୀଜୀଙ୍କର ମହତ୍ତ୍ୱର ଆବଶ୍ୟକତା ଅଧିକ।

ସ୍ୱାମୀଜୀ ଓ ଗାନ୍ଧିଜୀଙ୍କର ମନୁଷ୍ୟ ସମ୍ପର୍କରେ ବିଚାର ଯେ ମନୁଷ୍ୟ ହେଉଛି ଦେବତ୍ୱର ଅଧିକାରୀ ଓ ଆଧ୍ୟାତ୍ମିକ ପ୍ରାଣୀ, ଏହି ତତ୍ତ୍ୱକୁ ଖିନ୍‌ଭିନ୍ କରି ଜନଗଣଙ୍କ ମଧ୍ୟରେ ପ୍ରଚାର କରିବା ଦରକାର । ଏହା ହୋଇପାରିଲେ ଭାରତ ଓ ବିଶ୍ୱକୁ ବିପଦରୁ ରକ୍ଷା କରିବାରେ ଆମେ ହୁଏତ ସମର୍ଥ ହୋଇପାରିବା ।

ଗଜପତି ନଗର
ଭୁବନେଶ୍ୱର–୭୫୧୦୦୫

❖ ❖ ❖

# ବୈଦିକ ସଭ୍ୟତାରେ ଶକ୍ତି ଉପାସନା

ଡକ୍ଟର ତ୍ରିନାଥ ପଟ୍ଟନାୟକ

ଦେବୀ ପୂଜାର ପରମ୍ପରା ସିନ୍ଧୁ ସଭ୍ୟତାରୁ ପ୍ରାରମ୍ଭ ହୋଇଛି । ସିନ୍ଧୁ ସଭ୍ୟତାରୁ ଉପଲବ୍ଧ ବିଭିନ୍ନ ଅଳଙ୍କାରରେ ସୁସଜ୍ଜିତ ନାରୀ ପ୍ରତିମା ସବୁ ମିଳିଛି ଯାହାକୁ ବିଦ୍ୱାନମାନେ ମହାମାତୃଦେବୀ ବୋଲି କହିଥାନ୍ତି । ଏସବୁ ପ୍ରକୃତି ମାତାର ପ୍ରତିମୂର୍ତ୍ତି । ଏହି ଧାରା କ୍ରମେ ଭାରତୀୟ ଆର୍ଯ୍ୟ ଧାର୍ମିକ ସଂସ୍କୃତିରେ ଅନୁଶ୍ରୁତ ହୋଇଅଛି ଓ ତାହା ଅନୁକୂଳ ବାତାବରଣ ସୃଷ୍ଟି କରିପାରିଛି । ସେଥିପାଇଁ ଭାରତୀୟ ପରମ୍ପରାରେ ମାତୃଦେବୀ ଆଦ୍ୟାଶକ୍ତି ବା ପ୍ରକୃତିର ପୂଜା ଚଳି ଆସୁଛି । ସେହି ପ୍ରକୃତିକୁ ବେଦ କୁହେ ଧରିତ୍ରୀ । ଧରିତ୍ରୀ, ପୃଥିବୀ ସବୁ କିଛି ମାତୃଶକ୍ତି । ରଗ୍‌ବେଦରେ ଆଦିତ୍ୟଙ୍କର ମାତା ହେଉଛନ୍ତି 'ଅଦିତି' । ବସ୍ତୁତଃ ଆର୍ଯ୍ୟ ଓ ଅନାର୍ଯ୍ୟ ଦୁଇ ପ୍ରକାର ଭାରତୀୟ ପ୍ରଜା ଦେବୀ ପୂଜା କରି ଆସୁଛନ୍ତି । ବନସ୍ପତି ଜଗତ ସହିତ ଦେବୀଙ୍କର ମହତ୍ତ୍ୱପୂର୍ଣ୍ଣ ସମ୍ପର୍କ ରହିଛି । ସେଥିପାଇଁ ବୈଦିକ ଦେବୀ ପୃଥିବୀ ଅଥବା ଏହାଙ୍କର ପୌରାଣିକ ସ୍ୱରୂପ ଶାକମ୍ଭରୀ, ଅନ୍ନପୂର୍ଣ୍ଣା ଇତ୍ୟାଦିଙ୍କର ସ୍ୱରୂପ ସ୍ପଷ୍ଟ ହୋଇଅଛି ।



ବୈଦିକ ସଭ୍ୟତା ମଧ୍ୟରେ ପ୍ରଥମେ ରଗ୍‌ବେଦରେ ଉଲ୍ଲେଖନୀୟ ଦେବୀମାନଙ୍କ ମଧ୍ୟରେ ଅଦିତି, ଉଷା, ପୃଥିବୀ, ସରସ୍ୱତୀ, ବାଚ, ରାତ୍ରି, ପୁରଂଧୀ, ଇଳା, ଧୀଷଣା ଓ ଭାରତୀ ଆଦି ବିଶେଷ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି । କାଳାନ୍ତରରେ ଏମାନଙ୍କର ଉତ୍ତରୋତ୍ତର ବିକାଶ ହୋଇ ସ୍ୱତନ୍ତ୍ର ଅସ୍ତିତ୍ୱର କାରଣରୁ ସେମାନଙ୍କର ଲୋକପ୍ରିୟତା ବଢିଯାଇଛି । ସେମାନଙ୍କୁ ପୁରାଣ ଯୁଗରେ ସର୍ବଶ୍ରେଷ୍ଠ ଦେବତା ରୂପେ କଳ୍ପନା କରାଯାଇ ଦେବୀର ସ୍ୱରୂପ ଦିଆଯାଇଛି । ରଗ୍‌ବେଦର ଦେବୀସୂକ୍ତରେ ବର୍ଣ୍ଣିତ 'ବାଚ'ର କଳ୍ପନା ବିଶେଷ ଭାବେ ଉଲ୍ଲେଖନୀୟ ଅଟେ । ଯେଉଁଥିରେ ସର୍ବପ୍ରଥମେ ସ୍ପଷ୍ଟ ଶବ୍ଦରେ ଏକ ସାର୍ବଭୌମ ସ୍ତ୍ରୀ ଶକ୍ତିର କଳ୍ପନା କରାଯାଇଛି । ଯିଏ କି ଦେବତା, ମନୁଷ୍ୟ ଓ ପଶୁ ସମସ୍ତଙ୍କ ସୃଷ୍ଟିରେ ପରିବ୍ୟାପ୍ତ ଅଟନ୍ତି ।

ଆଉ ମଧ୍ୟ ବିଚାର କରିବାର କଥା ତାନ୍ତ୍ରିକ ସାହିତ୍ୟରେ ଶାକ୍ତ ଧାର୍ମିକ କର୍ମମାନଙ୍କର 'ଦେବୀସୂକ୍ତ' ଓ 'ରାତ୍ରି ସୂକ୍ତ'କୁ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ପ୍ରଦାନ କରାଯାଇଛି । ବୈଦିକ ଦେବୀମାନଙ୍କ ମଧ୍ୟରେ ଧରିତ୍ରୀ ବିଶେଷ ଭାବରେ ଚର୍ଚ୍ଚିତ । ଯେଉଁଥିରେ ପ୍ରାୟ ଅନ୍ନଭୋଜନ, ଧନ ବୈଭବ, ସନ୍ତାନସୁଖ ଦୀର୍ଘାୟୁ ହେବା ଲାଗି ପ୍ରାର୍ଥନା ଅଛି । ତୈତରୀୟ ବ୍ରାହ୍ମଣ ପୃଥିବୀ ଦେବୀର ରୂପ ବର୍ଣ୍ଣନା ହୋଇଅଛି, ଯାହାକୁ ଶ୍ରଦ୍ଧା ବୋଲି କୁହାଯାଇଛି ।

ଅମ୍ବିକା, ଦୁର୍ଗା, ଉମା, କାଳୀ ଇତ୍ୟାଦି ବହୁ ପରିଚିତ ନାମ ଯେଉଁମାନେ କି ଶାକ୍ତ ଦେବୀମାନଙ୍କ ମଧ୍ୟରେ ପରବର୍ତ୍ତୀ ସମୟରେ ପ୍ରତିଷ୍ଠିତ ହୋଇଛନ୍ତି । ଉତ୍ତର ବୈଦିକ କାଳୀନ ସାହିତ୍ୟରେ ଏହିସବୁ ନାମ ମିଳିଥାଏ । ରଗ୍‌ବେଦର ମନ୍ତ୍ରମାନଙ୍କ ମଧ୍ୟରେ ଅଗ୍ନିଙ୍କ ସହିତ ଦୁର୍ଗାଙ୍କର ଯେଉଁ ବର୍ଣ୍ଣନା ମିଳିଥାଏ, ତାହା

ନିଶ୍ଚିତ ରୂପେ ପର ପର୍ଯ୍ୟାୟର ଅଟେ । ବାଜସେନେୟି ସଂହିତା ଓ ତୈତ୍ତିରୀୟ ବ୍ରାହ୍ମଣରେ ଅମ୍ବିକାଙ୍କର ନାମ ଉଲ୍ଲେଖ ଅଛି, ମାତ୍ର ରୁଦ୍ରଙ୍କ ଭଗିନୀ ରୂପରେ । ତୈତ୍ତିରୀୟ ଆରଣ୍ୟକର ଦଶମ ପ୍ରପାଠ, ଯାହା ନାରାୟଣୀୟୋପନିଷଦ ନାମରେ ବିଖ୍ୟାତ ସେଥିରେ ରୁଦ୍ରପତ୍ନୀଙ୍କର ସ୍ୱରୂପ ମିଳିଥାଏ । ଏସବୁ ପର୍ଯ୍ୟାଲୋଚନା କଲେ ଅମ୍ବିକାଙ୍କୁ ଦୁର୍ଗା, କନ୍ୟାକୁମାରୀ, ବୈରୋଚନୀ ଓ କାତ୍ୟାୟନୀ ନାମରେ ଅଭିହିତ କରାଯାଇଛି । କେନୋପନିଷଦରେ ହେମବତୀ ଉମାଙ୍କର ବର୍ଣ୍ଣନା ଇନ୍ଦ୍ର ଆଦି ଦେବତାମାନଙ୍କୁ ବ୍ରହ୍ମଜ୍ଞାନ ପ୍ରଦାନ କରୁଥିବା ଦିବ୍ୟସ୍ତ୍ରୀ ମହାବିଦ୍ୟା ରୂପରେ ପରିଚିତ କରାଯାଇଛି । 'ମୁଣ୍ଡକୋପନିଷଦ୍'ରେ ଅଗ୍ନିଙ୍କର ସାତଗୋଟି ଜିହ୍ୱାକୁ ନେଇ ଯେଉଁ ଚର୍ଚ୍ଚା ହୋଇଛି, ସେଥିମଧ୍ୟରୁ ଦୁଇଗୋଟିର ନାମ 'କାଳୀ ଓ କରାଳୀ' ଅଟେ ।

ଭଦ୍ରକାଳୀ, ଭବାନୀ, ଦୁର୍ଗା ଇତ୍ୟାଦି ବିବିଧନାମ ଶାଙ୍ଖାୟନ ଓ ହିରଣ୍ୟକେଶୀ ଗୃହ୍ୟସୂତ୍ର ତଥା ତୈତ୍ତିରୀୟ ଆରଣ୍ୟକରୁ ପ୍ରାପ୍ତ ହୋଇଥାଏ । ବୋଧାୟନ ଗୃହ୍ୟସୂତ୍ରରେ ରୁଦ୍ରଙ୍କ ସହିତ ଦୁର୍ଗାଦେବୀଙ୍କର ପୂଜନ ହୋଇଥିବା କଥା ଚର୍ଚ୍ଚା ହୁଏ । ସେଠାରେ ସେ ଆର୍ଯ୍ୟା ଭଗବତୀ, ଦେବ-ସଂକୀର୍ତ୍ତି, ମହାକାଳୀ, ମହାଯୋଗିନୀ, ଶଙ୍ଖଧାରିଣୀ, ମହାପୃଥ୍ୱୀ, ମନୋରମା ଓ ମହାବୈଷ୍ଣବୀ ପ୍ରଭୃତି ନାମ ଦିଆଯାଇଛି ।

ଏଥିରୁ ସ୍ପଷ୍ଟ ହେଉଛି ଯେ ଉତ୍ତର ବୈଦିକକାଳୀନ ସାହିତ୍ୟରେ ଏହି ଅଙ୍କୁର ଧୀରେ ଧୀରେ ବିକଶିତ ହୋଇ କାଳାନ୍ତରରେ ଶାକ୍ତ ଧର୍ମ ଓ ଦେବୀ ପୂଜାର ପରମ୍ପରା ସୃଷ୍ଟି ହେଲା । ମହାକାବ୍ୟ ଯୁଗ ଆସିବା ବେଳକୁ ଦେବୀ ପୂଜାର ବିଶେଷ ବିକାଶ ହୋଇ ସାରିଲାଣି । ଯଦ୍ୟପି ରାମାୟଣରେ ଦେବୀଙ୍କ ସ୍ୱରୂପ ଓ ତାର ବିକାଶ ଉପରେ ଆଲୋକପାତ କରିବା ପାଇଁ ସାମଗ୍ରୀ କମ୍ ତଥାପି ଦେବୀ ସମ୍ପର୍କିତ ବହୁ ପୌରାଣିକ ଆଖ୍ୟାନମାନ ଅଛି । ଯଥା– ଦେବୀ ହିମମନ୍ତ ଦ୍ୱାରା ପୁତ୍ରୀ ଉମାଙ୍କୁ ରୁଦ୍ରଙ୍କ ହସ୍ତରେ ଅର୍ପଣ କରିବା, ଦକ୍ଷଯଜ୍ଞ, ଗଙ୍ଗାବତରଣ ଆଦି । ମାତ୍ର ମହାଭାରତରେ ଶକ୍ତି ପୂଜାର ପରମ୍ପରା ଅଧିକ ବିକଶିତ ହୋଇଛି । ଦେବୀମାନଙ୍କର ଶକ୍ତିପୀଠ, ଦେବୀଙ୍କ ସହିତ ସମ୍ପର୍କ ଥିବା ଯୋନିକୁଣ୍ଡ ଓ ସ୍ତନକୁଣ୍ଡର ଚର୍ଚ୍ଚା ହୋଇଛି । ସଂସ୍କୃତ ମହାଭାରତ ଅପେକ୍ଷା ଓଡ଼ିଆ ସାରଳା ମହାଭାରତରେ ଶାକ୍ତ ପରମ୍ପରା ଓ ଦେବୀମାନଙ୍କ ଚରିତ ବିଶେଷ ଭାବେ ଚର୍ଚ୍ଚିତ ।

ମହାଭାରତ ଭୀଷ୍ମ ପର୍ବ (୨୩ତମ ଅଧ୍ୟାୟ)ରେ ଯୁଦ୍ଧରେ ବିଜୟଶ୍ରୀ ପ୍ରାପ୍ତ କରିବା ନିମନ୍ତେ ଶ୍ରୀକୃଷ୍ଣଙ୍କ ପରାମର୍ଶରେ ବୀର ଅର୍ଜୁନ ଶ୍ରୀଦୁର୍ଗା ସ୍ତୁତି କରିଥିବା କଥା ଉଲ୍ଲେଖ ଅଛି । ଏଠାରେ ଶ୍ରୀଦୁର୍ଗାଙ୍କୁ କାଳୀ କୁମାରୀ, କପାଳିନୀ, ମହାକାଳୀ, ଚଣ୍ଡୀ, କାତ୍ୟାୟିନୀ, କରାଳା, ବିଜୟା କୌଶିକୀ, ଉମା, କାଂତାରବାସିନୀ ପ୍ରଭୃତି ନାମରେ ବିଭୂଷିତ କରାଯାଇଛି । ଏଠାରେ ଦୁର୍ଗାଙ୍କ ନାମ ସହିତ ଉମାଙ୍କ ନାମ ଉଲ୍ଲେଖ ଅଛି । ଏହା ବିଶେଷ ରୂପେ ଶିବପତ୍ନୀ ରୂପରେ ସେ ବେଦ, ବେଦାନ୍ତ, ସୁଚରିତ୍ରା ତଥା ଅନ୍ୟ ଅନେକ ଗୁଣ ଯୁକ୍ତା ଅଟନ୍ତି ଓ କୁମାରୀ ନୁହନ୍ତି ।

ଏଭଳି ଭାବରେ ବିରାଟ ପର୍ବରେ (ଷଷ୍ଠ ଅଧ୍ୟାୟ) ଯୁଧିଷ୍ଠିର ମଧ୍ୟ ଦୁର୍ଗାସ୍ତୁତି କରିଛନ୍ତି । ଏହି ସ୍ତୁତିରେ ମହିଷାସୁର ମର୍ଦ୍ଦିନୀ ରୂପକୁ ଗୁରୁତ୍ୱ ଦିଆଯାଇଛି । ଯିଏ କି ବିନ୍ଧ୍ୟ ପର୍ବତ ଉପରେ ନିବାସ କରନ୍ତି । ଆଉ ମଦିରା, ମାଂସ ଓ ପଶୁବଳୀ ଦ୍ୱାରା ପ୍ରସନ୍ନ ହୋଇଥାନ୍ତି । ସେ ପୁଣି ଶ୍ରୀକୃଷ୍ଣଙ୍କର ଭଗିନୀ ଅଟନ୍ତି । ଶ୍ରୀକୃଷ୍ଣଙ୍କ ସମାନ ସେ ମଧ୍ୟ ଘନ ନୀଳବର୍ଣ୍ଣ ଓ ମୟୂର ପୁଚ୍ଛ ଧାରଣ କରିଥାନ୍ତି । ମାତ୍ର ସେହି ଦେବୀଙ୍କର ଶିବଙ୍କ ସହିତ କୌଣସି ସମ୍ପର୍କ ନାହିଁ ।

ହରିବଂଶ ପୁରାଣର ଦୁଇଟି ଅଧ୍ୟାୟ ଓ ମାର୍କଣ୍ଡେୟ ପୁରାଣର ଗୋଟିଏ ଅଂଶକୁ ଦେବୀ ମାହାତ୍ମ୍ୟ ବୋଲି କୁହାଯାଏ । ଦେବୀ ମାହାତ୍ମ୍ୟର ରଚନା ସମୟ ଷଷ୍ଠ ଶତାବ୍ଦୀ ବୋଲି କୁହାଯାଏ । ହରିବଂଶର ଅଧ୍ୟାୟମାନଙ୍କରେ ଶାକ୍ତ ସମ୍ପ୍ରଦାୟର ଧାର୍ମିକ ଦର୍ଶନ ବର୍ଣ୍ଣନା ହୋଇଅଛି । ଏହି ଅନୁସାରେ ଦେବୀ ଉପନିଷଦର ବ୍ରହ୍ମ ଅଟନ୍ତି । ଏଠାରେ ସର୍ବପ୍ରଥମେ ଶକ୍ତିରୂପେ ପରିକଳ୍ପନା କରାଯାଇଛି । ଶକ୍ତି ବସ୍ତୁତଃ ଉମା ଓ ପାର୍ବତୀଙ୍କର ବିକଶିତ ଦାର୍ଶନିକ ଓ ତାନ୍ତ୍ରିକ ରୂପ ଅଟେ । କାଳାନ୍ତରରେ ସେ ମହିମା ବଢ଼ିଯାଇଛି । ଉମା ରୂପରେ ସେ ହୋଇଛନ୍ତି କୁମାରୀ କନ୍ୟା । ଶିବଙ୍କ ସହିତ ବିବାହ ହୋଇଯିବା ପରେ ମାତା ରୂପିଣୀ ପାର୍ବତୀ ରୂପରେ ପରିଚିତା ହୋଇଛନ୍ତି । ସେ ଯେତେବେଳେ କପାଳ ଭରଣା କାଳୀ ଅଥବା ସିଂହବାହିନୀ ଦୁର୍ଗା ରୂପରେ ମହାକାଳଙ୍କର ଶକ୍ତି ହୋଇ ଯାଇଛନ୍ତି, ସେତେବେଳେ ତାଙ୍କର ତେଜ ସ୍ୱତନ୍ତ୍ର ହୋଇଉଠିଛି । ବିଷ୍ଣୁ ଓ ଶିବଙ୍କୁ ଛାଡିଦେଲେ କାହାରି ମହିମା ଏତେ ମାତ୍ରାରେ ବଢ଼ି ନାହିଁ ଯେତିକି ଶକ୍ତିମୟ ଦୁର୍ଗାଙ୍କର ବଢ଼ିଛି । ଆଉ ମଧ୍ୟ କେବେ ଏହି ଶକ୍ତି କାଳୀ, ଚାମୁଣ୍ଡା, ଚଣ୍ଡୀ ରୂପରେ ଶିବ ପତ୍ନୀ ହୋଇଯାଇଛି କିନ୍ତୁ ସେମାନଙ୍କର ସ୍ୱତନ୍ତ୍ର ତେଜ ଅଛି । ଅନ୍ୟପକ୍ଷରେ ଏହି ଶକ୍ତିମାନଙ୍କର ସରସ୍ୱତୀଙ୍କ ସହିତ ସମ୍ପର୍କ ଅଛି । କାହିଁକିନା ସରସ୍ୱତୀ ହେଉଛନ୍ତି ବାଗ୍‌ଦେବୀ । ସେଥିପାଇଁ ଓଡ଼ିଶାରେ ଶାରଳା ଦୁର୍ଗା ଓ ସରସ୍ୱତୀ (ବାଗ୍‌ଦେବୀ ମଧ୍ୟ) ଏକ ଅଟନ୍ତି ।

ଉପେନ୍ଦ୍ର ଭଞ୍ଜ ପୂଜିତ ବାଗ୍‌ଦେବୀ ମଧ୍ୟ ଦୁର୍ଗା ବା ଚଣ୍ଡୀ ଅଟନ୍ତି । ଏସବୁର ତୁଳନା ଋଗ୍‌ବେଦରେ ବର୍ଣ୍ଣିତ ଶକ୍ତିଦେବୀ ବାଗମ୍ଭୃଣୀଙ୍କ ସହିତ କରାଯାଇଛି । ଯାହାଙ୍କର ବାକ୍‌ତେଜର ମହିମା ସାହିତ୍ୟରେ ଅନନ୍ୟ ଅଟେ । ସେ କହିଛନ୍ତି–

'ଅହଂ ରୁଦ୍ରାୟ ଧନୁରାତନୋମି ବ୍ରହ୍ମାଦ୍ୱିଷେ ଶଖେ ହଂସବାହା ଅହଂ ଜନାୟ ସମଦଂ କୃଣୋମି ଅହଂ ଦ୍ୱାବାପୃଥିବୀ ଆବିବେଶ ।'

ମୁଁ ହିଁ ବ୍ରହ୍ମ ବିଦ୍ୱେଷୀମାନଙ୍କୁ ମାରିବା ପାଇଁ ରୁଦ୍ର ଧନୁରେ ଶର ଚଢାଇ ଥାଏ । ମୁଁ ସୈନ୍ୟମାନଙ୍କୁ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ କରିଥାଏ । ମୁଁ ଆକାଶ ଓ ପୃଥିବୀ ସର୍ବତ୍ର ପରିବ୍ୟାପ୍ତ ଅଟେ ।

ବିଷ୍ଣୁ ଓ ଶିବ ଦୁହିଁଙ୍କର ପ୍ରଭାବ ସମିଶ୍ରଣ ହେବା ପରେ ଶକ୍ତି ମହାଲକ୍ଷ୍ମୀ ହୋଇଛନ୍ତି । ଶିବଙ୍କ ସହିତ ସଂପର୍କ ବଢିଲା ପରେ ତାଙ୍କର ଶକ୍ତି ବଢିଛି ଓ ସେ ମହାଦେବୀ, ମାହେଶ୍ୱରୀ ଓ ମହାକାଳୀ ନାମରେ ଅଭିହିତ ହୋଇଛନ୍ତି । କାଳାନ୍ତରରେ ସମସ୍ତ ଦେବତାମାନଙ୍କର ଶକ୍ତି ସଂଯୁକ୍ତ ହୋଇଯିବା ପରେ ସେ ସପ୍ତମାତୃକା ନାମରେ ପରିଚିତା । ସେମାନଙ୍କ ନାମ– ବ୍ରହ୍ମାଣୀ, ମାହେଶ୍ୱରୀ, କୌମାରୀ, ବୈଷ୍ଣବୀ, ବାରାହୀ, ଇନ୍ଦ୍ରାଣୀ ଓ ଯମୀ ଅଥବା ଚାମୁଣ୍ଡା, ଦେବୀ ହୋଇଥାନ୍ତି । ସପ୍ତମାତୃକାର ପ୍ରତିମା କୁଷାଣ ସ୍ଥାପତ୍ୟ କାଳରୁ ମିଳିଥାଏ । କାଳିଦାସଙ୍କ କୁମାର ସମ୍ଭବ ଓ ସ୍କନ୍ଦଗୁପ୍ତଙ୍କର ବିବାହ ସ୍ତମ୍ଭ ଲେଖରୁ ଏହିସବୁ ନାମ ମିଳିଥାଏ ।

ମାର୍କଣ୍ଡେୟାଦି ପୁରାଣମାନଙ୍କରେ ଯେତେବେଳେ ଅସୁର ସଂହାରର କଥାର ସମାବେଶ କରାଗଲା, ସେତେବେଳେ ଦେବୀ ମାହାତ୍ମ୍ୟ–କଳ୍ପନାତୀତ ଭାବେ ବଢିଗଲା । ଦେବୀଙ୍କୁ ଶିବଙ୍କ ଭଳି ସ୍ୱାମୀଙ୍କଠାରୁ ସ୍ୱତନ୍ତ୍ର କରି ଦିଆଗଲା । ବ୍ରହ୍ମା, ଶୁକ୍ର, ନାରାୟଣଙ୍କ ଦ୍ୱାରା କରାଯାଇଥିବା ଦେବୀ ସ୍ତୁତି ଓ ଶୁମ୍ଭ ନିଶୁମ୍ଭ ରକ୍ତ ବୀଜ ଓ ମହିଷାସୁର ଭଳି ଦୈତ୍ୟ ସଂହାର କରିଥିବା ଯୋଗୁଁ ଦେବୀ ଶକ୍ତି ଓ ମହିମା ବିସ୍ତାର ଲାଭ କଲା । ଆଉ ଦେବୀଙ୍କର ତେଜ ବ୍ରହ୍ମା, ବିଷ୍ଣୁ ଓ ଶିବଙ୍କଠାରୁ ବଳିଗଲା ବୋଲି କୁହାଗଲା । ଦେବୀଙ୍କୁ ଚଣ୍ଡୀ ଓ ଅମ୍ବିକା କହି ପ୍ରଶଂସା କରାଗଲା ।

ସେହି ସମୟରେ କବିମାନେ 'ଚଣ୍ଡୀ ଶତକ' ଓ 'ଚଣ୍ଡୀ ସ୍ତୋତ୍ର' ସବୁ ରଚନା କରିବାକୁ ଲାଗିଲେ । ଏହି ସ୍ତୋତ୍ରମାନଙ୍କରେ ମୂଳଦେବତା ମହାଲକ୍ଷ୍ମୀଙ୍କର ଗୁଣ ପ୍ରକଟ ହୋଇଛି ଯିଏ ସତ୍ତ୍ୱ ରଜ ଓ ତମ ତିନିଗୁଣର ଅଧିକାରୀ ଅଟନ୍ତି । ତମୋଗୁଣ ପ୍ରଧାନ ମହାକାଳୀଙ୍କୁ ମହାମାୟା, ମହାମାରୀ, କ୍ଷୁଧା, ତୃଷା, ନିଦ୍ରା, ଯୋଗନିଦ୍ରା ଓ କାଳରାତ୍ରି ପ୍ରଭୃତି ନାମ ପ୍ରଦାନ କରାଯାଇଛି । ସତ୍ତ୍ୱଗୁଣ ପ୍ରଧାନ ମହାସରସ୍ୱତୀଙ୍କୁ ମହାବାଣୀ, ବାକ୍, ଭାରତୀ, ମହାବିଦ୍ୟା ଓ ବେଦଗର୍ଭା ବୋଲି କୁହାଯାଇଛି । ଶକ୍ତିଙ୍କର ଏହି ତିନିମୂଳ ରୂପ କ୍ରମଶଃ ବ୍ରହ୍ମା ଓ ଶ୍ରୀ, ରୁଦ୍ର ଓ ତ୍ରୟୀ, ବିଷ୍ଣୁ ଓ ଗୌରୀର ଉତ୍ପନ୍ନ ବୋଲି ସ୍ୱୀକାର କରାଯାଇଛି ।

ଫଳରେ ଦେବୀ ପୂଜାର କ୍ରମ ବିକାଶ ଘଟିଛି, ତାନ୍ତ୍ରିକ ଆଚାର ବିଚାର ସହିତ ଶାକ୍ତ ସମ୍ପ୍ରଦାୟର ରୂପ ରେଖ ସୃଷ୍ଟି ହେଲା । ଅନୁମାନ କରାଯାଉଛି ସପ୍ତମ ଓ ଅଷ୍ଟମ ଶତାବ୍ଦୀ ବେଳକୁ ଓଡ଼ିଶା, ବଙ୍ଗଳା ଓ ଆସାମରେ ଶାକ୍ତ ସମ୍ପ୍ରଦାୟର ବିକାଶ ଘଟିଛି । ବିଭିନ୍ନ ନାମ ଯଥା– ବିମଳା, ଶାରଳା, ମଙ୍ଗଳା, ଚର୍ଚ୍ଚିକା, ଭଗବତୀ, ବିରଜା, ତ୍ରିପୁରା, ଲୋହିତା, ଷଡଶିକା, କାମେଶ୍ୱରୀ ଭୈରବୀ, କାଳୀ ଓ ବାଳୀ ରୂପ ଧାରଣ କରି ଦେବୀ ରୂପରେ ପୂଜା ପାଇଲେ ।

'ଦେବୀ ମାହାତ୍ମ୍ୟ' ଶାକ୍ତମାନଙ୍କର ପ୍ରମୁଖ ଗ୍ରନ୍ଥମାନଙ୍କ ମଧ୍ୟରୁ ଅନ୍ୟତମ ଅଟେ । ଯାହା ଅନୁସାରେ ଦେବ ବା ଇଷ୍ଟ ଏକ ଅଟେ । ସେ ମା' ଏବଂ ସଂହାରକାରିଣୀ ଶକ୍ତିରୂପା ମଧ୍ୟ ।

ପୁରାଣ ଇତିହାସରେ ଦେବୀ ତତ୍ତ୍ୱ ବିକଶିତ ହୋଇ ସମ୍ପ୍ରତି ଭିନ୍ନ ରୂପ ନେଇଛି । ଆଜି ସଂସାର ମାତୃଶକ୍ତି ଓ ଶାକ୍ତ ସମ୍ପ୍ରଦାୟ ପ୍ରତି ବିଶେଷ ଆକୃଷ୍ଟ । ମା'ର ନାମ ଗାନରେ ଶତମୁଖ ଓ ମାତୃ ଆରାଧନା କରି ନିଜକୁ ଧନ୍ୟ ମନେ କରୁଛି ।

ଆଲୋକ ନଗର, ନିଆଳୀ
ଜିଲ୍ଲା– କଟକ

❖ ❖ ❖

# ଦେବୀ ପୂଜା

**କାର୍ତ୍ତିକ ଚନ୍ଦ୍ର ଷଡଙ୍ଗୀ**

ପୁରାଣର କଥାବସ୍ତୁ ଯାହା ହେଉନା କାହିଁକି ଜୀବନକୁ ପୁଷ୍କଳ କଳାଭଳି ପୁଞ୍ଜି ଭରପୂର ରହିଛି । ବିଭିନ୍ନ ଚରିତ୍ର ମାଧ୍ୟମରେ ଆମେ ଏହି ନିଷ୍କର୍ଷରେ ଉପନୀତ ହେଉ– 'ଅନିଷ୍ଟ ଉପରେ ଇଷ୍ଟର ସଦା ବିଜୟ' । ଆମ ଦ୍ୱାରା ପୂଜିତ ଦେବୀ–ଦେବତା ଗଣ କିଭଳି ଅଲୌକିକ କର୍ମ ପ୍ରଦର୍ଶନ କରି ଏକ ନୂତନତ୍ୱର ଝଲକ ପରିବେଷଣ କରିଦେଇ ଯାଇଛନ୍ତି, ତାହା ଘଟଣାବଳୀମାନଙ୍କ ଉପରେ ଲକ୍ଷ୍ୟ ରଖିଲେ ବୁଝିପାରିବା ।



ମର୍ଯ୍ୟାଦାପୁରୁଷ ରାମଚନ୍ଦ୍ର ବଣଭିତରେ ଦେବୀ ପୂଜନ ପାଇଁ ପ୍ରସ୍ତୁତ ହେଲେ । ଏକଶହ ଆଠ ପଦ୍ମଫୁଲ ମା'ଙ୍କୁ ଅର୍ପଣ କରିବାର ପ୍ରୟାସ କରି ହନୁମାନଙ୍କୁ ଆଣିବା ପାଇଁ ପଠାଇଲେ । ହନୁମାନ ଆଣିଥିବା ଫୁଲକୁ ଯେତେଥର ଗଣିଲେ ମଧ୍ୟ ୧୦୮ରୁ ଗୋଟିଏ ନିଅଣ୍ଟ ପଡିଲା । ରାମଚନ୍ଦ୍ର ସ୍ୱୟଂ ପଦ୍ମଲୋଚନ । ତାଙ୍କର ଆଖିକୁ ନୀଳପଦ୍ମ ସହିତ ତୁଳନା କରାଯାଇଛି । ତେଣୁ ପ୍ରସ୍ତୁତ ହୋଇଗଲେ ମାନସିକ ସ୍ତରରେ ଶରବିଦ୍ଧ କରି ଗୋଟିଏ ଆଖି ମିଶାଇ ଦେଲେ ପଦ୍ମଫୁଲ ସଂଖ୍ୟା ୧୦୮ ହୋଇଯିବ ଏବଂ ମା'ଙ୍କୁ ଅର୍ପଣ କରିଦେଲେ ପୂଜା ପୂର୍ଣ୍ଣାଙ୍ଗ ହେବ । ଏଭଳି କଠୋର ନିଷ୍ପତ୍ତି ଦେଖି ଆଖି ବିଦ୍ଧ କରିବା ପାଇଁ ପ୍ରସ୍ତୁତି ବେଳେ ମା' ନିଜେ ଆବିର୍ଭୁତା ହେଲେ । ଦୈବୀ କାର୍ଯ୍ୟରେ ନିଷ୍ଠା ଓ ସଂକଳ୍ପ ଯୋଗେ ଦୈବୀଶକ୍ତି ଧରାଧାମକୁ ଓହ୍ଲାଇ ଆସନ୍ତି ଭକ୍ତର ମନୋବାଞ୍ଛା ପୂର୍ଣ୍ଣ ସକାଶେ । ରାମଚନ୍ଦ୍ରଙ୍କୁ ତାଙ୍କର ପ୍ରୟାସରୁ ନିବୃତ୍ତି କରି ବରପ୍ରଦାନ କଲେ ମା' ଦୁର୍ଗା । ଦେବୀପୀଠମାନଙ୍କରେ ସେଇଦିନଠାରୁ ନୀଳପଦ୍ମ ବା ନୀଳକଇଁ ଦେବାର ପରମ୍ପରା ରହିଛି । ବିଶେଷକରି ପୁରୀ ଜିଲ୍ଲାର ବ୍ରାହ୍ମଣ ଶାସନ ଯଥା ବୀର ହରେକୃଷ୍ଣପୁର, ବୀରନରସିଂହପୁର, ବୀର ବଳଭଦ୍ରପୁର, ବୀର ରାମଚନ୍ଦ୍ରପୁର ପ୍ରଭୃତି ଗ୍ରାମମାନଙ୍କରେ ଦେବୀପୀଠରେ ମା'ଙ୍କୁ ନୀଳକଇଁ ଅର୍ପଣ କରାଯାଏ । ମା'ଙ୍କ ପାଇଁ ନୀଳକଇଁ ଓ ମନ୍ଦିରବେଢ଼ା ସଜାଇବା ପାଇଁ ଧଳାକଇଁ ବ୍ୟବହୃତ ହୁଏ । ଦକ୍ଷପ୍ରଜାପତି ଏକ ଯଜ୍ଞ ଆୟୋଜନ କରି ଶିବଙ୍କୁ ନିମନ୍ତ୍ରଣ କଲେ ନାହିଁ ଯେହେତୁ ସେ ଶ୍ମଶାନବାସୀ ଓ କୁତ୍ସିତ ବେଶଧାରୀ । ସତୀ ଏଥିରେ ଅପମାନ ବୋଧ କଲେ ଏବଂ ପିତାଙ୍କର ସ୍ୱାମୀଙ୍କ ପ୍ରତି ଅବିଚାର ଯୋଗୁଁ ଯଜ୍ଞକୁଣ୍ଡରେ ଝାସ ଦେବାକୁ ମନସ୍ଥ କଲେ । ଝାସଦେବାକୁ ଯିବାବେଳକୁ ସ୍ୱୟଂ ଶିବ ସତୀଙ୍କର ପଥରୋଧ କଲେ । ଏଥିରେ କ୍ରୋଧ ଜର୍ଜରିତା ସତୀ ଦିଗମ୍ବରୀ ରୂପ ଧାରଣ କଲେ । ସେହି ରୂପ ଦର୍ଶନରେ ଶିବ ଅନ୍ୟତ୍ର ଯିବାକୁ ଉଦ୍ୟତ ହୁଅନ୍ତେ ସତୀ

ସ୍ୱଶରୀରରୁ ୧୦ ଗୋଟି ଭୟଙ୍କର ମୂର୍ତ୍ତି ସୃଷ୍ଟି କରି ଦଶଦିଗରେ ଶିବଙ୍କର ପଥରୋଧ କଲେ । ଆପଣାର ଦଶବିଧ ରୂପ ସମ୍ପର୍କରେ ସତୀ କହିଲେ ତାଙ୍କର ଏହି ଦଶରୂପ 'ଦଶମହାବିଦ୍ୟା' ରୂପରେ ଜଗତରେ ଖ୍ୟାତ ହେବ । ଶାସ୍ତ୍ର ମତରେ ଦଶବିଧ ରୂପ ହେଉଛନ୍ତି– କାଳୀ, ତାରା, ଷୋଡଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳାମୁଖୀ, ମାତଙ୍ଗୀ ଓ କମଳାମ୍ବିକା । ଏମାନଙ୍କୁ ତନ୍ତ୍ରବିଧିରେ ପୂଜା କଲେ ମାରଣ, ମୋହନ, ବଶ୍ୟ, ଉଚ୍ଚାଟନ, ସ୍ତମ୍ଭନ, ବିଦ୍ୱେଷଣ, ଶାନ୍ତିକରଣ ଓ ଦ୍ରାବଣ ଆଦି ଅଷ୍ଟସିଦ୍ଧି ପ୍ରାପ୍ତ ହୋଇଥାଏ ।

ରାବଣ ଦ୍ୱାରା ଅପହୃତ ହେବା ପୂର୍ବରୁ ନିଜ ସ୍ୱରୂପକୁ ଅଗ୍ନିରେ ଲୁକ୍କାୟିତ କରିବାକୁ ରାମଚନ୍ଦ୍ର ପତ୍ନୀ ସୀତାଙ୍କୁ କହିଥିଲେ । ଫଳତଃ ମା' ସୀତାଙ୍କର ନକଲି ରୂପ ରାବଣ ଦ୍ୱାରା ଅପହୃତା ହେଲା । ଅଗ୍ନି ପରୀକ୍ଷାରେ ସୀତା ସ୍ୱୀୟ ରୂପ ଧାରଣ କରି ବାହାରି ଆସିଲେ । ତେଣୁ ମା' ଅଗ୍ନିଲୁପ୍ତା ଓ ଅଗ୍ନିସମ୍ଭୂତା । ଦୁର୍ଗା ସହସ୍ର ନାମରେ ମା'ଙ୍କୁ ଅଗ୍ନିରୂପା ଭାବେ ବର୍ଣ୍ଣନା କରାଯାଇଛି । ଅଗ୍ନିରୂପିଣୀ ହେଉଛନ୍ତି 'ହିଙ୍ଗୁଳା' । ହିଙ୍ଗୁଳାର ଅର୍ଥ 'ଅଗ୍ନିରୂପିଣୀ', ଶତ୍ରୁ ଦଗ୍ଧକାରିଣୀ । ଆମ ଓଡ଼ିଶାରେ ତାଳଚେରର ଗୋପାଳପ୍ରସାଦ ଓ ଯାଜପୁରର ଶଙ୍ଖଚିଲ ଗାଁରେ ମା' ହିଙ୍ଗୁଳାଙ୍କ ଅବସ୍ଥାନ ।

ମାର୍କଣ୍ଡେୟ ପୁରାଣ ଅନୁଯାୟୀ ରାକ୍ଷସ ରକ୍ତବୀର୍ଯ୍ୟର ବଧ ସମୟରେ ଯୋଗିନୀମାନଙ୍କର ଉତ୍ପତ୍ତି ହୋଇଥିଲା । ରକ୍ତବୀର୍ଯ୍ୟର ପ୍ରତି ରକ୍ତ ବିନ୍ଦୁରୁ ଗୋଟିଏ ଗୋଟିଏ ଅସୁର ଜନ୍ମ ନେବାରୁ ଦୁର୍ଗା ବଧ କରିବାକୁ ଅସମର୍ଥ ହେଲେ । ତେଣୁ ଦେବତାଗଣ ସ୍ୱସ୍ୱ ଶକ୍ତିକୁ ଯୋଗିନୀ ବା ମାତୃକା ରୂପରେ ସୃଷ୍ଟିପୂର୍ବକ ଦୁର୍ଗାଙ୍କୁ ସାହାଯ୍ୟ କରିବାକୁ ପଠାଇଲେ । ଏହି ଯୋଗିନୀମାନେ ରକ୍ତବୀର୍ଯ୍ୟର ରକ୍ତ ଭୂପତିତ ହେବା ପୂର୍ବରୁ ପାନ କଲେ ଓ ରାକ୍ଷସର ମୃତ୍ୟୁ ଘଟିଲା ।

ସ୍ତ୍ରୀ ରୂପେ ଯୋଗିନୀକୁ ଛଅ ଭାଗରେ ବିଭକ୍ତ କରାଯାଇଛି । ଯଥା: କାମେଶ୍ୱରୀ, ରତି, ସୁନ୍ଦରୀ, ପଦ୍ମିନୀ, ନଟିନୀ ଓ ମୈଥୁନପ୍ରିୟା । ଓଡ଼ିଶାର ସିଦ୍ଧ ସାଧକମାନଙ୍କର ଧାରଣା ଥିଲା ଯେ ଯୋଗିନୀଗଣ ନଭମାର୍ଗରେ ମଣ୍ଡଳାକାରରେ ଭ୍ରମଣ କରନ୍ତି । ଏହି ପୃଷ୍ଠଭୂମିରୁ ଓଡ଼ିଶାରେ ପ୍ରଥମେ ମଣ୍ଡଳାକାର ଯୋଗିନୀ ମନ୍ଦିର ନିର୍ମାଣ କରାଗଲା । ଖୋର୍ଦ୍ଧା ଜିଲ୍ଲା ବାଳକାଟିଠାରୁ ଅଢେଇ କିମି ଦୂରରେ ହୀରାପୁରଠାରେ ୬୪ ଯୋଗିନୀ ମନ୍ଦିର ଏହି ଶୈଳୀରେ ନିର୍ମିତ । ୬୪ କଳା, ୬୪ କାମବନ୍ଧ, ୬୪ ବିଦ୍ୟା ଆଜିର ପ୍ରତୀକଭାବେ ୬୪ ଯୋଗିନୀଙ୍କୁ ଗ୍ରହଣ କରାଯାଏ । ଯୋଗିନୀ ମନ୍ଦିରଗୁଡ଼ିକୁ ତନ୍ତ୍ରପୀଠ ଭାବରେ ଗ୍ରହଣ କରାଯାଉଥିଲା ।

ଏଇ ସମସ୍ତ କଥାବସ୍ତୁ ଆମକୁ ଭକ୍ତିମାର୍ଗରେ ପରିଚାଳିତ କରି ଦେବୀ ପରମ୍ପରା ପ୍ରତି ଆକୃଷ୍ଟ କରିବା ସହ ଦେବୀ ହିଁ ସ୍ୱୟଂ ଶକ୍ତି ଏହା ସ୍ପଷ୍ଟ କରିଦେଇଛି । ଦେବୀପୀଠ ଓ ଯୋଗିନୀ ପୀଠମାନ ଭକ୍ତ ଓ ପର୍ଯ୍ୟଟକମାନଙ୍କୁ ଏଯାବତ୍ ଆକର୍ଷିତ କରୁଅଛି । ଦେବୀ ଓ ଯୋଗିନୀ ପୀଠଗୁଡ଼ିକ ମାନ୍ୟତା ପ୍ରାପ୍ତ ହେବା ସଙ୍ଗେ ସଙ୍ଗେ ଜନମାନସରେ ଆଧ୍ୟାତ୍ମିକ ସ୍ପନ୍ଦନ ସୃଷ୍ଟି କରିପାରୁଛନ୍ତି । ଦେବୀମାନଙ୍କର ବୈଭବ ଭକ୍ତ ଓ ସନ୍ତାନମାନଙ୍କୁ ଆହ୍ଲାଦିତ କରିବା ସହ ଦେବୀ ଓ ଦେବୀପୀଠଗୁଡ଼ିକୁ ଲୋକପ୍ରିୟ କରିପାରିଛି ।

ଆସିଷ୍ଟାଣ୍ଟ ପୋଷ୍ଟମାଷ୍ଟର
ଜି.ପି.ଓ, କଟକ–୭୫୩୦୦୧

❖ ❖ ❖

# ଅକ୍ଟୋବର ମାସର ବିଶେଷତା

**କୃଷ୍ଣଚନ୍ଦ୍ର ବିଶ୍ୱାଳ**

ଅକ୍ଟୋବର ମାସ ଭାରତବର୍ଷ ଇତିହାସରେ ଏକ ଗୌରବମୟ ମାସ । ଏହି ମାସରେ ବହୁ ମହାପୁରୁଷମାନଙ୍କର ଆବିର୍ଭାବ । ଅକ୍ଟୋବର ଦୁଇ ତାରିଖ, ଜାତିର ପିତା ଯୁଗପୁରୁଷ ମହାମାନବ ମହାତ୍ମା ଗାନ୍ଧୀଙ୍କର ପବିତ୍ର ଜନ୍ମତିଥି । ରକ୍ତ ମାଂସ ଦେହଧାରୀ ମଣିଷଟିଏ ହେଲେ ମଧ୍ୟ ସେ ଯେ ସ୍ୱୟଂ ଭଗବାନଙ୍କର ଅବତାର ଏହା ଅସ୍ୱୀକାର କରି ହୁଏନା । ସେ ସତ୍ୟ ଓ ଅହିଂସାକୁ ପାଶୁପତ ଅସ୍ତ୍ରରୂପେ ଗ୍ରହଣ କରି କେବଳ ଭାରତବର୍ଷର ସ୍ୱାଧୀନତା ଆଣି ନଥିଲେ, ବିଶ୍ୱର ଅନେକ ଦେଶକୁ ପରାଧୀନତାର ଶୃଙ୍ଖଳ ବେଡିରୁ ମୁକ୍ତ କରିବାରେ ପ୍ରେରଣାର ଉତ୍ସ ହୋଇଥିଲେ । ବାସ୍ତବରେ ସେ ଥିଲେ ମାନବ ଜାତିର ମୁକ୍ତିଦାତା । ବୋଧହୁଏ, ଗୌତମ ବୁଦ୍ଧଙ୍କ ପରେ ଭାରତର ସେ ଏକମାତ୍ର ବ୍ୟକ୍ତି ଯେ କି ସମଗ୍ର ବିଶ୍ୱର ହୃଦୟକୁ ଜୟ କରି ପାରିଥିଲେ ଏବଂ ଯୀଶୁଖ୍ରୀଷ୍ଟଙ୍କ ପରେ ସେ ଦ୍ୱିତୀୟ ବ୍ୟକ୍ତି ଯେକି ପାଶ୍ଚାତ୍ୟ ଜଗତକୁ ଅଭିଭୂତ କରିଥିଲେ । ଯେତେବେଳେ ମହାତ୍ମା ଗାନ୍ଧୀଙ୍କ ଗୁଣାବଳୀ କୀର୍ତ୍ତନ କରାଯାଏ, ସେତେବେଳେ ବିଶ୍ୱର ମାତ୍ର ଦୁଇ ତିନିଜଣ ବ୍ୟକ୍ତିଙ୍କ ସହିତ ତାଙ୍କୁ ତୁଳନା କରାଯାଏ । ତେଣୁ କେବଳ ଭାରତବର୍ଷ ନୁହେଁ, ସମଗ୍ର ବିଶ୍ୱ ଆଜି ସେହି ମହାନ୍ ଆତ୍ମା ପାଖରେ ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ପୁନଶ୍ଚ ଏହି ଅକ୍ଟୋବର ଦୁଇ ତାରିଖ ଆଉ ଏକ ବିଶେଷ ଦିବସ । କାରଣ ଗାନ୍ଧିଜୀଙ୍କ ଜନ୍ମ ତିଥିରେ ସାଧନା ଓ ସଂକଳ୍ପର ଶ୍ରେଷ୍ଠ ଉପାସକ ଭାରତୀୟ ସଂସ୍କୃତିର ମୂର୍ତ୍ତିମନ୍ତ ପୁରୁଷ ଓ ଗାନ୍ଧିବାଦର ସଚ୍ଚା ଅନୁସରଣକାରୀ ଲାଲବାହାଦୁର ଶାସ୍ତ୍ରୀଙ୍କର ଜନ୍ମ । ନିଜର ସାଧନା ଓ କର୍ମନିଷ୍ଠା ବଳରେ ଭାରତବର୍ଷର ଆଦର୍ଶ ପ୍ରଧାନମନ୍ତ୍ରୀର ଆସନ ଲାଭ କରିପାରିଥିଲେ । ଏବେବି ତାଙ୍କ ପ୍ରଚାରିତ ସ୍ଲୋଗାନ୍ 'ଜୟ ଯବାନ୍', 'ଜୟ କିଷାନ' ଭାରତ ବର୍ଷରେ ଶ୍ରଦ୍ଧାର ସହିତ କୋଟି କଣ୍ଠରେ ଉଚ୍ଚାରିତ ହେଉଅଛି ।

ଅକ୍ଟୋବର ନଅ ତାରିଖ । ଓଡ଼ିଶାର ଅନ୍ୟତମ ମହାମାନବ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ଜନ୍ମ ଦିବସ । ଏହି ମାନବବାଦୀ ପୁଣ୍ୟାତ୍ମା ଗୋପବନ୍ଧୁ ହେଉଛନ୍ତି ଗାନ୍ଧୀଯୁଗର ଅନ୍ୟତମ ସର୍ବଶ୍ରେଷ୍ଠ କର୍ମଯୋଗୀ, ସତ୍ୟନିଷ୍ଠ ଓ ତ୍ୟାଗର ମୂର୍ତ୍ତିମନ୍ତ ପ୍ରତୀକ । ଅକ୍ଟୋବର ଏଗାର ତାରିଖ, ସମଗ୍ର ଜାତିର ଜନନାୟକ, ଲୋକ ନାୟକ ଜୟ ପ୍ରକାଶଜୀଙ୍କ ଜନ୍ମ ଦିବସ । ଗାନ୍ଧିଜୀଙ୍କ ପରେ କ୍ଷମତା ରାଜନୀତିରୁ ବହୁ ଦୂରରେ ରହି ଭାରତୀୟ ଜନମାନସରେ ଯଦି କେହି ଆଲୋଡନ ସୃଷ୍ଟି କରିଥାନ୍ତି, ତେବେ ସେ ହେଉଛନ୍ତି ଲୋକନାୟକ ଜୟପ୍ରକାଶ । ସେହିପରି ଅକ୍ଟୋବର ମାସ ଏକତିରିଶ ତାରିଖରେ ଭାରତଭୂମିରେ ଜନ୍ମ ନେଇଛନ୍ତି ଲୌହମାନବ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ । ତାଙ୍କର ଅମ୍ଳାନ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରି ସମସ୍ତ ଭାରତବାସୀ ନିଜକୁ ଧନ୍ୟ ମଣୁଛୁ ।

ଏହିଭଳି ଯୁଗପୁରୁଷମାନଙ୍କୁ ଭାରତବର୍ଷ ଜନ୍ମଦେଇ ବିଶ୍ୱକୁ ମହାନ୍ କରିଛି । ହଜାର ହଜାର ବର୍ଷ ପରେ ଏହିଭଳି ଜଣେ ଜଣେ କ୍ରାନ୍ତିକାରୀ ଧରାପୃଷ୍ଠରେ ଅବତରଣ କରିଥାନ୍ତି । ଆମ୍ଭେ ଭାରତୀୟ ଭାବରେ ନିଶ୍ଚୟ ଧନ୍ୟ ଓ ଗର୍ବିତ ଯେ ଏମାନଙ୍କୁ ଆମମାନଙ୍କ ଭିତରେ ଆମେ ପାଇଥିଲୁ । ଏହି କ୍ରାନ୍ତିକାରୀ ଯୁଗପୁରୁଷମାନଙ୍କ ପୁଣ୍ୟ ଜନ୍ମତିଥିରୁ ସ୍ମରଣ କରି ଭାରତବାସୀ ସେମାନଙ୍କ ସ୍ମୃତିକୁ ବିନମ୍ରତାର ସହିତ ଭକ୍ତିପୂର୍ଣ୍ଣ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛନ୍ତି ।

ଶକ୍ତିର ଆରାଧ୍ୟଦେବୀ ମା' ଦୁର୍ଗାଙ୍କର ଆରାଧନା ଏହି ମାସରେ ପାଳନ କରାଯାଏ । ଆସୁରିକ ଶକ୍ତି ଉପରେ ଦୈବିଶକ୍ତିର

ବିଜୟ ହେଉଛି ଏହାର ଆଧ୍ୟାତ୍ମିକ ତତ୍ତ୍ୱ । ଅଧର୍ମର ବିନାଶ ଓ ଧର୍ମର ସଂସ୍ଥାପନ ପାଇଁ ଏବଂ ଅସତ୍ୟକୁ ଲୋପକରି ସତ୍ୟର ଜୟଗାନ କରିବା ପାଇଁ ଯୁଗେ ଯୁଗେ ମା’ ଦୁର୍ଗାଙ୍କର ଆବିର୍ଭାବ ହୋଇଥାଏ । ମା’ଙ୍କର ଆଶୀର୍ବାଦ ଆମ ସମସ୍ତଙ୍କର କାମ୍ୟ । ଆମ ଭିତରୁ ସବୁ କ୍ଷୁଦ୍ରତା ଓ ସଂକୀର୍ଣ୍ଣତାକୁ ଦୂର କରି ଆମକୁ ଭାରତର ଏକ ସନ୍ତାନ ଭାବରେ ଉଦ୍‌ବୁଦ୍ଧ କରାନ୍ତୁ ମହାଦେବୀଙ୍କ ନିକଟରେ ଆମର ପ୍ରାର୍ଥନା । ଆଜିର ସମାଜରେ ସାମ୍ପ୍ରଦାୟିକ ଭେଦଭାବ ସମୂଳେ ଧ୍ୱଂସ ହେଉ ଓ ଆମ ମନ ନିର୍ମଳ ଉଦାର ତଥା ପ୍ରଶସ୍ତ ହେଉ, ଏହାହିଁ ମା’ଙ୍କ ନିକଟରେ ବିନମ୍ର ନିବେଦନ ।

‘ବିମଳା ନିବାସ’
ଗୋଶାଳା ରୋଡ୍, ଦରଖାପାଟଣା
ପୋ:ଅ: ନୟାବଜାର, କଟକ–୪

❖ ❖ ❖

# ଜନ୍ମ ଜନ୍ମାନ୍ତର ଅଳି

ଗିରିଜା ଶଙ୍କର ମିଶ୍ର

ମାଆ ମାଆ ବୋଲି ଯେବେ ଡାକି ଦେଲି
ହୃଦୟ ଦୁଆର ଖୋଲି
କୁଟିଳ କପଟ ଭୁଲି ।

ଅଧୀରେ ବିଧିରେ ଆସ ଗୋ ମା’ ଚାଲି
ସନ୍ତାନ ବତ୍ସଳା ବୋଲି
ଚଉଦ ବ୍ରହ୍ମାଣ୍ଡ ଭୁଲି ।

ଅମ୍ବର, ସାଗର, କେଦାର, ବିବର
ଗଭୀର ଅନ୍ତର ଗଳି
ଆକାଶ ନୀଳ ଉତ୍ତରୀ,

ପାରିବେନି କେହି ତୁମକୁ ଲୁଚାଇ
ଆକୁଳେ ଡାକଇ ବୋଲି
ଧୂସରିତ ପାପ ଧୂଳି ।

ପଣତେ ତୁମରି ଏ ଧରଣୀ ଧୂଳି
ଛାଡିଦେଇ ନିଅ ତୋଳି
ତୁମରି ଆତ୍ମାର କଳି ।

ତୁମରି କୋଳରେ ବିକଶିବି ଧୀରେ
ସୁରଭି ଯିବ ଉଚ୍ଛୁଳି
ଜନମ ଯାତନା ଭୁଲି ।

ମାଆ ଗୋ କଲ୍ୟାଣୀ ଅଭୟ ଦାୟିନୀ
କର ନାହିଁ ଆଉ ଡେରି
କୋଳକୁ ନିଅ ମା’ ତୋଳି ।

ତୁମ ପଥ ଚାହିଁ ବସିଅଛି ମୁହିଁ
ନୟନେ ଲୋତକ ଭରି
ସଫଳ କରିବ ବୋଲି
ଜନ୍ମ ଜନ୍ମାନ୍ତର ଅଳି ।

ଅଧୀକ୍ଷକ, ଅର୍ଥ ବିଭାଗ
ରାଜ୍ୟ ସଚିବାଳୟ, ଭୁବନେଶ୍ୱର

❖ ❖ ❖

# ଉତ୍କଳର ଆଦି ପରମ୍ପରାରେ ଶକ୍ତି ଉପାସନା

ଯୋଗେନ୍ଦ୍ର କୁମାର ନାୟକ

ମାଟି ଛୁଇଁବାର ପ୍ରଥମ ଶବ୍ଦ ମା' । ମାତୃଗର୍ଭରୁ ମାଟି ମାଆ ଭିତରେ ଥିବା ଦୂରତା କେବଳ କୁଆଁ କୁଆଁ ଶବ୍ଦର ଓଁକାର ଜନିତ ରାହା, ଯାହା ମାଆ ଶବ୍ଦର ପ୍ରତିଧ୍ୱନି । ସମଗ୍ର ମାନବ ଚିତ୍ତରେ ଚେତନ ଓ ଅବଚେତନ ସ୍ଥିତିରେ ମାତୃଶକ୍ତି ଏକ ଜମାଟ ବାନ୍ଧିଥିବା ପ୍ରବୃତ୍ତି । ଆପତ୍ କାଳରେ ଅସହାୟ ମଣିଷ ମନରେ ଗଜୁରି ଆସେ ମାତୃଶକ୍ତିର ଆବାହନ । ଆବହମାନ କାଳରୁ ସମଗ୍ର ଆର୍ଯ୍ୟାବର୍ତ୍ତ ଥିଲା ଶାକ୍ତ ଉପାସନାର ମୂଳପୀଠ । ଶକ୍ତି ପୂଜା ହିନ୍ଦୁମାନଙ୍କର ପ୍ରାଚୀନ ଉପାସନା, ଯାହା ସମୟାନୁକ୍ରମେ ହିନ୍ଦୁ ସମାଜରେ ଏକ ମହାନ ପରମ୍ପରା ରୂପେ ଦେଦିପ୍ୟମାନ । ସଭ୍ୟତାର ଇତିହାସ ପୃଷ୍ଠା ଉପରେ ଦୃଷ୍ଟି ନିକ୍ଷେପ କଲେ ସର୍ବପ୍ରଥମେ ନଜରବନ୍ଦୀ ହୁଏ ସିନ୍ଧୁ ସଭ୍ୟତାର ମହେଞ୍ଜୋଦାରୋ ଓ ହରପ୍ପା । ସର୍ବେକ୍ଷଣ ଓ ଐତିହାସିକ ଗବେଷଣାରୁ ଜଣା ପଡିଥିଲା ଯେ ପଥର ଓ ଧାତୁ ନିର୍ମିତ ମାନବାକୃତି ପିତୁଳା ଦେବୀମୂର୍ତ୍ତି ଭାବରେ ପୂଜା ପାଉଥିଲେ । ବେଦ ଅଧ୍ୟୟନରୁ ଜଣାଯାଇଛି ଯେ ବୈଦିକ ଯୁଗରୁ ମାନବ ଜାତି ମାତୃପୂଜା ମାଧ୍ୟମରେ ମହାଶକ୍ତିର ଆରାଧନା ଓ ଉପାସନା କରିଆସିଛି ।

କାଳକ୍ରମେ ଦେବୀ ଆରାଧନାରେ ବିଶ୍ୱାସ ଓ ତତ୍‌ଜନିତ ମହନୀୟ ସଦ୍‌ଭାବନାର ଓ ବିଧିବଦ୍ଧ ସଂସ୍କାରର ମିଳିତ ସମନ୍ୱୟ ସାର୍ବଜନୀନ ଦୁର୍ଗା ପୂଜାରେ ରୂପାନ୍ତରିତ ହୋଇ ଆସିଥିଲା । ସମଗ୍ର ଆର୍ଯ୍ୟଭୂମି ଭାରତବର୍ଷରେ ଆଧ୍ୟାତ୍ମିକ ଚେତନାର ପରିପୁଷ୍ଟତା ଭିତରେ ଶାକ୍ତ ଅନୁଚିନ୍ତନ ଓ ଶାକ୍ତଧର୍ମ ମୃଣ୍ମୟୀ ଉପାସନାର କ୍ରମାବର୍ତ୍ତନକୁ ଆମନ୍ତ୍ରିତ କରିଥିଲା । ଏହି ମହନୀୟ ଦେବୀ ଉପାସନା ତଥା ଦୁର୍ଗା ପୂଜାର ପ୍ରାଚୀନ ପରମ୍ପରା ଉତ୍କଳୀୟ ଉନ୍ମେଷରେ ଅଙ୍କୁରିତ ହୋଇ କାଷ୍ଠ, ପ୍ରସ୍ତର, ଧାତୁ ଓ ମୃତ୍ତିକା ନିର୍ମିତ ଦେବୀ ବିଗ୍ରହର ଷୋଡଶ ଉପଚାରର ବିଧିବଦ୍ଧ ଉପାସନାକୁ ଆପଣେଇ ନେଇଥିଲା । ଐତିହାସିକମାନଙ୍କ ମତରେ ଓଡ଼ିଶାରେ ମୃଣ୍ମୟୀ ଉପାସନା ଖ୍ରୀଷ୍ଟପୂର୍ବ ଶତାବ୍ଦୀରେ ରୂପ ନେଇଥିବାର ସୂଚନା ମିଳେ । ଇତିହାସ ତଥା ପୁରାଣ ଶାସ୍ତ୍ରର ଅଧ୍ୟୟନରୁ ଜଣାପଡେ ଯେ ଖ୍ରୀଷ୍ଟପୂର୍ବ ଉତ୍କଳର ପ୍ରସିଦ୍ଧ ନରପତି ମହାମେଘବାହନ ଐର ଖାରବେଳଙ୍କ ପୂର୍ବଜ ମହାରାଜା ସୁରଥ ମେଧସ୍ ଋଷିଙ୍କର ପରାମର୍ଶକ୍ରମେ ସର୍ବପ୍ରଥମେ ଶରତ ଋତୁରେ ଏକ ନଦୀ ତଟରେ ଦେବୀଦୁର୍ଗାଙ୍କର ମୃଣ୍ମୟୀ ପ୍ରତିମା ସ୍ଥାପନ ପୂର୍ବକ ପୂଜାର୍ଚ୍ଚନା କରି ଦେବୀକୃପା ଲାଭ କରିଥିଲେ । ଏହା ପରବର୍ତ୍ତୀ କାଳରେ ଉତ୍କଳୀୟମାନଙ୍କର ସାମାଜିକ ପରମ୍ପରାରେ ଏକ ଅବିଚ୍ଛେଦ୍ୟ ଆସନ ଅଳଙ୍କୃତ କରିବା ସଙ୍ଗେ ସଙ୍ଗେ ନିଜସ୍ୱ ପରମ୍ପରାରେ ପରିଣତ ହୋଇଥିଲା । ତତ୍ ସନ୍ଦିକ୍ଷଣରେ ଉତ୍ସବ ମୁଖର ଶାରଦୀୟ ଦୁର୍ଗା ପୂଜାର ସାର୍ବଭୌମତ୍ୱ ପ୍ରତିପାଦିତ ହେବା ସଙ୍ଗେ ସଙ୍ଗେ ଏହାର ସୁପ୍ରାଚୀନତା ଉତ୍କଳୀୟ ଇତିହାସକୁ ମହିମାନ୍ୱିତ ଓ ଗୌରବ ବିମଣ୍ଡିତ କରିଅଛି । ନିର୍ଦ୍ଦିଷ୍ଟ ବିଧିବିଧାନ ସମ୍ବଳିତ ପୂଜାପାଠ ଓ ମନ୍ତ୍ରଧ୍ୱନିର ପ୍ରଣୟନ ସମ୍ଭବତଃ ଦୁଇହଜାର ବର୍ଷର ପ୍ରାଚୀନ । ଉଚ୍ଚାରିତ ଚଣ୍ଡୀପାଠ ମାଧ୍ୟମରେ ଦେବୀ ଦୁର୍ଗାଙ୍କର ଉପାସନା ଯେତିକି ଗାମ୍ଭୀର୍ଯ୍ୟପୂର୍ଣ୍ଣ ସେତିକି ତତ୍ତ୍ୱ ସମ୍ବଳିତ ତଥା ବୈଦିକ ରୀତିରେ ଆଭୂଷିତ ଯାହା ପ୍ରପଠିତ ମାର୍କଣ୍ଡ ପୁରାଣରୁ ସ୍ପଷ୍ଟ ପ୍ରମାଣିତ । ସହସ୍ର ବର୍ଷ ଧରି ଏହି ଶାକ୍ତ ଉପାସନାର ପ୍ରଚଳନ ସାର୍ବଜନୀନ ହୋଇ ଉଠିବା ସହିତ ତନ୍ତ୍ରମନ୍ତ୍ରଜନିତ ପୂଜାର୍ଚ୍ଚନା ପ୍ରଚଳନର ପ୍ରାବଲ୍ୟ ଓଡ଼ିଶାରେ ତନ୍ତ୍ରପୀଠମାନଙ୍କର ପରିବ୍ୟାପ୍ତିକୁ ଚରମତା ଆଡକୁ ଉତ୍କର୍ଷିତ କରି ଖ୍ରୀଷ୍ଟିୟ ସପ୍ତମ ଓ ଅଷ୍ଟମ ଶତାବ୍ଦୀ ବେଳକୁ ସମଗ୍ର ଉତ୍କଳ ତନ୍ତ୍ର ଉପାସନାର ସୁବର୍ଣ୍ଣ ଯୁଗ ପ୍ରାପ୍ତି ହୋଇଥିଲା । ଅତିବ ନିଷ୍ଠା ଓ ଆଡମ୍ବର ସହିତ ଷୋଡଶ ଉପଚାରରେ ମହିଷମର୍ଦ୍ଦିନୀ ଦେବୀ ଦୁର୍ଗାଙ୍କୁ ଯେଉଁ ନିଆରା ଲୋକପର୍ବରେ ଷୋଳପୂଜା କରାଗଲା ତତ୍କାଳର ଉତ୍କଳୀୟମାନେ

ଏହାକୁ ପାର୍ବଣ ଆଖ୍ୟା ଦେଲେ । ପ୍ରାଚୀନ ଉତ୍କଳର ଦେବୀପୀଠମାନଙ୍କରେ ଦଶଭୁଜା ଦୁର୍ଗାଙ୍କର ସ୍ଥାୟୀବିଗ୍ରହ ପ୍ରତିଷ୍ଠା ପୂର୍ବକ ଏହାର ନିରନ୍ତର ଉପାସନା ଉତ୍କଳୀୟମାନଙ୍କର ସମ୍ପୂର୍ଣ୍ଣ ମାତ୍ରାରେ ନିଜସ୍ୱ ସଂସ୍କୃତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ପ୍ରାଚୀନ ଓଡ଼ିଶାର ଧର୍ମଭାବନା, ଈଶ୍ୱର ଈଶ୍ୱରୀ ବିଶ୍ୱାସ, ନିଷ୍ଠାପରତା ଓ ଆଧ୍ୟାତ୍ମିକ ଚିନ୍ତାଧାରାକୁ କେବେ ବି ଅଣଦେଖା କରାଯାଇନପାରେ । ହଜାର ହଜାର ବର୍ଷ ପୂର୍ବେ ଓଡ଼ିଶାରେ ରାଜା ରାଜୋଡାମାନଙ୍କ ରାଜତ୍ୱ କାଳରେ ଶାକ୍ତ ଉପାସନାର ପ୍ରାଚୁର୍ଯ୍ୟ ଓ ପ୍ରାବଲ୍ୟ ଦୃଷ୍ଟିଗୋଚର ହୋଇଥିଲା ଗଙ୍ଗବଂଶ, କେଶରୀ ବଂଶ, ସୂର୍ଯ୍ୟବଂଶ ଓ ଭୋଇ ବଂଶର ରାଜତ୍ୱ କାଳରେ, ଗୌରୀ, କାତ୍ୟାୟନୀ, ବରାହୀ, ମୋହିନୀ, ଭୁବନେଶ୍ୱରୀ, ରାମଚଣ୍ଡୀ, ଦ୍ୱାରୀବାସିନୀ ଆଦି ନାମରେ ବିଗ୍ରହାଦି ପୂଜିତା ହେବାର ଆଦି ପରମ୍ପରା ଓଡ଼ିଶାର ଆଧ୍ୟାତ୍ମିକ ଇତିହାସରୁ ପ୍ରମାଣ ମିଳେ ଏବଂ ତାହା ମଧ୍ୟ ସାମ୍ପ୍ରତିକ ଓଡ଼ିଶାର ପବିତ୍ର ଶାକ୍ତପୀଠମାନଙ୍କରେ ପ୍ରଚଳିତ ।

ରାଜତନ୍ତ୍ର ଦ୍ୱାରା ପରିଚାଳିତ ସମଗ୍ର ଓଡ଼ିଶା ବାହ୍ୟଶକ୍ତି ଓ ଶତ୍ରୁମାନଙ୍କ ଲୋଲୁପ ଦୃଷ୍ଟିରୁ କେବେ ବାଦ୍ ଯାଉନଥିଲା । ତଥାପି ବୀର ପ୍ରସବିନୀ ଓଡ଼ିଶା ସଦାସର୍ବଦା ଆତ୍ମରକ୍ଷା ପାଇଁ ବୀରପୁତ୍ରମାନଙ୍କୁ ସମର ପ୍ରାଙ୍ଗଣରେ ଉତ୍ସର୍ଗ କରିବାକୁ ପଛଘୁଞ୍ଚା ଦେଉନଥିଲା । ଏହି ଗୁରୁଦାୟିତ୍ୱ ରାଜବଂଶମାନଙ୍କ ହାତରେ ନ୍ୟସ୍ତ ଥିବାବେଳେ ଆତ୍ମଶକ୍ତିର ଆବଶ୍ୟକତା ଯୁଦ୍ଧ ଜୟ କରିବାରେ ଅଧିକ ଭୂମିକା ଗ୍ରହଣ କରିଥିଲା । ଆପଣା ଭିତରେ ଆତ୍ମଶକ୍ତିର ସଂଚାର ନିମନ୍ତେ ଶାକ୍ତ ଉପାସନାକୁ ରାଜା ରାଜୋଡାମାନେ ମାନସିକ ସ୍ତରରେ ଆପଣେଇ ନେଇଥିଲେ । ଅଖଣ୍ଡ ଆତ୍ମବିଶ୍ୱାସ ଓ ଧର୍ମ ଚେତନାରେ ଉଦ୍‌ବୋଧ ହୋଇଥିବା ନରପତିମାନଙ୍କ ଦ୍ୱାରା ରାଜବଂଶର ଅଧିଷ୍ଠାତ୍ରୀ ଦେବୀ ଦୁର୍ଗାଙ୍କର ପୂଜାର୍ଚ୍ଚନା ଓ ଆବାହନ ଦ୍ୱାରା ସବୁ ଦେବୀପୀଠ ଉତ୍ସବ ମୁଖର ହୋଇଉଠୁଥିଲା । ଏହି ଦୃଷ୍ଟିରୁ ଶାରଦୀୟ ଦୁର୍ଗାପୂଜା ସାରା ଓଡ଼ିଶାରେ ଖୁବ୍ ଲୋକପ୍ରିୟତା ହାସଲ କରିବା ସଙ୍ଗେ ସଙ୍ଗେ ରାଜବାଟୀ, ତନ୍ତ୍ରପୀଠ ଆଦିରେ ସୀମିତ ନରହି ପୁରପଲ୍ଲୀ ଆଡକୁ ମୁହେଁଇଲା ।

କିନ୍ତୁ ଉପରୋକ୍ତ ତାନ୍ତ୍ରିକ ତତ୍ତ୍ୱ ମତେ ତନ୍ତ୍ରପୀଠମାନଙ୍କରେ ପ୍ରସ୍ତର ନିର୍ମିତ ଦୁର୍ଗାବିଗ୍ରହଙ୍କର ପୂଜାର୍ଚ୍ଚନା ହେବା ସଙ୍ଗେ ସଙ୍ଗେ ଖ୍ରୀଷ୍ଟିୟ ପଞ୍ଚମ ତଥା ଷଷ୍ଠ ଶତାବ୍ଦୀରୁ ଉତ୍କଳର ପ୍ରତି ରାଜବଂଶରେ ଅଧିଷ୍ଠାତ୍ରୀ ଦେବୀ ଦୁର୍ଗାଙ୍କୁ ଅତ୍ୟନ୍ତ ନିଷ୍ଠାର ସହିତ ପାଳନ କରାଯାଉଥିଲା । ଯୁଦ୍ଧାଭିଯାନ ପୂର୍ବରୁ ଦୁର୍ଗା ଓ ଗଡଚଣ୍ଡୀ ଆଦିଙ୍କଠାରେ ଦେବୀଙ୍କୁ ତୁଷ୍ଟ କରିବା ଲାଗି ସେକାଳରେ ପଶୁବଳୀର ପ୍ରଥା ପ୍ରଚଳନ ଥିଲା । ଯୁଦ୍ଧରେ ବିଜୟୀ ହେବା ଉଦ୍ଦେଶ୍ୟରେ ଦେବୀଙ୍କ ସମୀପରେ ଅପରାଜିତା ସ୍ତୋତ୍ର, ଦୁର୍ଗା ସହସ୍ର ନାମ ଓ ଦୁର୍ଗା ସପ୍ତସତୀ ପାଠ ପୂର୍ବକ ପଶୁବଳୀ ଦେଇ ଦେବୀଙ୍କୁ ତୁଷ୍ଟ କରିବାର ଅନ୍ଧବିଶ୍ୱାସ ମଧ୍ୟ ରହିଥିଲା । ଏହା ପରବର୍ତ୍ତୀ କାଳରେ ଦୁର୍ଗା ପୂଜାରେ ପଶୁବଳି ପରମ୍ପରାରେ ପରିଣତ ହେଲା । ଏହି ବଳିର ପ୍ରସାଦକୁ ଜନ୍ତାଳ ହୋଇ ରାଜ ନଅରରେ ରାଜା ତଥା ପ୍ରଜାବର୍ଗ ମହା ସମାରୋହରେ ଉପଭୋଗ କରୁଥିଲେ । ପଶୁବଳି ପରି ହିଂସା ଏବଂ ନୃଶଂସାତ୍ମକ ପ୍ରଥା ଏବେ ମଧ୍ୟ ଦେବୀପୀଠ ମାନଙ୍କରେ ପରିଲକ୍ଷିତ ହୁଏ । ମେଣ୍ଢା, ବୋଦା, ମହିଷି ଆଦି ପଶୁ ଏବଂ କୁକୁଡା ପରି ଗୃହପାଳିତ ପକ୍ଷୀମାନଙ୍କୁ ବଳି ଚଢାଯାଇ ଦେବୀତୁଷ୍ଟି ନାମରେ ହିଂସା ଓ ନୃଶଂସତା ଆଚରଣ ପୂର୍ବକ ଶାରଦୀୟ ଦୁର୍ଗା ପୂଜାକୁ ଉପଭୋଗ କରାଯାଉଅଛି, ଯାହା ପାର୍ବଣ ପରମ୍ପରାର ବାସ୍ତବ ଲକ୍ଷ୍ୟଠାରୁ ଦୂରେଇ ଯାଇଛି ଏବଂ ବିଶ୍ୱଶାନ୍ତି ପ୍ରତିଷ୍ଠା ବଦଳରେ ଅଶାନ୍ତିର ବାତାବରଣ ସୃଷ୍ଟି ହୋଇଛି । କିନ୍ତୁ ପୀଠପୂଜାରୁ ଯେତେବେଳେ ଦୁର୍ଗାପୂଜା ପୁରପଲ୍ଲୀ ତଥା ସହର ଆଡକୁ ମୁହେଁଇଲା, କଳସପୂଜା ମାଧ୍ୟମରେ ପୂଜାର ପବିତ୍ରତା ଓ ଲୋକପ୍ରିୟତା କ୍ରମଶଃ ବଢିଚାଲିଲା, ଯାହା ଆଧୁନିକ ଶିକ୍ଷିତ ଓଡ଼ିଆ ସମାଜରେ ବିଜ୍ଞଜନମାନଙ୍କ ଦ୍ୱାରା ଖୁବ୍ ଗ୍ରହଣୀୟ ହୋଇପାରିଛି । ଏହାଦ୍ୱାରା ଓଡ଼ିଆ ହିନ୍ଦୁମାନଙ୍କର ଘରେ କଳସପୂଜା ଦୁର୍ଗା ପୂଜାର ପ୍ରତୀକ ରୂପେ ଏକ ପରିବ୍ୟାପ୍ତ ପରମ୍ପରାରେ ପରିଣତ ହେବା ସଙ୍ଗେ ସଙ୍ଗେ ପରିପୁଷ୍ଟ ପର୍ବ 'ପାର୍ବଣ' ଲୋକାଭିମୁଖୀ ହୋଇ ଆଧୁନିକ ଓଡ଼ିଶାରେ ଉପଭୋଗ୍ୟ ତଥା ଆଡମ୍ବରପୂର୍ଣ୍ଣ ହୋଇପାରିଛି । କିଛି ବିଧି ବିଧାନ, ନିଷ୍ଠା, ବିଶ୍ୱାସ, ଧର୍ମଭାବନା ଓ ଈଶ୍ୱରୀୟ ଚେତନା ଆଦିର ଏକତ୍ରିକରଣ ଆଜିର ଓଡ଼ିଆ ସମାଜରେ ଏକ ମହାନ ପରମ୍ପରାରେ ପରିଣତ ହୋଇପାରିଛି ।

ଜଗତ୍‌ଜନନୀ ମହାମାୟା ମହାଦେବୀ ଦୁର୍ଗା ହେଉଛନ୍ତି ସମସ୍ତ ଶକ୍ତି, ବିଦ୍ୟା ଓ ବୁଦ୍ଧିର ଉତ୍ସ । ଜଗତର ସମସ୍ତ ଭୌତିକ ଶକ୍ତି ସର୍ବବ୍ୟାପି ଓ ଜଗତର କଲ୍ୟାଣ ନିମନ୍ତେ ଏହି ଆଦିମାତା ମହାଶକ୍ତିଙ୍କର ଉପାସନା, ଆବାହନ ଓ ଆବିର୍ଭାବ କଳ୍ପନାତୀତ ।

'ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋନମଃ
ଯା ଦେବୀ ସର୍ବଭୂତେଷୁ ମାତୃ ରୂପେଣ ସଂସ୍ଥିତା
ନମସ୍ତସୈ ନମସ୍ତସୈ ନମସ୍ତସୈ ନମୋନମଃ ।'

ଓଡ଼ିଶାରେ ଶାକ୍ତ ପରମ୍ପରା ଅତ୍ୟନ୍ତ ସମୃଦ୍ଧ ଓ ଏହାର ବିବିଧତା ବିଭିନ୍ନ ଶାକ୍ତପୀଠମାନଙ୍କରେ ପରିଦୃଷ୍ଟ ହୋଇଥାଏ ।

ସମଗ୍ର ଓଡ଼ିଶାରେ ପ୍ରଧାନତଃ ଆଠଗୋଟି ତନ୍ତ୍ରପୀଠରେ ଶକ୍ତି ସ୍ୱରୂପିଣୀ ଦେବୀ କେଉଁଠି ଅଷ୍ଟଭୁଜା, କେଉଁଠି ଦ୍ୱିଭୁଜା, କେଉଁଠି ପରମ ବୈଷ୍ଣବୀ, ନରମୁଣ୍ଡ ମାଳିନୀ, ତ୍ରିପୁରା ସୁନ୍ଦରୀ ତ କେଉଁଠି କାତ୍ୟାୟନୀ ରୂପେ ପୂଜ୍ୟା । ଏହି ଦୃଷ୍ଟିରୁ ଉତ୍କଳୀୟ ଶାକ୍ତପୀଠ ସାରା ଜଗତରେ ପ୍ରାଚୀନ କାଳରୁ ଖ୍ୟାତି ଅର୍ଜନ କରିଅଛି । ବାଣପୁରରେ ମାଆ ଭଗବତୀ, ଶ୍ରୀକ୍ଷେତ୍ର ପୁରୀରେ ମାଆ ବିମଳା, କାକଟପୁରରେ ମାଆ ମଙ୍ଗଳା, ଝଙ୍କଡରେ ଦେବୀ ଶାରଳା, ଯାଜପୁରରେ ମାଆ ବିରଜା, ବାଙ୍କୀରେ ଚର୍ଚ୍ଚିକା, ସମ୍ବଲପୁରରେ ମାଆ ସମଲାଇ ଏବଂ ତାଳଚେରରେ ମାଆ ହିଙ୍ଗୁଳା ଆଦି ଆଠଟି ସ୍ଥାନରେ ଦେବୀ ଜଗତ ବିଖ୍ୟାତ ଓ ତାଙ୍କର ମହିମା ଅପାର । ଏହି ଦେବୀ ପ୍ରତ୍ୟକ୍ଷ ବିଦିତା ଅଟନ୍ତି । ସେଥିପାଇଁ ପରମ୍ପରା ଅନୁସାରେ ଉତ୍କଳ ଶାକ୍ତ ଉପାସନାର ଆଦିପୀଠ ଭାବରେ ପ୍ରସିଦ୍ଧ । ଏତଦ୍‌ବ୍ୟତୀତ ଓଡ଼ିଶାର ପୁରପଲ୍ଲୀ, ଗାଆଁଗଣ୍ଡା ଓ ସହର ବଜାରମାନଙ୍କରେ ମନ୍ଦିରାଦି ନିର୍ମାଣ କରାଯାଇ ଦେବୀ ବିଗ୍ରହ ପ୍ରତିଷ୍ଠା ପୂର୍ବକ ବିଧିବିଧାନର ସହିତ ପୂଜାପାଠ ମଧ୍ୟ କରାଯାଇ ଆସୁଅଛି । ଗ୍ରାମମାନଙ୍କରେ ଗ୍ରାମ ତଥା ଲୋକମାନଙ୍କର ସୁରକ୍ଷା ନିମିତ୍ତ ଗ୍ରାମ ଦେବତୀଙ୍କୁ ମଧ୍ୟ ପୂଜା କରାଯାଉଅଛି । ବିଭିନ୍ନ ସ୍ଥାନରେ ଦେବୀ ଚଣ୍ଡୀ, କାଳୀ, ଦୁର୍ଗା, ଭୈରବୀ, ରାମଚଣ୍ଡୀ, ହରଚଣ୍ଡୀ, ସ୍ତମ୍ଭେଶ୍ୱରୀ, ମାଣିକେଶ୍ୱରୀ, ପାଟଣେଶ୍ୱରୀ, ଲଙ୍କେଶ୍ୱରୀ ଆଦି ନାମରେ ଅଧିଷ୍ଠିତ ହୋଇଛନ୍ତି । ବହୁ ପ୍ରାଚୀନ କାଳରୁ ମାତୃଶକ୍ତି ଭିନ୍ନ ଭିନ୍ନ ରୂପରେ ପୂଜିତା ଥିଲେ । ତନ୍ମଧ୍ୟରୁ ସିଧସେନୀ, ସିଦ୍ଧଭୈରବୀ, ମନ୍ଦାର ବାସିନୀ, କୁମାରୀ, କାଳୀ, କପାଳୀ, ଭଦ୍ରକାଳୀ, ମହାକାଳୀ, ଚଣ୍ଡୀ ତାରିଣୀ, କରାଳୀ, ଚଣ୍ଡିକା, ନାରାୟଣୀ ବୈଷ୍ଣବୀ, କୃଷ୍ଣ, ଶାରଦା ଓ ଅମ୍ବିକା ଆଦି ଅତ୍ୟନ୍ତ ଜନପ୍ରିୟ ।

ସମଗ୍ର ବିଶ୍ୱର ଜନନୀ ଦେବୀ ଦୁର୍ଗା ସଂସାରକୁ ପରିଚାଳନା କରି ଆପଦ ଶଙ୍କୁଳ ଭକ୍ତଙ୍କୁ ଉଦ୍ଧାର କରିଥାନ୍ତି ଓ ସାଧକ କଥା ଉପାସକମାନଙ୍କୁ କାମନା ଅନୁଯାୟୀ ଫଳ ପ୍ରଦାନ କରିବାର ବିଶ୍ୱାସ ଉତ୍କଳୀୟ ହିନ୍ଦୁଙ୍କଠାରେ ଅଧିକ ପରିଲକ୍ଷିତ ହୁଏ । ତ୍ରିବିଧ ଦୁଃଖର ଉଚ୍ଛେଦ କାରିଣୀ ଭୁକ୍ତି ମୁକ୍ତି ଓ ଶକ୍ତି ପ୍ରଦାୟିନୀ ହେଉଛନ୍ତି ଜଗତ୍ ଜନନୀ ଦୁର୍ଗା ।

'ଯା ପ୍ରପଶ୍ୟନ୍ତି ଦେବେଶାଂ ଭକ୍ତ୍ୟାନୁଗ୍ରାହି ନୋ ଜନାଃ
ତା ମହଃ ପରମଂ ବ୍ରହ୍ମ ଦୁର୍ଗା ଭଗବତୀ ମୁନିଃ ।'

ବୈଦିକ ଯୁଗରୁ ବେଦ ଓ ଉପନିଷଦାଦିରେ ଶାକ୍ତ ଉପାସନାର ନିଦର୍ଶନ ମିଳିଥାଏ । ସାମବେଦରେ ଦେବୀଙ୍କ ସମ୍ପର୍କରେ ଯାହା ବର୍ଣ୍ଣନା କରାଯାଇଛି–

'ଯ ଯେଦଂ ଭ୍ରମତେ ବିଶ୍ୱଂ ଯୋଗିଭିଃର୍ଯ୍ୟ ବିଚିନ୍ତତେ
ଯଦ୍‌ଭାସା ଭାସତେ ବିଶ୍ୱଂ ସୈକାଦୁର୍ଗା ଜଗନ୍ମୟୀ ।'

ତନ୍ତ୍ରସାଧକମାନଙ୍କ ମତରେ ପୂର୍ବବର୍ଣ୍ଣିତ ଭଗବତୀ, ଶାରଳା, ବିମଳା, ମଙ୍ଗଳା, ବିରଜା, ହିଙ୍ଗୁଳା, ଚର୍ଚ୍ଚିକା ଓ ଭୁବନେଶ୍ୱରୀ ଆଦି ଦେବୀମାନେ ଅଷ୍ଟକାଳୀ ଭାବରେ ଜଗତରେ ଖ୍ୟାତ । କେତେକଙ୍କ ମତାନୁସାରେ ଉତ୍କଳ ଭୂଖଣ୍ଡରେ ରହିଥିବା ଆଠଗୋଟି ଶକ୍ତିପୀଠକୁ ଅଷ୍ଟଦଳ ପଦ୍ମର ଆଖ୍ୟା ମଧ୍ୟ ଦିଆଯାଇଅଛି । ଏହି ଅଷ୍ଟଦଳ ପଦ୍ମ ମଧ୍ୟରେ ପୂଜା ପାଉଥିବା ଅଷ୍ଟକାଳୀ ହେଲେ ସମୁଦ୍ର ବେଳାର ମା' ହରଚଣ୍ଡୀ, ମହାନଦୀ ତଟରେ ମା' ଭଟ୍ଟାରିକା ଓ ମା' ଚର୍ଚ୍ଚିକା, ପ୍ରାଚୀନଦୀ ତଟରେ ମା' ତାରିଣୀ, ବାଣପୁର ସାଳିଆ ତଟରେ ମାତା ଭଗବତୀ ଓ ଉଗ୍ରତାରା ଏବଂ ଚନ୍ଦ୍ରଭାଗା କୂଳରେ ମା' ରାମଚଣ୍ଡୀ ।

ଓଡ଼ିଶାର ପୂଜା ପର୍ବମାନଙ୍କ ମଧ୍ୟରେ ଶ୍ରେଷ୍ଠ ପାର୍ବଣ । ଆଶ୍ୱିନ ମାସରେ ଶରତ ଋତୁର ଶାରଦୀୟ ପର୍ବ ଦଶହରା ବହୁ ପ୍ରାଚୀନ । ପୁରାଣ ଆଉ ଇତିହାସକୁ ନେଇ ଦେବତା, ଈଶ୍ୱର,, ଦାନବ, ମାନବ, ସ୍ୱର୍ଗ, ଭୂଖଣ୍ଡ ଓ ପାତାଳ ଏବଂ ଆଧୁନିକ ମାନବ ଚେତନାର ସମଷ୍ଟିଗତ ଉପାସନାର ପର୍ବ । ଦୁର୍ଗାପୂଜାର ଉତ୍କଳୀୟ ପ୍ରାଚୀନତାର ପ୍ରମାଣ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ରଚିତ ମାର୍କଣ୍ଡେୟ ପୁରାଣରେ ବ୍ୟବହୃତ 'ଦୁର୍ଗା' ଶବ୍ଦରୁ ମିଳେ । ପରମ୍ପରା ଅନୁଯାୟୀ ମହାଶକ୍ତିର ପ୍ରତୀକ ସ୍ୱରୂପିଣୀ ଦେବୀ ଦୁର୍ଗାଙ୍କର ମୃଣ୍ମୟ ମୂର୍ତ୍ତି ଭିନ୍ନାଦି ବେଶଭୂଷା ଧାରଣ ପୂର୍ବକ ମେଢମଣ୍ଡପରେ ଉପବିଷ୍ଟା ହୋଇ ପୂଜା ଗ୍ରହଣ କରିଥାନ୍ତି । କେତେକଙ୍କ ମତରେ ମନୁଷ୍ୟର ଦଶ ପ୍ରକାର ବିଘ୍ନର ଦୁର୍ଗା ଉପାସନା ମାଧ୍ୟମରେ ହରଣ ହେଉଥିବାରୁ ଏହି ପୂଜାର ମହୋତ୍ସବକୁ ଦଶହରା ନାମରେ ଅଭିହିତ କରାଯାଇଅଛି । ଏହି ଶାରଦୀୟ ଦୁର୍ଗାପୂଜା କୃଷ୍ଣ ମୂଳାଷ୍ଟମୀଠାରୁ ଆଶ୍ୱିନ ମହାଷ୍ଟମୀ ପର୍ଯ୍ୟନ୍ତ ଷୋହଳ ଦିନ ବ୍ୟାପୀ ଅନୁଷ୍ଠିତ ହେଉଥିବାରୁ ଏହାକୁ ଷୋଳପୂଜା କୁହାଯାଏ । ମହାଶକ୍ତି ଦୁର୍ଗା ଦଶାନନ ରାବଣର ଶିର ଛେଦନ କରିଥିବାରୁ ଏହାକୁ ମଧ୍ୟ ଦଶହରା କୁହାଯାଏ । ତ୍ରେତୟାରେ ପ୍ରଭୁ ଶ୍ରୀରାମଙ୍କର ରାବଣ ସହିତ ନିର୍ଣ୍ଣାୟକଯୁଦ୍ଧ ପୂର୍ବରୁ ପ୍ରଭୁ ନିଜେ ଦେବୀଙ୍କର ଶରତ କାଳରେ ଆବାହନ କରି ପୂଜାର୍ଚ୍ଚନା କରିଥିଲେ । ମା'ଙ୍କଠାରୁ ବରପ୍ରାପ୍ତ ହୋଇ ନବମୀ ଦିନ ରାବଣକୁ ବଧ କରି ଦଶମୀ ଦିନ ବିଜୟ ଉତ୍ସବ ପାଳନ କରିଥିବାରୁ ଏହି ପାର୍ବଣ ଉତ୍ସବକୁ ମଧ୍ୟ ବିଜୟା ଦଶମୀ ଆଖ୍ୟା ଦିଆଯାଇଅଛି ।

ବାସ୍ତବରେ ମହାଶକ୍ତି ହିଁ ଦୁର୍ଗତିନାଶିନୀ ଦୁର୍ଗା । ସେ ମହାକାଳୀ, ମହାଲକ୍ଷ୍ମୀ ଓ ମହା ସରସ୍ୱତୀଙ୍କ ରୂପରେ ଶକ୍ତି ମଧ୍ୟେ ବିରାଜିତା ସ୍ୱୟଂ ବ୍ରହ୍ମ ସ୍ୱରୂପିଣୀ ଓ ଜଗତ ସୃଷ୍ଟିର ମୂଳଉତ୍ସ ଜଗଜ୍ଜନନୀ ଆଦିମାତା । ଋକ୍‌ବେଦରେ ସେ ସ୍ୱୟଂକୁ ରାଷ୍ଟ୍ରଶକ୍ତି ଭାବରେ ବର୍ଣ୍ଣନା କରି କହିଛନ୍ତି, 'ଅହଂ ରାଷ୍ଟ୍ର ସର୍ବାଂମନୀ ବେସୁନାଂ' । ଯଦିଓ ପ୍ରାଚୀନ ଯୁଗର ପାର୍ବଣଠାରୁ ପୀଠପୂଜା ଆଦିକୁ ବାଦ୍ ଦେଇ ସହର ଓ ନଗ୍ରମାନଙ୍କରେ ପାର୍ବଣର ଉତ୍ସବ ମୁଖର ମୁହୂର୍ତ୍ତଗୁଡିକ ଅନେକାଂଶରେ ଦୂରେଇ ଦୂରେଇ ଯାଇଛି । ଆଡମ୍ବରତାକୁ ଅତ୍ୟାଧୁନିକ ଫେଶନ୍‌ରେ ପରିଣତ କରାଯାଇଛି ସତ କିନ୍ତୁ ପାର୍ବଣର ମୂଳ ଚିନ୍ତନଗୁଡିକ ମହାନ ପରମ୍ପରାରେ ପରିଣତ ହୋଇପାରିଛି । ଅନ୍ତତଃ ପକ୍ଷେ ବସ୍ତୁବାଦରେ ଭିଜିଥିବା ଅର୍ଥସର୍ବସ୍ୱ ମଣିଷମାନଙ୍କ ଭିତରେ ଏହି ସାମାଜିକ ପରମ୍ପରା କିଂଚିତ୍ ମାତ୍ରାରେ ହେଲେବି ଭକ୍ତି ଭାବନାର ସୂତ୍ରପାତ ଘଟାଇଛି କହିବାରେ ଦ୍ୱିମତ ନାହିଁ । ବିଶ୍ୱଜନନୀ ମା' ଦୁର୍ଗା ସଦାସର୍ବଦା ମାନବ ଜାତିର ମଙ୍ଗଳ କାରିଣୀ ଯିଏ ଭକ୍ତମାନଙ୍କୁ ଅଭୟ ପ୍ରଦାନ ପୂର୍ବକ ଐଶ୍ୱର୍ଯ୍ୟାଦି ପ୍ରଦାନ କରିଥାନ୍ତି । ତାଙ୍କ ଅପାର କରୁଣା ଯୋଗୁଁ ପଙ୍ଗୁ ଲଙ୍ଘିପାରେ ଗିରି । ତାଙ୍କୁ ଯେଉଁ ରୂପେ ଆମେ ଚିନ୍ତିବା ସେହି ରୂପରେ ପାଇପାରିବା । ସେଇ ମାଆଙ୍କର ପୁଣ୍ୟ ପାର୍ବଣରେ ଆବାହନ ଓ ଆରାଧନା କରି ସମଗ୍ର ଉତ୍କଳବାସୀ ଆଜି ଗୌରବାନ୍ୱିତ ଏବଂ ମହିମା ମଣ୍ଡିତ ।

ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ
ରାଜ୍ୟ ସଚିବାଳୟ, ଭୁବନେଶ୍ୱର–୧

# ଆବାହନୀ

ମିଶ୍ର ସତ୍ୟନାରାୟଣ

ବରଷକେ ଥରେ ଏ ଧରାଧାମରେ
ବିରାଜ ମା' ମାହେଶ୍ୱରୀ
ଆକୁଳ କଣ୍ଠେ ଭକତ ଆରତେ
ଡାକେ ତୁମ ନାମ ଧରି ।

ଏଇତ ମହିଷା ବିନାଶିଲ ବୋଲି
ତ୍ରିପୁର ଗାଇଲା ଜୟ
କୋଟିଦାନବର ନିଷ୍ଠୁରପଣ
ସରଜିଛି ଆଜି ଭୟ
ଏ' ସାରା ବିଶ୍ୱେ କଳୁଷ–କାଳିମା
ଦେଖ ମା' ଗଲାଣି ଭରି
ବରଷକେ ଥରେ

ବିଲୋପ କର ମା' ଏ ଦୁରୂହ ଦୁଃଖ
ଘେନ ବାରେ ଅନୁନୟ
ତବ ଶୁଭାଶିଷେ ଏ ଜୀବଜଗତ
ହେଉ ମା' ଅମୃତମୟ
ଦୁର୍ଗତି ନାଶି ସୁଗତି ଦିଅ ମା'
ଅରାତି ନିପାତ କରି ।

ବରଷକେ ଥରେ...

ପ୍ଳଟ୍ ନଂ– ଏଫ୍–୫/ଏ
ଚନ୍ଦକା ଶିକ୍ଷାଞ୍ଚଳ, ପୋ.କିଟ୍
ଭୁବନେଶ୍ୱର–୨୪

❖ ❖ ❖

# ଉତ୍କଳରେ ମାତୃ ଉପାସନା

ସୌଦାମିନୀ ବେହେରା

ସଂସ୍କୃତି ପ୍ରତ୍ୟେକ ଜାତିର ଜାତୀୟ ସ୍ୱାତନ୍ତ୍ର୍ୟର ସ୍ମାରକୀ ଅଟେ । ତେଣୁ ଭାରତର ସଂସ୍କୃତି, ଐତିହ୍ୟ, ପରମ୍ପରାରେ ଅନ୍ୟ ଦେଶ ତୁଳନାରେ ଅନେକ ସ୍ୱତନ୍ତ୍ରତା ଓ ବିଶେଷତ୍ୱ ପରିଲକ୍ଷିତ ହୋଇଥାଏ । କେଉଁ ଆବହମାନ କାଳରୁ ସଂସ୍କୃତି ସହିତ ଧର୍ମର ନିବିଡ ସମ୍ପର୍କ ରହିଛି । ଭାରତୀୟମାନଙ୍କ ହୃଦୟରେ ଧାର୍ମିକ ଚିନ୍ତାଧାରାର ସ୍ରୋତଟି ଅବିରତ ଧାରାରେ ବୋହି ଚାଲିଥାଏ । ଭାରତୀୟ ସମ୍ବିଧାନରେ ଉଲ୍ଲେଖ କରାଯାଇଛି ଯେ 'ଭାରତ ଏକ ସର୍ବ ବୃହତ୍ତମ ଧର୍ମନିରପେକ୍ଷ ରାଷ୍ଟ୍ର' ଅଟେ । ଏଠାରେ ଅନେକ ଜାତି, ସମ୍ପ୍ରଦାୟର ଜନସାଧାରଣ ବାସ କରନ୍ତି । ଭାରତୀୟ ସଂସ୍କୃତି କହେ 'ବିଭିନ୍ନତା ମଧ୍ୟରେ ଏକତା' । ହିନ୍ଦୁ, ମୁସଲ୍‌ମାନ, ଶିଖ୍, ଖ୍ରୀଷ୍ଟିଆନ୍ ଏହିପରି ଅନେକ ଧର୍ମକୁ ଭାରତ ସମାନ ଭାବରେ ସମ୍ମାନ ପ୍ରଦର୍ଶନ କରିବା ଭାରତୀୟମାନଙ୍କୁ ଶିଖାଇଥାଏ । ତେଣୁ ଏହାର ସଭ୍ୟତା ଯେତେ ପରିପୁଷ୍ଟ, ତାର ଜାତି ମଧ୍ୟ ସେତେ ମାର୍ଜିତ ହୋଇଥାଏ । ତେଣୁ ଭାରତର ସଂସ୍କୃତି ମହାନ୍ ଅଟେ । ଆମେ ଏଥିପାଇଁ ଭାରତୀୟ ବୋଲି ଗର୍ବ କରୁ ।



ଭାରତରେ ଯେତେ ରାଜ୍ୟ ରହିଛି, ତନ୍ମଧ୍ୟରୁ ଓଡ଼ିଶାର ଧାର୍ମିକ ଚେତନା, ସଂସ୍କୃତି, ପରମ୍ପରା, ଐତିହ୍ୟର ଗୁରୁତ୍ୱ ନିଶ୍ଚିତ ବାରିହୋଇ ପଡେ, ଯେତେବେଳେ ବାର ମାସରେ ତେର ପର୍ବ ପାଳନ ହୋଇଥାଏ ବିଭିନ୍ନ ଢଙ୍ଗରେ ଓ ନିଷ୍ଠାରେ । ଶ୍ରୀକ୍ଷେତ୍ର ପୁରୀର ବିଶ୍ୱପ୍ରସିଦ୍ଧ ରଥଯାତ୍ରା, କୋଣାର୍କ ମନ୍ଦିରର ନିଖୁଣ କାରିଗରୀ, ଲିଙ୍ଗରାଜ ମନ୍ଦିର ପ୍ରଭୃତିର ଚର୍ଚ୍ଚା ବିଶ୍ୱ ଦରବାରରେ ହୋଇଥାଏ । ପ୍ରତିବର୍ଷ ଲକ୍ଷ ଲକ୍ଷ ବିଦେଶୀ ଛୁଟି ଆସନ୍ତି ଶ୍ରୀଜଗନ୍ନାଥଙ୍କ ଭକ୍ତି ଡୋରୀରେ ବାନ୍ଧିହୋଇ । ଅପୂର୍ବ ଧାର୍ମିକ ଚେତନାରେ ସମଗ୍ର ବିଶ୍ୱବାସୀ ବଶୀଭୂତ ହୋଇ ପ୍ରଭୁ ଚକାଡୋଳାଙ୍କଠାରେ ନିଜକୁ ସମର୍ପି ଦେଇଥାନ୍ତି ।

ଓଡ଼ିଶାରେ ଅନେକ ପର୍ବପର୍ବାଣି ପାଳନ କରାଯାଏ, ଯଥା– ରଜ, କୁମାର ପୂର୍ଣ୍ଣିମା, ହୋଲି, ଦୀପାବଳି, ରଥଯାତ୍ରା, ଦୁର୍ଗାପୂଜା, ଜନ୍ମାଷ୍ଟମୀ, ରାକ୍ଷୀ ପୂର୍ଣ୍ଣିମା, ଶିବରାତ୍ରୀ ଇତ୍ୟାଦି । ଅନେକ ପର୍ବର ପାଳନ ସହିତ ଶାରଦୀୟ ଦୁର୍ଗାପୂଜା ଓ ଦଶହରାର ଉତ୍ସବ ପାଳନ ନିଆରା ଢଙ୍ଗରେ ହୋଇଥାଏ । ଏହା ଦୀର୍ଘଦିନ ଧରି ଖୁବ୍ ଜାକଜମକରେ ଓ ଆନୁଷ୍ଠାନିକ ଭାବେ ବିଧିବଦ୍ଧ ଭାବରେ ପାଳନ କରାଯାଇଥାଏ । ମାଆ ନିକଟରେ ସନ୍ତାନର ଦୁଃଖ ଓ ନିବେଦନ ଶୁଣିବା ପାଇଁ ମାତୃପୂଜାର ସୃଷ୍ଟି ହୋଇଥାଏ ।

ଧରାପୃଷ୍ଠକୁ ଶୀତରାଣୀର ପ୍ରଥମ ପ୍ରବେଶରେ ମା' ଦୁର୍ଗା ଦୁର୍ଗତି ନାଶିନୀଙ୍କୁ ଆବାହନ କରାଯାଏ । ସକାଳର ମୁକ୍ତା ପରି ଭ୍ରମ ସୃଷ୍ଟି କରୁଥିବା କାକର ବିନ୍ଦୁ ନିର୍ମଳ ନୀଳ ଆକାଶ,

ନଈପଠାରେ କାଶତଣ୍ଡୀ ଫୁଲର ବନ, ନଦୀର ପରିଷ୍କାର ପାଣିର ଧାର, ତା' ଉପରେ ନାନା ଜାତି ପୁଷ୍ପମାନଙ୍କର ହସର ପାଖୁଡ଼ା ମେଲି ଓ ବାଡ଼ିବଗିଚା ଜହ୍ନି ଫୁଲର ହଳଦୀ ଶାଢ଼ୀ ପିନ୍ଧି ସୌନ୍ଦର୍ଯ୍ୟରେ ବିମଣ୍ଡିତ ହୋଇ ଫୁଲେଇ ଶରତ ଋତୁ ନିମନ୍ତ୍ରିତ ହୋଇଥାଏ ପୃଥିବୀ ପୃଷ୍ଠରେ । ଏହି ଋତୁଟି ଅଧିକ ମଧୁମୟ ତଥା ସୁଖମୟ ହୋଇଥାଏ ଦେବୀ ଦୁର୍ଗାଙ୍କର ସାର୍ବଜନୀନ ଶାରଦୀୟ ପର୍ବ ପାଇଁ । ମା'ଙ୍କୁ ପୂଜା କରି ଭକ୍ତ ନିଜକୁ ସମର୍ପିତ କରିଦିଏ ତାଙ୍କ ନିକଟରେ ।

'ଜୟନ୍ତୀ, ମଙ୍ଗଳା, କାଳୀ, ଭଦ୍ରକାଳୀ, କପାଳିନୀ,
ଦୁର୍ଗା, କ୍ଷମା, ଶିବାଧାତ୍ରୀ, ସ୍ୱାହା ସ୍ୱଧା ନମସ୍ତୁତେ'

ଏହି ଶ୍ଳୋକକୁ ଆବୃତ୍ତି କରି ଭକ୍ତ ଦେବୀଙ୍କର ପୟରେ ଟିକେ କରୁଣା ପାଇବା ପାଇଁ ବ୍ୟାକୁଳ ହୋଇଉଠେ । ନିର୍ମଳ ଶରତର ନିର୍ମଳ ମନରେ ମାତୃପୂଜା ଅହେତୁକ ପ୍ରେମ, ଜାତି ଧର୍ମ, ଶ୍ରେଣୀ ସମ୍ପ୍ରଦାୟ, ଧନୀ ଗରିବ ନିର୍ବିଶେଷରେ ପ୍ରତ୍ୟେକ ହୃଦୟରେ ଏକତାର ରଜ୍ଜୁରେ ଆବଦ୍ଧ କରାଏ । ଲକ୍ଷ ଲକ୍ଷ ଫୁଲ ରୂପକ ମନକୁ ଗୋଟିଏ ଦଉଡ଼ିରେ ବାନ୍ଧିବା ହେଉଛି ଜଗଜ୍ଜନନୀଙ୍କ ଆର୍ବିଭାବ । ଜନ୍ମଦାତ୍ରୀ ଯେମିତି ନିଜ ସନ୍ତାନର ଦୁଃଖକୁ କେବେ ଦେଖିପାରେ ନାହିଁ ଓ ସଦାସର୍ବଦା ତାର ମଙ୍ଗଳ କାମନା କରିଥାଏ, ଠିକ୍ ସେମିତି ମା' ଦୁର୍ଗାଙ୍କର ଅପୂର୍ବ ସ୍ନେହ ଅଜାଡ଼ି ହୋଇପଡେ କୋଟି କୋଟି ସନ୍ତାନଙ୍କ ଉପରେ । ଏହା ମନ ଭିତରୁ ସବୁ କୁତ୍ସିତ ଚିନ୍ତାଧାରାକୁ ନଷ୍ଟ କରି ବଳିଦାନରେ ଆମ ମନରେ ଦୃଢ଼ ସାତ୍ତ୍ୱିକ ଭାବନା ଉଦ୍ରେକ କରାଇଥାଏ । ଦେବୀ ଦୁର୍ଗା ତ୍ରିଗୁଣାତ୍ମକ, ଦୁଃଖୀ ଜନଙ୍କ ବିଘ୍ନ, ଦୁଃଖ, ଶୋକ ତଥା ନର୍କ ଯନ୍ତ୍ରଣାରୁ ଉଦ୍ଧାର କରନ୍ତି ବୋଲି ସେ ମା' ଦୁର୍ଗତିନାଶିନୀ ।

ଓଡ଼ିଶାର ପୁରପଲ୍ଲୀ, ସହର, ନାଗରାଞ୍ଚଳରେ ମହା ଧୁମ୍‌ଧାମ୍‌ରେ ଶାରଦୀୟ ଦୁର୍ଗାପୂଜା ପାଳନ କରାଯାଏ । ପୁରାଣର ଆଖ୍ୟାୟିକା ବା ଜନଶ୍ରୁତି ଅନୁଯାୟୀ ଦୁର୍ଗାପୂଜା ସାଧାରଣତଃ ବସନ୍ତ ଋତୁର ଏକ ଉତ୍ସବ– ଯାହା ବାସନ୍ତୀ ପୂଜା ନାମରେ ନାମିତ । ବାସନ୍ତୀ ପୂଜାର ସାର୍ବଜନୀନତା ନାହିଁ କହିଲେ ଚଳେ । ତାହା ପରିବର୍ତ୍ତେ ରୂପ ନେଇଛି ସାର୍ବଜନୀନ ଦୁର୍ଗାପୂଜା, ଏହା ଶାରଦୀୟ ପୂଜା ନାମରେ ଖ୍ୟାତ । ଏହା ଆଶ୍ୱିନ ମାସରେ ପଡ଼ିଥାଏ । ଓଡ଼ିଶା ଏକ ଗ୍ରାମବହୁଳ ଅଞ୍ଚଳ ହୋଇଥିବାରୁ ଏଠାରେ ବିଭିନ୍ନ ଶକ୍ତିପୀଠ, ମନ୍ଦିରମାନଙ୍କରେ ମା'ଙ୍କର ଆବାହନ କରାଯାଏ । ବିଭିନ୍ନ ଅଞ୍ଚଳରେ ବିଭିନ୍ନ ନାମରେ ମା' ପୂଜା ପାଇଥାନ୍ତି । ଆଞ୍ଚଳିକ ସ୍ତରରେ ତାଙ୍କର ବିଭିନ୍ନ ନାମ ଯଥା– କୋଣାର୍କର ରାମଚଣ୍ଡୀ, ଭୁବନେଶ୍ୱରରେ ଗୌରୀ, ଯାଜପୁରରେ ମା' ବିରଜା, ପୁରୁଷୋତ୍ତମପୁରରେ ତାରାତାରିଣୀ, ବ୍ରହ୍ମଗିରିର ବାଲିହରଚଣ୍ଡୀ, ମୟୂରଭଞ୍ଜର ଖିଚିଂରେ ମା' କିଚକେଶ୍ୱରୀ, ଚିଲିକାରେ ମା' କାଳିଜାଈ, ଝଙ୍କଡ଼ରେ ମା' ସାରଳା, ବାଙ୍କୀର ଚର୍ଚ୍ଚିକା, ବଡ଼ମ୍ବାରେ ଭଟ୍ଟାରିକା, ଶ୍ରୀକ୍ଷେତ୍ରରେ ବିମଳା, ଭଦ୍ରକରେ ଭଦ୍ରକାଳୀ, କଟକରେ କଟକଚଣ୍ଡୀ, ବାଣପୁରର ଭଗବତୀ, ଭୂଷଣ୍ଡପୁରରେ ଉଗ୍ରତାରା, ସମ୍ବଲପୁରରେ ମା' ସମଲାଇ, ତାଳଚେରରେ ହିଙ୍ଗୁଳାଇ, ଆସିକାର ମା' ଫୁଲକେଶିନୀ, କାକଟପୁରରେ ମା' ମଙ୍ଗଳା, ପୁରୀର ମା' ବାଟମଙ୍ଗଳା, କେନ୍ଦ୍ରାପଡ଼ାରେ ଶ୍ରୀଚଣ୍ଡୀ, ଖୋର୍ଦ୍ଧାର ମା' ବରୁଣେଇ ଇତ୍ୟାଦି ହୋଇଥାଏ ।

ଭାରତରେ ଅନେକ ସ୍ଥାନରେ ଦେବୀ ଦୁର୍ଗାଙ୍କର 'ନବରାତ୍ରୀ' ପୂଜା ନଅ ଦିନବ୍ୟାପି ପାଳନ କରାଯାଏ । କିନ୍ତୁ ଓଡ଼ିଶାରେ ଷୋଡ଼ଶ ଦିବସ ପୂଜାର ବିଧି ରହିଛି । ଏହା ଆଶ୍ୱିନ କୃଷ୍ଣପକ୍ଷ ଅଷ୍ଟମୀ ତିଥିରୁ ଆରମ୍ଭ ହୋଇ ଶୁକ୍ଳ ଅଷ୍ଟମୀ ତିଥି ପର୍ଯ୍ୟନ୍ତ ପାଳିତ ହୁଏ । ଏହା ଦେବୀଙ୍କ ମନ୍ଦିରରେ ଓ ପୀଠରେ ଅନୁଷ୍ଠିତ ହୁଏ । ଆଶ୍ୱିନ ଶୁକ୍ଳପକ୍ଷ ସପ୍ତମୀ, ଅଷ୍ଟମୀ, ନବମୀ ତିଥିରେ ସ୍ୱତନ୍ତ୍ର ପୂଜା ହୋମ ଇତ୍ୟାଦି ହୋଇଥାଏ । ଶୁକ୍ଳ ଦଶମୀ ତିଥିରେ ଦେବୀଙ୍କ ପୂଜାପାଠ ସମ୍ପନ୍ନ ହୁଏ । ଓଡ଼ିଶାର ପୁରପଲ୍ଲୀରେ ପ୍ରତ୍ୟେକ ପରିବାର ଦେବୀଙ୍କ ନିକଟରେ ବିଭିନ୍ନ ଅସ୍ତ୍ରଶସ୍ତ୍ର, ବ୍ୟବହୃତ ଲୁହା ଲହୁଡ଼ି ରଖି ପୂଜା କରନ୍ତି । ଦଶହରା ବେଦୀକୁ ଗ୍ରାମର ସମସ୍ତ ଠାକୁରଙ୍କୁ ବିମାନରେ ବସାଇ ଭୋଗ ଅର୍ପଣ କରି ନିଜ ଅସ୍ତ୍ରଶସ୍ତ୍ର ଅନୁକୂଳ କରନ୍ତି । ଗାଁଗୁଡ଼ିକ ଉତ୍ସବ ମୁଖରିତ ହୋଇଉଠେ । ଆବାଳ ବୃଦ୍ଧ ବନିତାଙ୍କ ଶରୀରରେ ନୂତନ ବସ୍ତ୍ରର ଆବରଣ ଥାଏ । ଗାଁମାନଙ୍କରେ ଠାଏଁ ଠାଏଁ ଲୋକନୃତ୍ୟ, ଦଣ୍ଡଯାତ୍ରା, ରାମଲୀଳା, ନୃସିଂହଯାତ, ଚଢ଼େଇଆ ନୃତ୍ୟ, ସଙ୍ଗୀତ, ଗୋଟିପୁଅ ନୃତ୍ୟ ଇତ୍ୟାଦି ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ ହୋଇଥାଏ ।

ଓଡ଼ିଶାର ଖୋର୍ଦ୍ଧା ଜିଲ୍ଲାରେ ପାଇକମାନଙ୍କ ଶିକ୍ଷାକେନ୍ଦ୍ର ତଥା ଆଖଡ଼ା ଘର ରହିଅଛି । ପାଇକମାନେ ଦଶହରାରେ ନିଜର କଳା ପ୍ରଦର୍ଶନ କରନ୍ତି । ଖଣ୍ଡା, ମୁଦ୍‌ଗର, ବର୍ଚ୍ଛା ଚାଳନା ପର୍ବ ଲୋକଙ୍କ ସମ୍ମୁଖରେ ଦେଖାଇଥାନ୍ତି । ଜଟଣୀର ମା' ଉତ୍ତରାୟଣୀ (ଡମଣେଇ)ଙ୍କ ପୀଠରେ ଷୋଡ଼ଶ ପୂଜା ଖୁବ୍ ଧୁମ୍‌ଧାମରେ ପାଳନ କରାଯାଏ । ମନ୍ଦିରରେ ବିଭିନ୍ନ କିସମର ଫୁଲ, ଲିଚୁ ଲାଇଟ୍‌ରେ ଖୁବ୍ ସୁନ୍ଦର ଭାବେ ସାଜସଜ୍ଜା ହୋଇଥାଏ । ସହରର ଲୋକମାନେ ଷଷ୍ଠୀଠାରୁ ଦଶହରା ପର୍ଯ୍ୟନ୍ତ ମା ଡମ୍ଫଣେଇଙ୍କ ପୀଠରେ ଭିଡ଼ ଲଗାଇଥାଆନ୍ତି । ପାଇକ ଭାଇମାନଙ୍କର ଆଖଡ଼ା

ଚାଲିଆସେ ମା'ଙ୍କ ପୀଠକୁ । ବିଭିନ୍ନ କଳା କଉଶଳ ପ୍ରଦର୍ଶନ କରି ଭକ୍ତମାନଙ୍କୁ ନିଜ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥାନ୍ତି ଓ ଦର୍ଶକ ଏହା ଦେଖି ବିମୋହିତ ହୋଇଯାନ୍ତି । ପ୍ରକୃତରେ ଖୋର୍ଦ୍ଧା ମାଟିର ବାସ୍ନାରୁ ବାରିହୋଇ ପଡେ ବୀରର ଝଲକ ଓ ବୀରତ୍ୱ ।

ବିଭିନ୍ନ ଶକ୍ତି ପୀଠମାନଙ୍କରେ ମା'ଙ୍କର ପୂଜା ଅର୍ଚ୍ଚନା ଚୈତ୍ର ତଥା ଆଶ୍ୱିନ ମାସରେ ବିଧିବଦ୍ଧ ଭାବରେ ମାସ ସାରା ପାଳନ କରାଯାଏ । ସ୍ତ୍ରୀଲୋକମାନେ ନିଜ ଘର ରାସ୍ତା ସାମନାରେ ଗାତଖୋଳି ମା'ଙ୍କ ଉଦ୍ଦେଶରେ ମନ୍ଦାରଫୁଲ ଓ ଗୁଡ, ଲିଆ, ବେଲ, ନଡିଆ, କଦଳୀ ପ୍ରଭୃତିରେ ପଣା ପ୍ରସ୍ତୁତ କରି ପୂଜା କରିଥାନ୍ତି ଓ ପରିବାରର ଶୁଭ ମନାସି ଥାଆନ୍ତି । ପୀଠମାନଙ୍କରେ ଝାମୁଯାତ୍ରା, ଦଣ୍ଡଯାତ୍ରା, ଧୂଳିଦଣ୍ଡ ଇତ୍ୟାଦି ପାଳନ କରାଯାଏ । ଭକ୍ତମାନେ ନିଜ ଶରୀରକୁ ଯାତନା ଦେଇ ବିଭିନ୍ନ କଠୋର ପରୀକ୍ଷାର ସମ୍ମୁଖୀନ ହୋଇଥାନ୍ତି । ସେମାନେ ଟାଣ ଖରାରେ ବାଲିରେ ଗଡନ୍ତି, ନିଆଁରେ ଚାଲନ୍ତି । ପ୍ରାୟ ୨୧ ଦିନଧରି ସାତ୍ତ୍ୱିକ ଭାବନା ଓ ଗୋଟିଏ ବେଳା ଅରୁଆ ଅନ୍ନ ଭକ୍ଷଣ କରି 'ଦଣ୍ଡଯାତ୍ରାରେ' ସାମିଲ ହୁଅନ୍ତି । ଏହାକୁ ମେରୁ ପର୍ବ ମଧ୍ୟ କହନ୍ତି । ପଣାସଂକ୍ରାନ୍ତିରେ ସେମାନେ ଉପବାସକୁ ଉଦ୍‌ଯାପିତ କରନ୍ତି । ଏହି ଯାତ୍ରାରେ ମା'ଦୁର୍ଗା କାଳୀ ଅବତାରରେ ଦଣ୍ଡଯାତ୍ରାରେ ପୂଜା ପାଆନ୍ତି ।

ଆଦିବାସୀ ବହୁଳ ଅଞ୍ଚଳ ମୟୂରଭଞ୍ଜ ଜିଲ୍ଲାର ଠାକୁରମୁଣ୍ଡା ଅଞ୍ଚଳରେ ଆଉ ଏକ ପର୍ବ ପାଳନ କରାଯାଏ । 'ମା' ବାଶୁଳୀ' ଠାକୁରାଣୀ ହେଉଛନ୍ତି ଠାକୁରମୁଣ୍ଡାର ଆରାଧ୍ୟା ଦେବୀ । ତାଙ୍କ ନାମରେ ଏକ ପ୍ରସିଦ୍ଧ ଯାତ୍ରା ପାଳନ ହୁଏ । ତାହା 'ଉଡାଯାତ୍ରା' ନାମରେ ବିଖ୍ୟାତ ଅଟେ । ଆଦିବାସୀଙ୍କ ଗହଣରେ ମା' ବାଶେଳୀ ଠାକୁରାଣୀ ପୂଜା ପାଆନ୍ତି । ଏହିଯାତ୍ରା ପଣା ସଂକ୍ରାନ୍ତିଠାରୁ ଆରମ୍ଭ ହୁଏ । ଏହା ମାନସିକ ଉପବାସ ହୋଇଥାଏ ଓ କଠୋର ଉପବାସରେ ରହି ଭକ୍ତମାନେ ଉଡାପର୍ବ ପାଳନ କରନ୍ତି । ଭକ୍ତମାନେ ଯେଉଁମାନେ ମାନସିକଧାରୀ ହୋଇଥାନ୍ତି, ସେମାନେ ନିଜ ପିଠିରେ, ମୁହଁରେ ଲୁହାକଣ୍ଟାରେ ଫୋଡି ନିଜ ଦେହକୁ କଷ୍ଟ ଦେଇ ମା'ଙ୍କର କରୁଣା ପାଇବା ପାଇଁ ବ୍ୟାକୁଳ ହୁଅନ୍ତି । ଏକ ବଡ ବାଉଁଶ ଦଣ୍ଡରେ ଆଉ ଏକ ବାଉଁଶକୁ ଯୋଖି ଦିଆଯାଏ । ଉପର ବାଉଁଶରେ ଭକ୍ତଙ୍କୁ ବାନ୍ଧି ଦିଆଯାଇ ସେଇ ବାଉଁଶକୁ ଦଣ୍ଡ ଚାରିପଟେ ଖୁବ୍ ଜୋରରେ ବୁଲାଯାଏ । ଦେଖଣାହାରୀମାନଙ୍କୁ ଏହା ଦେଖି ଯେତିକି ଭୟ ଲାଗେ ସେତିକି ମଧ୍ୟ ଆଶ୍ଚର୍ଯ୍ୟ ଲାଗେ । ଭକ୍ତଟିକୁ ମା'ଙ୍କ କୃପାରୁ ବିଶେଷ କଷ୍ଟ ଜଣାପଡେ ନାହିଁ । ଅନ୍ୟମାନଙ୍କ ମହିମା । ଚାରିଆଡେ ବିଭିନ୍ନ ଯାତ୍ରାପାଟି, ମେଲୋଡି, ମିନାବଜାର ଓ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ଚାଲେ ଓ ଲୋକମାନେ ଉପଭୋଗ କରନ୍ତି ମହାଆନନ୍ଦରେ ।

ବାଣପୁରର ଭଗବତୀ ପୀଠ ଶାରଦୀୟ ଦୁର୍ଗୋତ୍ସବ ଭାଦ୍ରବ କୃଷ୍ଣ ଅଷ୍ଟମୀ ତିଥିରୁ ଆରମ୍ଭ ହୋଇ ଆଶ୍ୱିନ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ଚାଲେ । ଏହା ତିନି ଭାଗରେ ବିଭକ୍ତ କରାଯାଇଥାଏ ଯଥା– ଭିତରପୂଜା, ବାହାର ପୂଜା ଓ ସନ୍ଧିପୂଜା । କାଳିଜାଈ, ବିରିଜାଈ, ସିଦ୍ଧାମ୍ବରୀ ଓ ପାଲକାଶୁଣୀ ଓ ନାରାୟଣୀଙ୍କୁ ନିମନ୍ତ୍ରଣ କରାଯାଏ । ମୂଳାଷ୍ଟମୀରୁ ଆଶ୍ୱିନ କୃଷ୍ଣ ଅମାବାସ୍ୟା ପର୍ଯ୍ୟନ୍ତ ଭିତର ପୂଜା ହୁଏ । ବାହାରପୂଜା ଆଶ୍ୱିନ ଶୁକ୍ଳ ପ୍ରତିପଦାରୁ ମହାଷ୍ଟମୀ ପର୍ଯ୍ୟନ୍ତ ହୁଏ । ସନ୍ଧିପୂଜା ଆଶ୍ୱିନ ଶୁକ୍ଳ ନବମୀରେ ଭଗବତୀ ମନ୍ଦିରରେ ହୁଏ ।

କାକଟପୁରସ୍ଥ ମଙ୍ଗଳାଙ୍କର ଆଶ୍ୱିନ କୃଷ୍ଣ ଅଷ୍ଟମୀଠାରୁ ଆଶ୍ୱିନ ଶୁକ୍ଳ ଅଷ୍ଟମୀ ପର୍ଯ୍ୟନ୍ତ ଷୋଡଶ ଦିବସ ଶାରଦୀୟ ପୂଜା ହୋଇଥାଏ । ମହା ନବମୀରେ ଶାନ୍ତିପୂଜା ଓ ଦଶହରା ଦିନ ସନ୍ଧ୍ୟାରେ ମା'ଙ୍କ ବିଜେ ପ୍ରତିମା କନକ ଦୁର୍ଗା ଓ ଚନ୍ଦ୍ରଶେଖର ଦେବଙ୍କୁ ବିମାନରେ ବସାଇ ସମେଶ୍ୱର ମନ୍ଦିରକୁ ନିଆଯାଏ । ସେଠାରେ ପୂଜା ପରେ ରାତିରେ ମଙ୍ଗଳା ମନ୍ଦିରକୁ ଫେରିଥାନ୍ତି ।

ଶ୍ରୀକ୍ଷେତ୍ରର ବିମଳା ମନ୍ଦିରରେ ମହାସପ୍ତମୀ, ମହାଅଷ୍ଟମୀ ଓ ମହାନବମୀରେ ସ୍ୱତନ୍ତ୍ର ପୂଜା କରାଯାଏ । ଝଙ୍କଡର ମା' 'ସାରଳା' ଅଷ୍ଟଭୁଜା ଦେବୀ ନାମରେ ବିଖ୍ୟାତ । ସେ ମା' ସରସ୍ୱତୀଙ୍କର ଅବତାର ଅଟନ୍ତି । ଦେବୀଙ୍କର ଶାରଦୀୟ ପୂଜା ଉତ୍ସବ ମୂଳାଷ୍ଟମୀଠାରୁ ଦଶହରା ବା ବିଜୟାଦଶମୀ ପର୍ଯ୍ୟନ୍ତ ପାଳନ କରାଯାଏ ।

ଆସୁରିକ ଶକ୍ତିର ବିନାଶ ତଥା ଧର୍ମ, ଅର୍ଥ, କାମ, ମୋକ୍ଷାଦି ପ୍ରାପ୍ତି ନିମନ୍ତେ ଦେବୀ ପୀଠରେ ଶ୍ରଦ୍ଧା ଓ ଭକ୍ତିର ସହିତ ଶତାବ୍ଦୀ ଶତାବ୍ଦୀ ଧରି ଶାରଦୀୟ ଦୁର୍ଗୋତ୍ସବ ପାଳନ ହୋଇଆସୁଛି । ପ୍ରତ୍ୟେକ ମଣିଷ ଶରଣାପନ୍ନ ହେବାହିଁ ଯଥାର୍ଥ ଉପାସନା ଅଟେ । ଏହି ବିଶାଳ ସଂସାର ମାୟାଜାଲରେ ଆବଦ୍ଧ । ବସ୍ତୁବାଦୀ ଦୁନିଆରେ ମଣିଷ ସବୁବେଳେ ସଂଘର୍ଷ କରିଚାଲିଛି । ଏହା ପୁରାଣ ଇତିହାସରେ ଦୃଷ୍ଟିଗୋଚର ହୋଇଥାଏ । ନିଜର ଉଦ୍ଧତ ସ୍ୱଭାବ, ତଥା ହିଂସା, ଦ୍ୱେଷ, ଗର୍ବ, ଅହଙ୍କାର, କାମୁକତା, ନୃଶଂସତା ପାଇଁ ବିଖ୍ୟାତ ଥିଲା ଅସୁର ସମ୍ରାଟ ମହିଷାସୁର । ସମଗ୍ର ଦାନବ, ମାନବ, ଦେବତାପୁରୀ ତା ନୃଶଂସତାରେ ଥରହର ହେଉଥିଲା ।

ତା' ଉତ୍ପାତକୁ କେହି ଦମନ କରିବାକୁ ସାହସ କରୁନଥିଲେ, ସମସ୍ତେ ତ୍ରାହି ତ୍ରାହି ଡାକୁଥିଲେ । ଶେଷରେ ସମସ୍ତ ଦେବତାଙ୍କର ସମ୍ମିଳିତ ପ୍ରାର୍ଥନାରେ ମା' ଦୁର୍ଗାଙ୍କର ଜନ୍ମ ହୋଇଥିଲା । ମା' ଦୁର୍ଗେ ମହିଷାସୁରକୁ ବଧ କଲେ ।

ଦଶହରାକୁ ବିଜୟା ଉତ୍ସବ ବା ବିଜୟା ଦଶମୀ ନାମରେ ଉଲ୍ଲେଖ୍ୟ କରାଯାଇଛି । ପବିତ୍ର ଦଶହରା ଭଗବାନ ଶ୍ରୀରାମଚନ୍ଦ୍ର ମାତୃଦେବୀ ବନଦୁର୍ଗାଙ୍କୁ ସ୍ତୁତିକରି ରାବଣର ନିଧନ ଉଦ୍ଦେଶ୍ୟରେ ଲଙ୍କା ଅଭିମୁଖେ ବିଜୟ ଯାତ୍ରା କରିଥିବାରୁ ଏହି ତିଥିକୁ ବିଜୟା ଦଶମୀ କୁହାଯାଏ । ଶୁକ୍ଳ ଦଶମୀରେ ସବୁ ପ୍ରକାର ଶୁଭ କାର୍ଯ୍ୟର ଆରମ୍ଭ ହେଲା । ଏହିଦିନ ଜଗତର ଦୁଃଖ ଅପସରି ଯାଇଥିଲା । ଏ ସବୁର ଚମତ୍କାର ବର୍ଣ୍ଣନା ଶୁଦ୍ରମୁନି ସାରଳା ଦାସ ଚଣ୍ଡୀପୁରାଣରେ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ଦଶହରା ଦିନ ଭାରତର ଅନେକ ସ୍ଥାନରେ ରାବଣ ପୋଡି ଉତ୍ସବ ପାଳନ କରାଯାଏ ।

କଟକ ନଗର 'ଶାରଦୀୟ ଦୁର୍ଗାପୂଜା' ପାଇଁ ଓଡ଼ିଶାରେ ପ୍ରସିଦ୍ଧି ଲାଭ କରିଅଛି । ଏଠାରେ ଶହ ଶହ ମୂର୍ତ୍ତି, ଅପୂର୍ବ ସାଜସଜ୍ଜା ରୋଷଣୀ, ବାଣରେ ଉତ୍ସବ ମୁଖରିତ ହୁଏ । କଟକର ଚାନ୍ଦିମେଢ ତାରକଷି ବିଶ୍ୱ ପ୍ରସିଦ୍ଧ ଅଟେ । ଏହି ଅଞ୍ଚଳର ଭାଇଚାରା ଧାରାରେ ସମସ୍ତେ ନିମଜ୍ଜିତ ରହିଥାଆନ୍ତି ।

ଏହା ଛଡା କୋଲକାତାର 'ଦୁର୍ଗାପୂଜାରେ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ । ବେଙ୍ଗଲୀ ଲୋକମାନଙ୍କର ଆରାଧ୍ୟ ଦେବୀ ମା' ଦୁର୍ଗା ଅଟନ୍ତି । ତେଣୁ ସେମାନେ ବର୍ଷକରେ ଥରେ ଏହି ପର୍ବକୁ ମହାସମାରୋହରେ ଓ ଆନନ୍ଦରେ ପାଳନ କରିଥାଆନ୍ତି ।

କୁହାଯାଏ, ମାନସିକ ପୂରଣ ପାଇଁ ଦେବୀଙ୍କ ନିକଟରେ ପଶୁ, ପକ୍ଷୀ ବଳିଦେଲେ ମା' ଖୁସି ହୋଇ ଆଶୀର୍ବାଦ ଢାଳି ଦେଇଥାନ୍ତି । କିନ୍ତୁ ଦେବୀଙ୍କ ନାମରେ ସ୍ୱାର୍ଥପର ମଣିଷ ଜାତି ନିରୀହ ପଶୁପକ୍ଷୀଙ୍କୁ ବଳିଦେଇ ନିଜର ଜିଭ ଲାଳସାକୁ ଚରିତାର୍ଥ କରୁଛି । ସେ ଜଗଜ୍ଜନନୀ, ପ୍ରେମ ପ୍ରଦାୟିନୀ, ସେ କିପରି ନିଜ ସନ୍ତାନର ରକ୍ତ, ମାଂସ, ଚାହିଁବେ ? ନାରୀ ଆମ ସମାଜରେ ମା, ଭଗିନୀ, ୨୦୦୧ ମସିହାରେ ଭାରତରେ 'ନାରୀ ସଶକ୍ତୀକରଣ' ଧାରା ଆରମ୍ଭ ହୋଇଥିଲା । ମା' ନିକଟରେ ବଳି ଗର୍ବ, ଅହଂଙ୍କାର, ହିଂସା, ନିଷ୍ଠୁରତା ଆଦି ଦୁର୍ଗୁଣଗୁଡିକୁ ଦେଇ ତାଙ୍କର ପୟରରେ ନିଜକୁ ସମର୍ପିତ କରିବା ହିଁ ଯଥାର୍ଥ ପୂଜା ଉପାସନା । ସେ ମହାଶକ୍ତି, ଜ୍ଞାନ ଦାୟିନୀ, ପ୍ରେରଣାଦାୟିନୀ, ଅସୀମ ଶକ୍ତି ଦାୟିନୀ ଓ କରୁଣାକାରିଣୀର ସ୍ରୋତ ।

ଯୁଗେ ଯୁଗେ ସେ ଦୁଷ୍ଟକୁ ସଂହାରି ଥାଆନ୍ତି । ତେଣୁ ସେ ବିଭିନ୍ନ ରୂପରେ ଯଥା: କାଳୀ, ଚଣ୍ଡୀ, କାତ୍ୟାୟିନୀ ରୂପେ ଆର୍ବିଭାବ ହୁଅନ୍ତି ।

ନାରୀ ସୃଷ୍ଟିକର୍ତ୍ତା । ସୃଷ୍ଟି ଯେତେବେଳେ କୌଣସି ଆସୁରିକ ଶକ୍ତି ଦ୍ୱାରା ଅତ୍ୟାଚାରିତ ଓ ପୀଡିତ ହୁଏ, ସେତେବେଳେ ଦେବୀଶକ୍ତିର ଆର୍ବିଭାବ ହୋଇ ମାତୃଶକ୍ତି ଭାବରେ ଦୃଷ୍ଟ ଶକ୍ତିକୁ ବିନାଶ କରିଥାଏ । ତେଣୁ ସେ ଦୁର୍ଗତିନାଶିନୀ ଅଟନ୍ତି ।

ମା' ଶକ୍ତିମୟୀ ସକଳ ଶକ୍ତିର ମୂଳମନ୍ତ୍ର । ଏ ସମାଜ, ଏ ଦେଶ, ଏ ପୃଥିବୀ ଆଜି କଳିର ବାହୁରେ କରାୟତ । ତେଣୁ ଏ ସଂସାର ଧ୍ୱଂସାଭିମୁଖୀ, ଏ ସମାଜ ପଥଭ୍ରଷ୍ଟ, ନାରୀର ସୁରକ୍ଷା ପାଇଁ ଜଗଦ୍‌ଜନନୀ ମା'ଙ୍କ ନିକଟରେ ଏତିକି ପ୍ରାର୍ଥନା । ସମସ୍ତେ ମା'ଙ୍କର ସନ୍ତାନ । ତେଣୁ ସମସ୍ତଙ୍କ ପ୍ରତି ସଦାସର୍ବଦା ଆଶୀର୍ବାଦ ରହୁ । ତୁମ ଚରଣରେ ଆମେ ସମସ୍ତେ ନତମସ୍ତକ । ଏ ସଂସାର ଉପରେ ତୁମରି କରୁଣା ବର୍ଷିଯାଉ । ଏତିକି ତୁମଠାରେ ଆମର ଅଳି ଓ ନିବେଦନ ।

ରାଜନୀତି ବିଜ୍ଞାନ ବିଭାଗ
ସୋମନାଥ ବାଲୁଙ୍କେଶ୍ୱର ଦେବ
ଜୁନିୟର ମହିଳା ମହାବିଦ୍ୟାଳୟ
କଣ୍ଟିଆ, ଜଟଣୀ, ଖୋର୍ଦ୍ଧା

❖ ❖ ❖

# ସାର୍ବଜନୀନ ଦୁର୍ଗାପୂଜା ଓ ଆମେ

**ସତ୍ୟନାରାୟଣ ସେଠ**

ଶାରଦୀୟ ଦୁର୍ଗାପୂଜା–ସାର୍ବଜନୀନ ଦୁର୍ଗାପୂଜା । ଦେବୀ ପୂଜା, ମା'ଙ୍କ ପୂଜା । ପୂର୍ବେ ସୀମିତ ସ୍ଥାନରେ ଅତି ନୈଷ୍ଠିକ ଭାବରେ ପାଳନ କରାଯାଉଥିଲା । ଧୀରେ ଧୀରେ ପ୍ରସାର ହୋଇ ବର୍ତ୍ତମାନ ପୁରପଲ୍ଲୀ ସହର ସବୁ ସ୍ଥାନରେ ଭାରି ଜାକଜମକରେ ପାଳନ କରାଯାଉଛି । ପୂଜା ସମୟରେ ପୁରପଲ୍ଲୀ ଗ୍ରାମ, ସହର ଚାରିଆଡେ ଆନନ୍ଦ ଉଲ୍ଲାସରେ ସମସ୍ତେ ମା'ଙ୍କ ପୂଜାରେ ଲାଗିପଡନ୍ତି । ଦେଢ଼ ଦୁଇମାସ ପୂର୍ବରୁ ପୂଜା ପାଇଁ ଆୟୋଜନ ଚାଲେ । ପୂର୍ବେ ବୟସ୍କ ତଥା ପୁରୁଖା ବ୍ୟକ୍ତିମାନଙ୍କ ତତ୍ତ୍ୱାବଧାନରେ ନୈଷ୍ଠିକ ଭାବରେ ଏହି ପୂଜା କରାଯାଉଥିଲା । ପୂଜାର ପ୍ରଭାବରେ ମା'ତ ସନ୍ତୁଷ୍ଟ ହେଉଥିଲେ ନିଶ୍ଚୟ– ପରିବେଶ ବିଶେଷକରି ବାୟୁମଣ୍ଡଳ ପରିଷ୍କାର ହେଉଥିଲା । ଫଳରେ ପୃଥିବୀ ଶାନ୍ତ ରହୁଥିଲା । ପୃଥିବୀ ଶାନ୍ତ ରହିଲେ ପୃଥିବୀବାସୀ (ସମସ୍ତ ଜୀବଜଗତ ସହିତ ଉଦ୍ଭିଦ ଜଗତ) ସମସ୍ତେ ରହୁଥିଲେ ସୁଖ, ଶାନ୍ତିରେ ।

ଆଗ ଅପେକ୍ଷା ଆଜିକାଲି ପୂଜାରେ ବହୁ ଆଡମ୍ବର ସହିତ ବହୁଗୁଣରେ ଅନେକ ଖର୍ଚ୍ଚ କରାଯାଉଛି । ଶହ କିମ୍ବା ହଜାର ନୁହେଁ, ଲକ୍ଷାଧିକ । ବିଭିନ୍ନ ଆକାରରେ ଅର୍ଥ ସଂଗ୍ରହ କରାଯାଉଛି । ଖର୍ଚ୍ଚ ମଧ୍ୟ ସେହିପରି କରାଯାଉଛି । ଗ୍ରାମ ହେଉ କି ସହର– ପୂଜା ମଣ୍ଡପ, ବିଭିନ୍ନ ତୋରଣ (ଗେଟ୍) ଆଦିଗୁଡିକର ସାଜସଜ୍ଜା ଦେଖିଲେ ଆଖି ଝଲସି ଯାଉଛି । କାରିଗର/ ଶିଳ୍ପୀମାନଙ୍କର ଅକ୍ଲାନ୍ତ ପରିଶ୍ରମରେ ମଣ୍ଡପ ଏବଂ ତୋରଣଗୁଡିକର କାରୁକାର୍ଯ୍ୟ ଜୀବନ୍ତ ପ୍ରତ୍ୟୟମାନ ହେଉଛି । ଶିଳ୍ପୀଙ୍କ କଳାକୁଶଳତାରେ ମୂର୍ତ୍ତିଗୁଡିକ ଜୀବନ୍ତ ହୋଇ ଉଠୁଛନ୍ତି । ଖୁସିର କଥା– ବର୍ତ୍ତମାନ ଆଉ ହିନ୍ଦୁମାନଙ୍କ ଭିତରେ ସୀମିତ ନହୋଇ ସବୁ ଧର୍ମର ଭାଇ ଭଉଣୀ ମିଶି ମା'ଙ୍କ ପୂଜାରେ ଲାଗି ପଡିଲେଣି– ଭାଇଚାରାର ସମ୍ପର୍କ ବୃଦ୍ଧି ପାଇଛି । ମା'ଙ୍କ ପାଖରେ ସମସ୍ତେ ସମାନ – ସେ ସମସ୍ତଙ୍କୁ ସମାନ ଦେଖନ୍ତି । ସାର୍ବଜନୀନ ଦୁର୍ଗାପୂଜାର ନାମ ସାର୍ଥକ ହୋଇଛି ।

ପୂଜାରେ ମା'ଙ୍କୁ ଆହ୍ୱାନ କରି ପୁଣି 'ସ୍ୱ ସ୍ଥାନ ଗଚ୍ଛ' କହି ବିସର୍ଜନ କରିଦିଆଯାଏ । ମା'ଙ୍କୁ ଆମେ ଆହ୍ୱାନ କରୁ– ପୁଣି ତାଙ୍କୁ ବିସର୍ଜନ ? ମା' ପାଖରେ ପୁଅ ଏବଂ ପୁଅ ପାଖରେ ମା' ଛାଇ ପରି ସଦାସର୍ବଦା ରହି ଆସିଛନ୍ତି । ମା' ବିନା ପୁଅ କିମ୍ବା ପୁଅ ବିନା ମା' ଅସମ୍ଭବ ! ଏହି ଅସମ୍ଭବକୁ କାହିଁକି ମାତ୍ର ତିନୋଟି ଶବ୍ଦ (ପଦ) 'ସ୍ୱ ସ୍ଥାନ ଗଚ୍ଛ' ଉଚ୍ଚାରଣ କରି ସମ୍ଭବ କରାଯାଉଛି । ସନ୍ତାନ ସନ୍ତତିଙ୍କଠାରୁ ମା'ଙ୍କୁ ଦୂରେଇ ଦିଆଯାଉଛି । ବୁଝିବା, ବୁଝେଇବା ଏବଂ ସାନ୍ତ୍ୱନା ପାଇଁ କୁହାଯାଇପାରେ– ଅନ୍ତତଃ ବର୍ଷକ ପାଇଁ । ଫଳରେ ଜାଣତରେ ହେଉ ବା ଅଜାଣତରେ– ସମସ୍ତ ଜୀବଜଗତ, ଉଦ୍ଭିଦ ଜଗତ ତଥା ସମଗ୍ର ପ୍ରକୃତିର ଅପୂରଣୀୟ କ୍ଷତି, ଅଶୁଭ ଲକ୍ଷଣ, ଅମଙ୍ଗଳ ସୂଚନା, ଅଶାନ୍ତ ବାତାବରଣ ପରିଲକ୍ଷିତ ହେଉଛି । ଏହାକୁ ପ୍ରକାଶ କରୁ ନଥିଲେ ମଧ୍ୟ ସମସ୍ତେ ଉପଲବ୍ଧି ତଥା ହୃଦୟଙ୍ଗମ କରୁଛନ୍ତି । ଏହାର ସ୍ଥାୟୀ ବ୍ୟବସ୍ଥା ନିତାନ୍ତ ଜରୁରୀ । ତେଣୁ ସମସ୍ତ ଆୟୋଜକ ମଣ୍ଡଳୀ, କର୍ମକର୍ତ୍ତା, ଭକ୍ତ, ସାଧାରଣ ଜନତା, ସମସ୍ତେ ଏଥିପାଇଁ ବିହିତ ପଦକ୍ଷେପ ନେବାପାଇଁ ମୋର ଅନୁରୋଧ ।

ପାଳିତ ହେଉଥିବା ପୂଜାସ୍ଥାନ ବା ମଣ୍ଡପଗୁଡିକ ସାଧାରଣତଃ ପ୍ରତ୍ୟେକ ବର୍ଷ ନିର୍ଦ୍ଦିଷ୍ଟ ସ୍ଥାନରେ ହିଁ ପୂଜା କରାଯାଇଥାଏ ଏବଂ ଅନେକ ସ୍ଥାନ ଯଦିଓ ଅସ୍ଥାୟୀ, ସ୍ଥାୟୀ ଭାବରେ ବେଦୀ (ମଣ୍ଡପ) ଏପରିକି ଘର ମଧ୍ୟ ନିର୍ମାଣ କରାଯାଇଛି, ଯେଉଁଥିରେ କି ପୂଜା ସମୟର ସାଜସଜ୍ଜା କରିବା ପାଇଁ ସମସ୍ତ ସୁବିଧା ରହିଥାଏ । ଆଞ୍ଚଳିକ ରେଜେଷ୍ଟ୍ରିଭୁକ୍ତ ସ୍ଥାୟୀ କମିଟି ଗଠନ କରି ନର୍ଦ୍ଦିଷ୍ଟ ସ୍ଥାନକୁ ବିଧିବଦ୍ଧ ଭାବରେ ପ୍ରଥମେ

ସ୍ଥାୟୀ କରାଯାଉ । କମିଟିରେ ପୁରୁଖା, ବୁଦ୍ଧିଜୀବୀ, ଦାୟିତ୍ୱବାନ, ନିଷ୍ଠାବାନ, ଅନୁଭବୀ ତଥା ଆଧ୍ୟାତ୍ମିକ ଚେତନା ସମ୍ପନ୍ନ ବ୍ୟକ୍ତିଙ୍କୁ ଅଗ୍ରାଧିକାର ଭିତ୍ତିରେ ସଭ୍ୟରୂପେ ଚୟନ କରିବା ସହିତ ସେମାନଙ୍କ ଭିତରୁ ସମୟ ଦେଇ ପାରୁଥିବା ବ୍ୟକ୍ତିଙ୍କୁ ମୁଖ୍ୟ (ସଭାପତି/ ଚେୟାରମ୍ୟାନ) ତଥା ସମ୍ପାଦକ/ସଚିବ ଭାବରେ ମନୋନୀତ କରିବା ଉଚିତ୍ । ସମ୍ବଲପୁରର ଗୋଲବଜାର, ବଡବଜାର, ଶକ୍ତିଛକ ତଥା ଝାରସୁଗୁଡା ଷ୍ଟେସନ ପାଖରେ ସ୍ଥାୟୀ ଦୁର୍ଗା ମନ୍ଦିର ତଥା ସ୍ଥାୟୀ ବିଗ୍ରହ ସ୍ଥାପନ କରି ପ୍ରତ୍ୟହ ନୀତି ଅନୁସାରେ ସମସ୍ତ ଧୂପ, ଦୀପ, ଆଳତୀ, ଚାମର, ଭୋଗ, ପର୍ବପର୍ବାଣି ପାଳନ କରାଯାଉଛି । ସକାଳ ତଥା ସନ୍ଧ୍ୟା ଆଳତୀ ବହୁତ ଚିତ୍ତାକର୍ଷକ, ହୃଦୟସ୍ପର୍ଶୀ ତଥା ଆନନ୍ଦଦାୟକ । ଦୁର୍ଗାପୂଜା ହେଉଥିବା ସମସ୍ତ ସ୍ଥାନରେ ସେହିଭଳି ସ୍ଥାୟୀ ମନ୍ଦିର ତଥା ସ୍ଥାୟୀ ମୂର୍ତ୍ତି ସ୍ଥାପନ କରି ପ୍ରତ୍ୟହ ପୂଜା କରିବାର ବ୍ୟବସ୍ଥା କରାଯାଉ । ମୂର୍ତ୍ତିଗୁଡିକ ପଥର, ମାଟି, କାଠ, ସିମେଣ୍ଟ, ମାର୍ବଲ କିମ୍ବା ଅଷ୍ଟଧାତୁ ମଧ୍ୟ ହୋଇପାରେ । ଅନେକ ସ୍ଥାନରେ ହେଉଥିବା ଚାନ୍ଦିମେଢ଼ ତଥା ସୁନା ମୁକୁଟ ମା'ଙ୍କ ସ୍ଥାୟୀ ବିଗ୍ରହକୁ ଆହୁରି ସୁନ୍ଦର, ଆକର୍ଷଣୀୟ କରିଥାଏ । ମା'ଙ୍କ ମନ୍ଦିର ତଥା ପ୍ରତ୍ୟହ ପୂଜାଦି ସକାଶେ ପାଣ୍ଠିର ଆଦୌ ଅଭାବ ବା ଅସୁବିଧା ହେବନାହିଁ କି କୌଣସି ପ୍ରକାରର ଚିନ୍ତା କରିବାକୁ ପଡିବ ନାହିଁ । ଆପେ ଆପେ ପାଣ୍ଠି ସଂଗ୍ରହ ହୋଇ ନିର୍ମାଣ କାର୍ଯ୍ୟ ଆଗେଇ ଯିବ ।

ଏହାଦ୍ୱାରା ମା'ଙ୍କ ବହୁ ନିକଟତର ହୋଇ ଛୋଟଠାରୁ ବଡ ସମସ୍ତଙ୍କ ମନରେ ଆଧ୍ୟାତ୍ମିକ ଚିନ୍ତାଧାରା ବଢ଼ିବ– ସତ୍ ଚିନ୍ତା ଆସିବ, ସାମାଜିକ ସ୍ତରରେ ଉନ୍ନତି ଘଟିବ, ସମାଜ ଆଗେଇବ ।

ପୂଜା/ସେବା ପାଇଁ ପୂଜାକର୍ମ ଜ୍ଞାନ ସମ୍ପନ୍ନ ତଥା ମା'ଙ୍କ ପାଖକୁ ଆସୁଥିବା ଭକ୍ତମାନଙ୍କୁ ମାର୍ଗଦର୍ଶନ ତଥା ସନ୍ତୁଷ୍ଟ କରି ପାରୁଥିବା ଦାୟିତ୍ୱ ସମ୍ପନ୍ନ ଉପଯୁକ୍ତ ବ୍ୟକ୍ତିଙ୍କୁ ପୂଜକ ଭାବରେ ବଂଶାନୁକ୍ରମେ ନ ହୋଇ ପରିଚାଳନା କମିଟି ଗଠନ କରିଥିବା ନିଯୁକ୍ତି କମିଟି ଦ୍ୱାରା ଇଣ୍ଟରଭ୍ୟୁ ମାଧ୍ୟମରେ ନିଯୁକ୍ତି କରାଯିବାର ବ୍ୟବସ୍ଥା ସହିତ ସେମାନଙ୍କର ଉଚିତ୍ ପାରିଶ୍ରମିକ ବ୍ୟବସ୍ଥା ରହୁ । ଆବଶ୍ୟକ ସ୍ଥଳେ ଅନ୍ୟାନ୍ୟ ସେବାୟତମାନଙ୍କ ପାରିଶ୍ରମିକ ସହିତ ନିଯୁକ୍ତି ବ୍ୟବସ୍ଥା ରହୁ । ଭକ୍ତ ସମାଗମ ଅନୁସାରେ ସେମାନଙ୍କର ସଂଖ୍ୟା ମଧ୍ୟ ସ୍ଥିର ହେବା ଉଚିତ୍ । ପୂଜା ତାମସିକ ନହୋଇ ବିଧିବିଧାନ, ନିଷ୍ଠା ଭକ୍ତିପୂତ ତଥା ଆନ୍ତରିକତା ସହିତ ହେଉ ଏବଂ ଆବଶ୍ୟକ ସ୍ଥଳେ ସଂସ୍କାରମୂଳକ ପଦକ୍ଷେପମାନ ନିଆଯାଉ । ପୂଜା / ସେବା କାର୍ଯ୍ୟ, ନୀତି ନିର୍ଦ୍ଧାରଣ, ପର୍ବପର୍ବାଣି, ସାଜସଜ୍ଜା, ନିୟମାବଳୀ, ସମୟ ନିର୍ଘଣ୍ଟ ତଥା ସର୍ତ୍ତାବଳୀ ସହିତ ମଝିରେ ମଝିରେ ସେଗୁଡିକର ସମୀକ୍ଷା କରାଯାଇ ବିହିତ ପଦକ୍ଷେପମାନ ଗ୍ରହଣ କରାଯାଉ । ସର୍ବୋପରି ସରକାରଙ୍କ ଏଣ୍ଡୋମେଣ୍ଟ କମିଶନଙ୍କ ଦ୍ୱାରା ଆୟବ୍ୟୟ ଆଦିର ସମୀକ୍ଷା ମଧ୍ୟ କରାଯାଇ ତା'ର ଉତ୍ତରଦାୟୀ ରହିବାର ବ୍ୟବସ୍ଥା ହେଉ । ଏହାଦ୍ୱାରା ସହରଠାରୁ ଗ୍ରାମ ପର୍ଯ୍ୟନ୍ତ ବହୁ ସଂଖ୍ୟାରେ ପୂଜକ ତଥା ଅନ୍ୟାନ୍ୟ ସେବାୟତ ନିଯୁକ୍ତ ହୋଇପାରିବେ ।

ଦ୍ୱିତୀୟରେ, ହେଉଥିବା ବିରାଟ ବିରାଟ ତୋରଣମାନ କାଠ, ବାଉଁଶ, କନା, କାଗଜ ଆଦିରେ ନକରି ସେଗୁଡିକ ମଧ୍ୟ ସ୍ଥାୟୀ ଭାବରେ ପଥର, ସିମେଣ୍ଟ, ମାର୍ବଲ ଆଦିରେ ହେଉ । ଫଳରେ ଅଞ୍ଚଳର ଶିଳ୍ପୀମାନଙ୍କର ସ୍ଥାପତ୍ୟ, କଳା, ସଂସ୍କୃତି ଆଦି ସ୍ଥାୟୀ ହୋଇ ସେଗୁଡିକ ଭବିଷ୍ୟତ ବଂଶଧରକୁ ଅନୁପ୍ରାଣିତ କରିବ । ପ୍ରତ୍ୟେକ ବର୍ଷ ଧ୍ୱଂସ ପାଉଥିବା ବାଉଁଶ ବୃକ୍ଷ ଆଦି ଆଉ କଟା ନହୋଇ ଜଙ୍ଗଲ ସୁରକ୍ଷା ତଥା ପୁନରୁଦ୍ଧାର କରାଯାଇ ପ୍ରଦୂଷଣକୁ ରୋକାଯାଇ ପାରିବ । ପ୍ରଦୂଷଣ ରୋକାଯାଇ ପାରିଲେ ପୃଥିବୀ ଶାନ୍ତ ରହିବ, ପୃଥିବୀ ଶାନ୍ତ ରହିଲେ ପୃଥିବୀବାସୀ ଶାନ୍ତିରେ ରହିବେ । ହେଉଥିବା ଅଜସ୍ର ଖର୍ଚ୍ଚ, ପରିଶ୍ରମ, ଚିନ୍ତା ଆଦି ମଧ୍ୟ ବହୁଳ ଭାବରେ କମିଯିବ ।

ଦୁର୍ଗାପୂଜା ପାଇଁ ସହର, ପୁରପଲ୍ଲୀ ସମସ୍ତ ସ୍ଥାନରେ ଆୟୋଜନ ଆରମ୍ଭ ହୋଇଗଲାଣି । ଆୟୋଜକମାନେ ଆବଶ୍ୟକୀୟ ସଭାସମିତି କରି ପାଣ୍ଠି ପାଇଁ ଚାନ୍ଦା ଆଦାୟ ଆରମ୍ଭ କରିଦେଲେଣି । ଶିଳ୍ପୀମାନେ ମା'ଙ୍କ ମୂର୍ତ୍ତି ନିର୍ମାଣରେ ଲାଗି ପଡିଲେଣି । ମଣ୍ଡପ, ତୋରଣ, ସାଜସଜ୍ଜା ପାଇଁ ଆବଶ୍ୟକ ସରଞ୍ଜାମ ପାଇଁ ଅଗ୍ରୀମ ଦିଆ ହେଲାଣି । ନାଚ, ଗୀତ, ବାଜା ପାଇଁ ମଧ୍ୟ ବରାଦ ହେଲାଣି । ବର୍ତ୍ତମାନ ପୂଜା ପାଇଁ ସମସ୍ତେ ତତ୍ପର । ଦୁର୍ଗାପୂଜା ହେଉଥିବା ପ୍ରତ୍ୟେକ ମଣ୍ଡପ/ସ୍ଥାନରେ ମା'ଙ୍କ ସ୍ଥାୟୀ ମନ୍ଦିର ତଥା ସ୍ଥାୟୀ ବିଗ୍ରହ ଥାପନା କରି ପ୍ରତ୍ୟହ ପୂଜା ବ୍ୟବସ୍ଥା କରି ମା'ଙ୍କ ସାନ୍ନିଧ୍ୟ ଲାଭ କରିବା ପାଇଁ ସମସ୍ତ ଦୁର୍ଗାପୂଜା ଆୟୋଜକ ମଣ୍ଡଳୀ, କର୍ମକର୍ତ୍ତା, ଭକ୍ତ, ସାଧାରଣ ଜନତା ସମସ୍ତଙ୍କୁ ମୋର ଅନୁରୋଧ । ମା'ଙ୍କୁ ପ୍ରଣାମ, ଶୁଭ ଦଶହରା ।

ଏମ୍.ଆଇ.ଜି–୧, ୧୧/୧୯
ବିଡିଏ କଲୋନୀ, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର–୭୫୧୦୧୬

# ଦୁର୍ଗାପୂଜା ଓ ଦଶହରା

ଅଧ୍ୟାପକ ଉଦୟନାଥ ତ୍ରିପାଠୀ

ଭାରତୀୟ ସଭ୍ୟତାରେ ଦୁର୍ଗାପୂଜା ଓ ଦେବୀ ପୂଜାର ପରମ୍ପରା ମହେଞ୍ଜୋଦାରୋ ସଭ୍ୟତା ପ୍ରାରମ୍ଭଠାରୁ ପ୍ରଚଳିତ ଥିବାର ବହୁଧା ପ୍ରମାଣ ପ୍ରାପ୍ତ ହୋଇଥାଏ । ବେଦ, ଧର୍ମଶାସ୍ତ୍ର ଓ ପୁରାଣମାନଙ୍କୁ ଭିତ୍ତିଭୂମି ରୂପେ ଆଧାର କଲେ ମାତୃଗଣଙ୍କ ଏକ ମାର୍ଜିତ ପୂଜା ପଦ୍ଧତି ଗୁପ୍ତ ଶାସକ କୁମାର ଗୁପ୍ତ (ପ୍ରଥମ)ଙ୍କ ସମୟରୁ ଆରମ୍ଭ ହୋଇଥିଲା ବୋଲି ଗଙ୍ଗାଧର ଶିଳାଲେଖରୁ ସୂଚନା ମିଳିଥାଏ । ମାର୍କଣ୍ଡେୟ ପୁରାଣ ବର୍ଣ୍ଣନା ଅନୁଯାୟୀ ଦେବୀ ଅମ୍ବିକା ଶୁମ୍ଭ, ନିଶୁମ୍ଭ ଓ ଅନ୍ୟ ସହଯୋଗୀ ଅସୁରଙ୍କୁ ବଧ କରିଥିଲେ । ସେହିପରି ବରାହ ପୁରାଣରୁ ଜଣାଯାଏ ଯେ, ଶିବ ଅନ୍ଧକାସୁରକୁ ହତ୍ୟା କଲାବେଳେ ତାଙ୍କ ପାଇଁ ସୃଷ୍ଟି ହୋଇଥିଲା ଏକ ଭୟଙ୍କର ସମସ୍ୟା । ମାତ୍ର ମିଳିତ ଦେବଶକ୍ତିମାନେ ଏହି ସମସ୍ୟାର ସମାଧାନ କରିପାରିଥିଲେ । ଏପରି ପରିସ୍ଥିତି ମଧ୍ୟ ବ୍ରହ୍ମାଙ୍କ ନୈରୁତାସୁରକୁ ଯୁଦ୍ଧରେ ବଧ କରିବା ସମୟରେ ସୃଷ୍ଟି ହେବାରୁ ଦେବତାମାନେ ନିଜ ନିଜର ଶକ୍ତିକୁ ପ୍ରଦାନ କରି ଏହି ସମସ୍ୟାର ସମାଧାନ କରିବାର ବର୍ଣ୍ଣନା ଅଂଶୁମଦ୍‌ଭେଦାଗମ ଗ୍ରନ୍ଥର ବର୍ଣ୍ଣନାରୁ ମିଳିଥାଏ ।

ବିଭିନ୍ନ ଗ୍ରନ୍ଥ ଓ ପୁରାଣରେ ମାତୃକାଗଣଙ୍କ ଆଖ୍ୟାନ ଉଲ୍ଲେଖ ଅଛି । ବ୍ରାହ୍ମଣୀ, ବୈଷ୍ଣବୀ, ରୁଦ୍ରାଣୀ, ଇନ୍ଦ୍ରାଣୀ, କୌମାରୀ, ବାରାହୀ ଓ ନାରସିଂହୀ ନାମକ ସପ୍ତମାତୃକାମାନଙ୍କ ବର୍ଣ୍ଣନା ଉପଲବ୍ଧ ହୋଇଥିବା ସ୍ଥଳେ ଅନ୍ୟ କେତେକ ପୁରାଣରେ ଷୋଡଶ ମାତୃକା, ଅଷ୍ଟମାତୃକା, ଏକାଦଶ ମାତୃକାଙ୍କ ବର୍ଣ୍ଣନା କରାଯାଇଛି ।

ପ୍ରଥମାବସ୍ଥାରେ ଦ୍ୱିଭୁଜା ଦୁର୍ଗା ବା ଦେବୀଙ୍କୁ ପୂଜା କରାଯାଉଥିଲା । କାଳକ୍ରମେ ଏହି ଦେବୀମୂର୍ତ୍ତିଙ୍କ ହସ୍ତ ସଂଖ୍ୟା, ଚାରି, ଛଅ, ଆଠ, ଦଶରୁ ବୃଦ୍ଧି ପାଇ ଏହା ଷୋଡଶ ହସ୍ତରେ ରୂପାନ୍ତରିତ ହେଲା । ବର୍ତ୍ତମାନ ଭାରତର ବିଭିନ୍ନ ସ୍ଥାନରେ ବିଶେଷ ରୂପେ ଉତ୍ତର ଭାରତରେ ନବଦୁର୍ଗାଙ୍କୁ ଦୁର୍ଗାପୂଜାର ବିଭିନ୍ନ ତିଥି ଅନୁଯାୟୀ ସ୍ୱତନ୍ତ୍ର ରୂପେ ପୂଜନ କରାଯାଇଥାଏ । ପ୍ରଥମ ଦିବସର ପୂଜାରେ ମା ଶୈଳପୁତ୍ରୀ (ପାର୍ବତୀ)ଙ୍କ ପୂଜା କରାଯାଇଥାଏ । ଦ୍ୱିତୀୟ ଦିନ ସେହିପରି ବ୍ରହ୍ମଚାରିଣୀ । ତୃତୀୟ ଦିନ ମା' ଚନ୍ଦ୍ର ଘଣ୍ଟା, ଚତୁର୍ଥ ଦିନ ମା କୁଷ୍ମାଣ୍ଡ, ପଞ୍ଚମ ଦିନ ସନ୍ଧାମାତା, ଷଷ୍ଠଦିନ କାତ୍ୟାୟନୀ, ସପ୍ତମ ଦିନ ମା' କାଳରାତ୍ରି, ଅଷ୍ଟମ ଦିନ ମା' ଦୁର୍ଗା ଓ ନବମ ଦିନ ମା ସିଦ୍ଧିଦାତ୍ରୀଙ୍କର ଉପାସନା କରାଯାଇଥାଏ ।

ମା' ଦୁର୍ଗାଙ୍କ ପୂଜା ଏବେ ବଙ୍ଗଳା ପ୍ରଦେଶରେ ବହୁଳଭାବେ କରାଯାଇଥିଲେ ହେଁ, ଏହି ପୂଜା ଏବେ ଭାରତର ସମସ୍ତ ପ୍ରାନ୍ତକୁ ପରିବ୍ୟାପ୍ତ ହୋଇଅଛି । ଦୁର୍ଗା ହେଉଛନ୍ତି ସିଂହବାହିନୀ, ମହିଷାମର୍ଦ୍ଦିନୀ, ସକଳଶକ୍ତି ଧାରିଣୀ, ଅଭୟ ବରଦାୟିନୀ, ଶୁଭଦା ଓ ବରଦା । ସେ ମୁକ୍ତି ପ୍ରଦାୟିନୀ, ଭକ୍ତ ଦୁଃଖ ବିନାସିନୀ, ସୁଖ, ସମ୍ପଦ, ଐଶ୍ୱର୍ଯ୍ୟ ପ୍ରଦାୟିନୀ । ଅସତ୍ୟ ଉପରେ ସତ୍ୟର ଜୟ କାରିଣୀ, ମଙ୍ଗଳ ଦାୟିନୀ । ଏଣୁ ଦୁର୍ଗା, ଲକ୍ଷ୍ମୀ ଓ ସରସ୍ୱତୀକୁ ଭକ୍ତ ଏକତ୍ର ପୂଜା କରେ, ତାଙ୍କଠାରୁ ଶକ୍ତି, ଶୁଭ, ଧନ, ଐଶ୍ୱର୍ଯ୍ୟ ଓ ବିଦ୍ୟା ପ୍ରାପ୍ତ ପାଇଁ । ଏମାନେ ମାନବ ଜଗତକୁ ରାକ୍ଷସୀ କୁପ୍ରଭାବରୁ ମୁକ୍ତ କରିବା ପାଇଁ ସମସ୍ତ ଦୁଃଖ, କଷ୍ଟ, ରୋଗ, ବ୍ୟାଧି, ଦୁରାଗ୍ରହ, ରାଗ, ଦ୍ୱେଷ, ଲୋଭ ଦୂର କରିବା ପାଇଁ ମା' ଦୁର୍ଗା, ଲକ୍ଷ୍ମୀ, ସରସ୍ୱତୀ ବିରାଜମାନ ହୋଇଛନ୍ତି ଏ ଧରା ମଣ୍ଡଳରେ । ଦୁର୍ଗା ପ୍ରକୃତି ସହିତ ସମ୍ବଳିତ । ଏଣୁ ବିଭିନ୍ନ ପୁରାଣ ଓ କାହାଣୀଗୁଡ଼ିକ ତାଙ୍କୁ ହିମାଳୟ ଓ ବିନ୍ଧ୍ୟ ପର୍ବତ ସହିତ ସଂଯୋଗ କରିଛନ୍ତି । ତାଙ୍କର ଅନ୍ୟନାମ ହେଉଛି ବିନ୍ଧ୍ୟ ବାସିନୀ । ସେ ବିଭିନ୍ନ ଦୁର୍ଗମାନଙ୍କୁ ରକ୍ଷାକର୍ତ୍ତ୍ରୀ ହୋଇଥିବାରୁ ତାଙ୍କୁ ଦୁର୍ଗା ବୋଲି କୁହାଯାଉଛି । ଦୁର୍ଗାଙ୍କର ନିବିଡ଼ ସମ୍ପର୍କ ଅଛି । ଏଣୁ ତାଙ୍କୁ ଯୁଦ୍ଧ

ବିଦ୍ୟାର ଦେବୀରୂପେ ପୂଜା କରାଯାଏ । ସେ ହେଉଛନ୍ତି ବିଭିନ୍ନ ଅସ୍ତ୍ରଶସ୍ତ୍ର ଧାରିଣୀ, ଦାନବ ସଂହାରିଣୀ । ଶିଳ୍ପୀ, କାରିଗରମାନେ ଦୁର୍ଗାପୂଜା ବେଳେ ସେମାନଙ୍କର ବ୍ୟବହୃତ ଅସ୍ତ୍ରଶସ୍ତ୍ରଗୁଡ଼ିକୁ ଧୋଇ, ଶୁଖେଇ, ନବବସ୍ତ୍ର ଉପରେ ସ୍ଥାପନା କରି, ଦୁର୍ଗାଙ୍କୁ ସ୍ମରଣ କରି ପୂଜା, ନୈବେଦ୍ୟ ଆଦି ସମର୍ପଣ କରନ୍ତି ଓ ସମଗ୍ର ବର୍ଷ ପାଇଁ ତାଙ୍କ ପ୍ରତି ମା' ଦୁର୍ଗା ସହାୟ ହୁଅନ୍ତୁ, ସଦୟ ହୁଅନ୍ତୁ, ତାଙ୍କର ଆୟର ସ୍ରୋତରେ ଅଭିବୃଦ୍ଧି ହେଉ, ଏପରି ଶୁଭ କାମନା କରିଥାନ୍ତି ।

ରାଜପୁତ ଯୋଦ୍ଧାମାନେ ନିଜ ନିଜର ଗଡଦେବୀ, ଦୁର୍ଗାଙ୍କୁ ପୂଜାର୍ଚ୍ଚନା ମଧ୍ୟ କରିଥାନ୍ତି ଏବଂ ଯୁଦ୍ଧଜୟୀ ହେବାକୁ ତାଙ୍କ ପାଦତଳେ ରହି ପ୍ରାର୍ଥନା ଓ କାମନା କରିଥାନ୍ତି । ଦୁର୍ଗା ହେଉଛନ୍ତି ରାଷ୍ଟ୍ରଶକ୍ତିର ପ୍ରତିରୂପ । ଏହି ଶକ୍ତିରେ ବିଦ୍ୟମାନ ବିତ୍ତବଳ (ଲକ୍ଷ୍ମୀ), ଜ୍ଞାନବଳ (ସରସ୍ୱତୀ) ବୁଦ୍ଧିବଳ (ଗଣେଶ ଓ ପ୍ରତିରକ୍ଷାର ବଳ କାର୍ତ୍ତିକେୟ) । ଏଣୁ ପ୍ରତି ମୃଣ୍ମୟ ଦୁର୍ଗାମେଢରେ ସ୍ଥାନ ପାଇଥାନ୍ତି ଲକ୍ଷ୍ମୀ, ସରସ୍ୱତୀ, ଗଣେଷ ଓ କାର୍ତ୍ତିକେୟ । ମା'ଙ୍କର ପାର୍ଶ୍ୱଦେବତା ଦେବୀରୂପେ ମହିଷାସୁର ହେଉଛି ରାଷ୍ଟ୍ର ବିରୋଧୀ ପ୍ରତୀକ । ଏହି ରାଷ୍ଟ୍ରବିରୋଧୀ ଶକ୍ତିକୁ ପ୍ରତିହତ କରିବା ପାଇଁ ସର୍ବଦା ଜାରି ରହିଥାଏ ସଂଗଠିତ ସାମର୍ଥ୍ୟ, ବଳ ଓ ଶକ୍ତିଶାଳୀ ରାଷ୍ଟ୍ରର ଜୟଘୋଷ ଦୁର୍ଗାଙ୍କ ପୂଜା ମାଧ୍ୟମରେ ।

ସେହି ମା କେତେବେଳେ ହୋଇଥାନ୍ତି ଅଷ୍ଟଭୁଜା ଓ ଅନ୍ୟ କେତେବେଳେ ଦଶଭୁଜା । ତାଙ୍କର ଉପରକୁ ଉତ୍‌ଥିତ ଦକ୍ଷିଣ ପ୍ରଥମ ଦକ୍ଷିଣ ଭୁଜରେ ସେ ଧାରଣ କରିଛନ୍ତି ଚକ୍ର, ଯାହା ଧର୍ମ ଓ ପ୍ରେରଣାର ସୂଚକ ଅଟେ । ଦକ୍ଷିଣ ଦ୍ୱିତୀୟ ଭୁଜରେ ମା' ଧାରଣ କରିଛନ୍ତି ଶଙ୍ଖ, ତୃତୀୟ ନିମ୍ନ ଦକ୍ଷିଣ ହସ୍ତରେ ମା ଧାରଣ କରିଛନ୍ତି ଗଦା । ଏ ଆମକୁ ପ୍ରେରଣା ଦେଇଥାଏ । ସବୁ କଥାରେ ଭଲ ମନ୍ଦ ବିଚାର କରି କର୍ମ କରିବା ସଂକଳ୍ପ କରିବା, ତ୍ୟାଗ ଓ ସମର୍ପଣର ମନୋବୃତ୍ତିକୁ ଆପଣେଇବା । ସମସ୍ତ କାର୍ଯ୍ୟକୁ ଈଶ୍ୱରଙ୍କ ନିକଟରେ ସମର୍ପଣ କରି, ସତ୍ୟ, ନିଷ୍ଠାକୁ ନିଜର ଆଚରଣର ଅଙ୍ଗ ରୂପେ ଗ୍ରହଣ କରିନେବା । ଚତୁର୍ଥ ନିମ୍ନ ଦକ୍ଷିଣ ହସ୍ତରେ କ୍ଷମାର ସୂଚନା ଦେଇଥାଏ ।

ମା'ଙ୍କ ପ୍ରଥମ ବାମ ହସ୍ତରେ ବିଦ୍ୟମାନ ଖଡ଼ଗ । ଦ୍ୱିତୀୟରେ ଧନୁଶର, ତୃତୀୟରେ ପଦ୍ମ ଫୁଲ ଓ ଚତୁର୍ଥ ହସ୍ତରେ ତ୍ରିଶୂଳ । ଏଗୁଡ଼ିକ ମଧ୍ୟ ବିଭିନ୍ନ ପଦାର୍ଥର ସୂଚକ ଅଟନ୍ତି । ମା' ପରିହିତା ଲାଲ ରଙ୍ଗର ଶାଢୀ । ସେ ଆମକୁ ଧ୍ୱଂସ ମୁଖରୁ ରକ୍ଷା କରି ହସ ମୁଖରେ ଦିବ୍ୟ ଜ୍ୟୋତି ଓ ଅସୀମ ଶକ୍ତି ପ୍ରଦାନ କରିଥାନ୍ତି । ଦୁର୍ଗାପୂଜା ସମୟରେ ଆମ୍ଭେମାନେ ମା' ଦୁର୍ଗାଙ୍କୁ ହୃଦୟରେ ଧାରଣ କରି, ଆମ ମନରେ ଥିବା ଗର୍ବ, ଦମ୍ଭ, ଅଭିମାନ, ଆତ୍ମବଡ଼ିମା, କୁଅଭ୍ୟାସ, ଦ୍ୱେଷ, ହିଂସା, ପରଶ୍ରୀକାତରତା, ହୀନମନ୍ୟତାକୁ ଦୂର କରି ଆତ୍ମାକୁ ଶୁଦ୍ଧପୁତ, ନିର୍ମଳ କରିବା ପାଇଁ ପ୍ରାର୍ଥନା କରିଥାଉ ।

ଦେବୀ ଦୁର୍ଗା ଶକ୍ତି, ମାୟା ଓ ପ୍ରକୃତିଭାବେ ପରିକଳ୍ପିତ । ସେ ସୃଷ୍ଟିକ୍ରିୟା ସହିତ ସମ୍ବଳିତ ଓ ଜୀବନକୁ ଦିଅନ୍ତି ଅଲୌକିକ ଦିଗ୍‌ଦର୍ଶନ ଓ ଦିବ୍ୟ ଭାବଧାରା । ସେ ହେଉଛନ୍ତି ପାର୍ଥିବ ଜଗତର ଦିବ୍ୟ ଚେତନା । ଏହି ଚେତନା ସର୍ବଦା ସମୁଜ୍ଜ୍ୱଳ । ସେ ମଧ୍ୟ ଜୀବନ ସଂଗ୍ରାମର ସାହାଯ୍ୟ କାରିଣୀ, ମଙ୍ଗଳ ଦାୟିନୀ ଓ ଅନ୍ତକାଳ ପାଇଁ ଅଭୟ ବର ଦାୟିନୀ । ସେ ନାନା ରୂପରେ, ନାନା ଭାବରେ ଏ ଜଗତ ପୃଷ୍ଠରେ ବିରାଜିତା ଓ କ୍ରିୟା ଶକ୍ତିର ସଂଚାଳିକା ।

ଦଶହରାର ଅନ୍ୟନାମ ହେଉଛି ବିଜୟା ଦଶମୀ । ଏହି ପବିତ୍ର ଦିବସଟିକୁ ଶ୍ରୀରାମଚନ୍ଦ୍ରଙ୍କ ଲଙ୍କା ବିଜୟ ପରେ ଅଯୋଧ୍ୟା ରାଜ୍ୟକୁ ପ୍ରତ୍ୟାବର୍ତ୍ତନର ଶୁଭ ଅବସରରେ ପାଳନ କରାଯାଇଥିଲା । ସେହି ଦିନରୁ ଏହି ଦିବସଟିକୁ ଭାରତରେ ସର୍ବତ୍ର ମହା ଆନନ୍ଦ ଉଲ୍ଲାସ ସହକାରେ ଭାରତୀୟ ହିନ୍ଦୁମାନେ ପାଳନ କରିଥାନ୍ତି । ରାମଚନ୍ଦ୍ର ଲଙ୍କା ବିଜୟ ପୂର୍ବରୁ ଚଣ୍ଡୀ ପୂଜା କରି ମା' ଦୁର୍ଗାଙ୍କର ଆଶୀର୍ବାଦ ଲାଭକରି ଲଙ୍କାର ମହାପ୍ରତାପୀ ରାଜା ରାବଣଙ୍କୁ ବଧ କରି ନିଜର ପ୍ରାଣପ୍ରିୟା ପତ୍ନୀ ସୀତାଙ୍କୁ ଉଦ୍ଧାର କରିବାକୁ ସମର୍ଥ ହୋଇଥିଲେ । ଏହି ପବିତ୍ର ଦିନରେ ରାବଣ ପୋଡ଼ି ଉତ୍ସବ ଭାରତୀୟମାନେ ପାଳନ କରି ଆନନ୍ଦ ମନାଇ ଥାନ୍ତି ।

ଶ୍ରୀରାମଚନ୍ଦ୍ର ଓ ସୀତା ଲକ୍ଷ୍ମଣଙ୍କ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନର ଶୁଭ ଅବସରରେ ଅଯୋଧ୍ୟାବାସୀ ଘରେ ଘରେ ଦୀପ ପ୍ରଜ୍ୱଳନ କରି ତାଙ୍କୁ ସ୍ୱାଗତ କରିଥିଲେ ଓ ଆନନ୍ଦ ଉତ୍ସବରେ ବିଭୋର ହୋଇଥିଲେ । ସମଗ୍ର ଅଯୋଧ୍ୟା ରାଜ୍ୟରେ ଶ୍ରୀରାମଙ୍କ ଶୁଭ ଆଗମନରେ ହର୍ଷ ଓ ଆନନ୍ଦର ଲହରୀ ଖେଳି ଯାଇଥିଲା ।

ଏହିଦିନ ବଙ୍ଗଳା ଓ ଅନ୍ୟ କେତେକ ରାଜ୍ୟରେ ଦୁର୍ଗାଙ୍କର ମୃଣ୍ମୟୀ ମୂର୍ତ୍ତିର ବିସର୍ଜନ କରାଯାଇଥାଏ । ବଙ୍ଗବାସୀ ପରସ୍ପର କୋଳାକୋଳି ହୁଅନ୍ତି ଏବଂ ଫଗୁ ଓ ସିନ୍ଦୂର ଲଗାଇ ବନ୍ଧୁମାନଙ୍କୁ କୋଳାଗ୍ରତ କରିଥାନ୍ତି । ଦୁର୍ଗାଙ୍କର ଶୁଭ ଆଗମନକୁ ମା' ପୃଥିବୀ ନବ ବେଶଧରି ସ୍ୱାଗତ କରେ । ନଦୀ ପଠା ଶୁଭ୍ର କାଶତଣ୍ଡୀରେ ହସିଉଠେ । ବାଡ଼ିଘର ଝରା ଶେଫାଳିର ମହକରେ ଚମକି ଉଠେ । ଆକାଶ ମେଘ ବିମୁକ୍ତ ହୋଇଯାଏ । ନଦୀ, ନାଳର ଜଳ ଶୁଦ୍ଧ, ନିର୍ମଳ ହୋଇ ମା'ଙ୍କ ଶିରରେ ପବିତ୍ର ଜଳ ବର୍ଷଣ କରନ୍ତି । ଚତୁର୍ଦ୍ଦିଗ ସରସ, ସୁନ୍ଦର, ମଧୁମୟ, ହର୍ଷ ମୁଖର ହୋଇ ମା' ଦୁର୍ଗାଙ୍କୁ ସ୍ୱାଗତ କରେ ଓ ତାଙ୍କର ଆଶୀର୍ବଚନ ଲାଭ ପାଇଁ ପୂଜା, ପ୍ରାର୍ଥନା, ଭୋଜି, ମହୋତ୍ସବରେ ଆନନ୍ଦ ମୁଖର ହୋଇଥାଏ ।

ଆମ ଉତ୍କଳ ଭୂମିରେ ଦୁର୍ଗାପୂଜା ଓ ଦେବୀ ପୂଜାର ପ୍ରଚଳନ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ହୋଇ ଆସୁଅଛି । କାକଟପୁରର ମଙ୍ଗଳା, ବାଙ୍କିର ଚର୍ଚ୍ଚିକା, ସମ୍ବଲପୁରର ସମଲେଇ, ଯାଜପୁରର ବିରଜା, ପୁରୀର ବିମଳା, ବାଣପୁରର ଭଗବତୀ, ଜଗତସିଂହପୁରର ଶାରଳା ଇତ୍ୟାଦି ଅନେକ ଦେବୀ ପୀଠରେ ଦେବୀ ପୂଜା ନଅଦିନ କାଳ ବଡ ପବିତ୍ରତାରେ ମନ୍ତ୍ରପାଠ ଓ ଦେବୀ ପାଠ କରାଯାଇ ଦେବୀଙ୍କର ପୂଜାର୍ଚ୍ଚନା ବଡ ଆଡମ୍ବର ସହକାରେ କରାଯାଏ । ଏହା ବ୍ୟତୀତ ଉତ୍କଳୀୟ ଗ୍ରାମଗୁଡିକ ଦୁର୍ଗାପୂଜା ସମୟରେ ଉତ୍ସବ ମୁଖର ହୋଇ ଉଠିଥାଏ । ଗ୍ରାମ୍ୟ କାରୀଗର ଓ ଶିଳ୍ପୀମାନେ ଏହି ଦୁର୍ଗାପୂଜା ସମୟରେ ଅଷ୍ଟମୀ ଓ ନବମୀ ତିଥିରେ ସେମାନଙ୍କର ହାତ ହତିଆରଗୁଡ଼ିକୁ ପୁଷ୍ପ, ଚନ୍ଦନ, ଧୂପ, ଦୀପ, ନୈବେଦ୍ୟ ପ୍ରଦାନ କରି ନବବସ୍ତ୍ର ପରିଧାନ କରି ପୂଜା କରିଥାନ୍ତି ।

ଓଡ଼ିଶାର ଗଡମାନଙ୍କରେ କ୍ଷେତ୍ରୀୟ ସଂପ୍ରଦାୟର ଲୋକମାନେ ଏହି ସମୟରେ ତାଙ୍କ ଗୃହମାନଙ୍କରେ ସଜ୍ଜିତ ହୋଇଥିବା ଅସ୍ତ୍ରଶସ୍ତ୍ରଗୁଡିକର ପୂଜାର୍ଚ୍ଚନା କରି ଏହି ଦିବସ ଅର୍ଥାତ୍ ଦଶହରା ପୂଜା ପରେ ସେମାନଙ୍କ ବିଜୟ ଅଭିଯାନରେ ଯାତ୍ରା କରୁଥିଲେ ବୋଲି ପୁରାଣ ଓ ଇତିହାସ ପୃଷ୍ଠାମାନଙ୍କରେ ଦେଖିବାକୁ ମିଳିଥାଏ । ଓଡ଼ିଶାର ବିଭିନ୍ନ ସ୍ଥାନରେ ସପ୍ତମାତୃକାଙ୍କର ଖୋଲା ମୂର୍ତ୍ତି ଏବେ ଯାଜପୁର, ପୁରୀ, ଭୁବନେଶ୍ୱର, ଧର୍ମଶାଳା, ସଠଳପୁର ଓ ସେରଗଡରେ ଏବେବି ବିଦ୍ୟମାନ । ମଧ୍ୟଯୁଗୀୟ ମନ୍ଦିର ଗାତ୍ରରେ ମାତୃକା ମୂର୍ତ୍ତି ଲୋପ ପାଇ ଆସୁଥିବା ବେଳେ ଭୁବନେଶ୍ୱର, ମୁକ୍ତେଶ୍ୱର ମନ୍ଦିରର ଜଗାହନରେ ପଦ୍ମପାଖୁଡାମାନଙ୍କରେ ଅଷ୍ଟମାତୃକାଙ୍କ ମୂର୍ତ୍ତି ସୁନ୍ଦରଭାବେ ସଜିତ ହୋଇଅଛି । ଓଡ଼ିଶାର ଅନ୍ୟାନ୍ୟ ସ୍ଥାନମାନଙ୍କରେ ମଧ ମାତୃକା ପୂଜା କରାଯାଇଥାଏ । ପ୍ରାଚୀନଦୀ ତଟସ୍ଥ ଚଉରାଶି ଗ୍ରାମରେ ଦେବୀଙ୍କର ପ୍ରତିମୂର୍ତ୍ତି ବରାହୀ ଓ ଜାଗୁରାଇ ଦେବୀଗୁଡିକ ଅତ୍ୟନ୍ତ ମନୋରମ ଓ ଚିତ୍ତାକର୍ଷକ ବୋଲି ଇତିହାସ କହେ ।

ଦୁର୍ଗାପୂଜା ଓ ଦଶହରା ହେଉଛି ଆନନ୍ଦ ଉତ୍ସାହର ପର୍ବ । ମାତ୍ର ଆଜିକାଲି ଏହି ପୂଜା କଟକ ଭୁବନେଶ୍ୱର ଇତ୍ୟାଦି ସହରରେ ପ୍ରତିଯୋଗିତା ଧର୍ମୀ ହୋଇ ଗଲାଣି ଓ ଏଥିପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରା ଗଲାଣି । ପୂଜାର ବୈଶିଷ୍ଟ୍ୟ ଓ ମହତ୍ୱକୁ ଅଧିକ ପ୍ରାଧାନ୍ୟ ନଦେଇ ଦର୍ଶକମାନଙ୍କୁ ଆକୃଷ୍ଟ କରିବା ପାଇଁ ପୂଜା ଅନୁଷ୍ଠାନମାନଙ୍କ ତରଫରୁ ଅର୍ଥ, ଧନ ଓ ଶାଢୀର ପ୍ରଦର୍ଶନ ନକରି ଏହି ଅର୍ଥର କିଛି ଅଂଶକୁ ଦରିଦ୍ର ନାରାୟଣଙ୍କ ସେବାରେ ଲଗାଇଲେ ଭଲ ହୁଅନ୍ତା ନିଶ୍ଚୟ ।

୪୬୯୩/୫୪୫୪, ଆଦିମାତା କଲୋନୀ
ମଞ୍ଚେଶ୍ୱର ରେଲୱେ କଲୋନୀ, ଭୁବନେଶ୍ୱର–୧୭

# ଆସିବେ ବୋଲି ଜନନୀ

**ଶରତ କୁମାରୀ ମିଶ୍ର**

ଆସିବେ ବୋଲି ଜନନୀ ଶୁଭଶଙ୍ଖ ବାଜିଲାଣି
ଘଣ୍ଟଘଣ୍ଟା ସାଥେ ପୁଣି ବାଜେ ମର୍ଦ୍ଦଳ
ତୋରଣ ସଜା ହେଲାଣି ଶୁଭେ ଆନନ୍ଦର ଧ୍ୱନି
ଶଙ୍ଖ ହୁଳହୁଳି ସଙ୍ଗତେ ହରିବୋଲ,
ବରଷକୁ ଥରେ ଆସନ୍ତି
ମର୍ତ୍ତ୍ୟମଣ୍ଡଳରେ ଆବିର୍ଭାବ ହୁଅନ୍ତି ।
ତାଙ୍କ ଶୁଭ ଆଗମନ ଶାନ୍ତ କରେ ତନୁମନ
ମିଳେ ତାଙ୍କର ଦର୍ଶନ ଭକତ ଜନେ
ପୂରଣ ହୁଏ କାମନା ସେ ଅଟନ୍ତି ମହାମନା
ପୂଜାକର ତାଙ୍କୁ ସର୍ବେ ଆନନ୍ଦ ମନେ ।
ଦୁଃଖ ସେ କରିବେ ହରଣ
ଦୁର୍ଗତି ନାଶିନୀ ନାମ ତାଙ୍କର ପୁଣ ।
କରିବେ ମାତା ସୁଦୟା ପବିତ୍ର ହୋଇବ କାୟା
ରୋଗ ଶୋକ ସବୁ ସେତ ଦୂର କରିବେ
ସେତ ଅଭୟା ମୂରତି ସେ ପୁଣି ଭାଷା ଭାରତୀ
ଅନ୍ନପୂର୍ଣ୍ଣା ଯୋଗମାୟା ବିପଦ ନେବେ
ତାଙ୍କ ଶୁଭ ନାମକୁ ତୁହି
ଜପକର ବାରମ୍ବାର ଅସ୍ଥିର ନୋହି ।

ଏନ୍–୫/୧୨୮
ଆଇଆରସି ଭିଲେଜ, ଭୁବନେଶ୍ୱର



❖ ❖ ❖

# ଭାରତ ବାହାରେ ଶକ୍ତିପୀଠ

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ

ପୁରାଣରୁ ଜଣାଯାଏ ଯେ ପ୍ରଜାପତି ଦକ୍ଷ, ଯେଉଁ ଯଜ୍ଞ କରୁଥିଲେ, ସେଥିରେ ସେ ନିଜର ଜ୍ୟେଷ୍ଠ ଜାମାତା ଶିବଙ୍କୁ ନିମନ୍ତ୍ରଣ କରି ନଥିଲେ । କଥାଟା ତାଙ୍କ ଜ୍ୟେଷ୍ଠା କନ୍ୟା 'ସତୀ'ଙ୍କ ମନକୁ ଆସିଲା ନାହିଁ । ତେଣୁ ସେ ନିଜର ଅଭିମାନ ପ୍ରକଟ କରିବା ପାଇଁ ପିତା କରୁଥିବା ଯଜ୍ଞ କୁଣ୍ଡରେ ଆସି ଝାସ ଦେଲେ । ଭଗବାନ ଶଙ୍କର ଏହା ଜାଣି ଯଜ୍ଞ କୁଣ୍ଡରୁ ସତୀଙ୍କୁ ଉଦ୍ଧାର କରି ନିଜ କାନ୍ଧରେ ପକାଇ ଉଦ୍‌ଭ୍ରାନ୍ତ ଭାବରେ ନାଚିବା କୁଦିବା ସହିତ ଚତୁର୍ଦ୍ଦିଗରେ ଖେଦିବାକୁ ଲାଗିଲେ । ଏଣୁ ସୃଷ୍ଟିର ନିତ୍ୟନୈମିତିକ ପ୍ରାକୃତିକ ଜୀବନଧାରାରେ ସଂକଟ ଦେଖାଦେଲା । ତେଣୁ ଦେବତାମାନଙ୍କ ଅନୁରୋଧକ୍ରମେ ଭଗବାନ ବିଷ୍ଣୁ ସୁଦର୍ଶନ ଚକ୍ର ଦ୍ୱାରା ସତୀଙ୍କର ମୃତ ଶରୀରକୁ ଖଣ୍ଡଖଣ୍ଡ କରି କାଟି ପକାଇଲେ । ସତୀଙ୍କ ବିଖଣ୍ଡିତ ଶରୀରାଂଶ ଯେଉଁଠି ନିପତିତ ହେଲା, ସେଠାରେ କ୍ରମେ ଗୋଟିଏ ଗୋଟିଏ ଶକ୍ତିପୀଠ ଗଢି ଉଠିଲା । ଏହିପରି ଭାବରେ ଭାରତୀୟ ଉପମହାଦେଶ (ସିଂହଳ, ନେପାଳ, ତିବ୍ବତ, ପାକିସ୍ଥାନ, ବଙ୍ଗଳାଦେଶ)ରେ ୫୧ଗୋଟି ଶକ୍ତିପୀଠ ଗଢି ଉଠିଥିଲା । କ୍ରମେ ଭାରତୀୟ ଉପ ମହାଦେଶରୁ ପାକିସ୍ଥାନ, ବଙ୍ଗଳା ଦେଶ, ସିଂହଳ, ନେପାଳ, ତିବ୍ବତ ଆଦି ରାଜ୍ୟ ବିଚ୍ଛିନ୍ନ ହେବାପରେ ୯ଟି ଶକ୍ତିପୀଠ ଏବେ ଭାରତ ବାହାରେ ରହିଛି । ସେଗୁଡିକ ହେଲା–

| | |
|---|---|
| ବଙ୍ଗଳା ଦେଶରେ– | ୪ଟି |
| ପାକିସ୍ତାନରେ– | ୧ଟି |
| ନେପାଳରେ– | ୨ଟି |
| ସିଂହଳରେ– | ୧ଟି |
| ତିବ୍ବତରେ– | ୧ଟି |
| **ମୋଟ–** | **୯ଟି** |

'ତନ୍ତ୍ରଚୂଡାମଣି' ଏବଂ 'ଜ୍ଞାନାର୍ଣ୍ଣବ' ଭଳି ପ୍ରସିଦ୍ଧ ତନ୍ତ୍ରଗ୍ରନ୍ଥରେ ସତୀଙ୍କର ଶରୀରର କେଉଁ କେଉଁ ଖଣ୍ଡିତାଂଶ, କେଉଁ କେଉଁ ସ୍ଥାନରେ ଭୂପତିତ ହୋଇଥିଲା, ତାହାର ଉଲ୍ଲେଖ ଅଛି । ଗବେଷକଙ୍କ ମତରେ–

**ଯଶୋରେଶ୍ୱରୀ(୧)–** ବଙ୍ଗଳା ଦେଶର ଖୁଲନା ଜିଲାର ଯୌଶୋର ସହରରେ ଦେବୀ ଯଶୋରେଶ୍ୱରୀ ଦେବୀ ମନ୍ଦିର ଅଛି । ଏଠାରେ ସତୀଙ୍କ ଶରୀର ବାମ ହାତର ପାପୁଲି ପଡିଥିବାରୁ ଏହା ଏକ ଶକ୍ତିପୀଠ ହୋଇଛି । ଏଠାରେ ଶିବ ଚନ୍ଦ୍ର ନାମରେ ଖ୍ୟାତ ।

**କରତୋୟା ତଟରେ(୨) ଅପର୍ଣ୍ଣା (ବଙ୍ଗଳାଦେଶ):** ବୋଗଡା ଷ୍ଟେସନଠାରୁ ୩୨କି.ମି. ଦୂରରେ ଦକ୍ଷିଣ ପଶ୍ଚିମ କୋଣରେ ଅବସ୍ଥିତ ଭବାନିପୁର ଗ୍ରାମରେ– କରତୋୟା ନଦୀ ତଟରେ ଅପର୍ଣ୍ଣା ଦେବୀ ଶକ୍ତିପୀଠ ବିଦ୍ୟମାନ । ଏଠାରେ ଶିବ ହେଲେ–ବାମନ । ଏଠାରେ ସତୀଙ୍କ ଶରୀରର ବାମତଳ୍ପ ପତୀତ ହୋଇଛି ।

**ସୁନନ୍ଦା ତଟରେ (୩) ସୁନନ୍ଦାଦେବୀ ପୀଠ (ବଙ୍ଗଳାଦେଶ):** ବରିସାଲ୍ ଠାରୁ ୨୧କି.ମି. ଦୂରରେ ଉତ୍ତରରେ ଅବସ୍ଥିତ ଶିକାରପୁର ଗ୍ରାମ ନିକଟରେ ପ୍ରବାହିତ ସୁନନ୍ଦାନଦୀ ତଟରେ ସୁନନ୍ଦା ଦେବୀ ଶକ୍ତିପୀଠ ରହିଛି । ଦେବୀ ଉଗ୍ରତାରା ରୂପେ ପୂଜିତ । ଶିବ ହେଲେ ତ୍ର୍ୟମ୍ବକ । ଏଠାରେ ଦେବୀଙ୍କ ନାସିକା ପତିତ ହୋଇଥିଲା ।

**ଚନ୍ଦ୍ରଶେଖର ଶିଖରରେ (୪) ଭବାନୀ ଶକ୍ତିପୀଠ (ବଙ୍ଗଳାଦେଶ):** ଚଟ୍ଟଗାଁଠାରୁ ୩୮କି.ମି. ଦୂରରେ ଥିବା ସତୀକୁଣ୍ଡ ରେଳଷ୍ଟେସନ ନିକଟସ୍ଥ ଚନ୍ଦ୍ରଶେଖର ପାହାଡ ଉପରେ ଭବାନୀ ମନ୍ଦିର । ଏଠାରେ ଶିବ, ଚନ୍ଦ୍ରଶେଖର ନାମରେ ବିଦିତ । ଏଠାରେ ସତୀଙ୍କ ଡାହାଣ ବାହୁ ପତିତ ।

**ଗଣ୍ଡକୀ ତଟରେ (୫) ଦେବୀ ଗଣ୍ଡକୀ (ନେପାଳ):** ଗଣ୍ଡକୀ ନଦୀ ଉତ୍ପତ୍ତିସ୍ଥଳ ତଟ ଦେଶରେ ଦେବୀ ଗଣ୍ଡକୀଙ୍କ ଶକ୍ତିପୀଠ । ଏଠାରେ ଶିବ ଚକ୍ରପାଣି ନାମରେ ଖ୍ୟାତ । ସତୀଙ୍କ ଦକ୍ଷିଣ ଗଣ୍ଡ (ଗାଲ) ପତିତ ହେତୁ ଶକ୍ତି ତୀର୍ଥରେ ପରିଣତ ।

**ବାଗମତୀ ତଟରେ (୬) ଦେବୀ ମହାମାୟା (ନେପାଳ):** ପଶୁପତି ମନ୍ଦିର ସନ୍ନିକଟରେ ପ୍ରବାହିତା ବାଗମତୀ ତଟରେ ଗୁହେଶ୍ୱରୀ ଦେବୀ (ଶକ୍ତି) ପୀଠ । ଏଠାରେ ସତୀ, ମହାମାୟା ଓ ଶିବ, 'କପାଳ' ନାମରେ ପୂଜିତ ହୁଅନ୍ତି । ଏଠାରେ ସତୀଙ୍କର ଦୁଇ ଜଂଘ ପତିତ ହୋଇଥିଲା ।

ମାନସରୋବର ତଟରେ (୭) ଦ୍ରାକ୍ଷ୍ୟୟଣୀ (ତିବ୍ବତ) ମାନସରୋବର ତଟରେ ଅବସ୍ଥିତ ଦେବୀ ଦ୍ରାକ୍ଷ୍ୟୟଣୀ ଏବଂ ଶିବ–ଅମର ଭାବରେ ପୂଜିତ । ଏଠାରେ ସତୀଙ୍କ ଡାହାଣ ହସ୍ତର ପାପୁଲି ପଡିଥିବାରୁ ଶକ୍ତି ତୀର୍ଥରେ ପରିଣତ ।

**ଇନ୍ଦ୍ରାକ୍ଷି(୮) ସିଂହଳ ଦ୍ୱୀପରେ:** ଶ୍ରୀଲଙ୍କାର ଇନ୍ଦ୍ରାକ୍ଷି ଦେବୀପୀଠ, ସତୀଙ୍କର ନୂପୁର ପତିତ ଫଳରେ ଗଢି ଉଠିଛି । ଶିବ ହେଲେ– ରାକ୍ଷସେଶ୍ୱର ।

**ହିଙ୍ଗୋସ୍ ନଦୀ (ପାକିସ୍ଥାନ) (୯) ତଟରେ ଭୈରବୀ (ହିଙ୍ଗୁଳା):** କରାଚୀଠାରୁ ୧୪୪ କି.ମି ଦୂରରେ ଉତ୍ତର ପଶ୍ଚିମ ଦିଗରେ (ବେଲୁଚିସ୍ଥାନ) ହିଙ୍ଗୋସ ନଦୀ ତଟରେ ଏକ ପାର୍ବତ୍ୟ ଗୁମ୍ଫା ମଧ୍ୟରେ ଜ୍ୟୋତିରୂପା ଭୈରବୀ ଶକ୍ତିପୀଠ । ଶିବ–ଭୀମଲୋଚନ ଭାବରେ ପୂଜିତ । ଏଠାରେ ଦେବୀଙ୍କ ବ୍ରହ୍ମରନ୍ଧ୍ର ପତିତ ହେବାର ପୁରାଣ କହେ ।

ପାକିସ୍ଥାନ ଓ ବଙ୍ଗଳା ଦେଶ ଇସ୍‌ଲାମିକ ରାଷ୍ଟ୍ର ହେବା ଫଳରେ ଏବଂ ନେପାଳରେ ରାଜନୈତିକ ବିବର୍ତ୍ତନ ତଥା ତିବ୍ବତକୁ ଚୀନ୍ ଅକ୍ତିଆର କଲାପରେ ଏହି ହିନ୍ଦୁ ଶକ୍ତିପୀଠଗୁଡିକର ରକ୍ଷଣାବେକ୍ଷଣ ସମ୍ପର୍କରେ କୌଣସି ତଥ୍ୟ ଉପଲବ୍ଧ ହୁଏ ନାହିଁ ।

ଶ୍ରାବସ୍ତୀ
୩୫, ବସନ୍ତ ବିହାର
ବ୍ରହ୍ମେଶ୍ୱର ମନ୍ଦିରମାର୍ଗ
ଭୁବନେଶ୍ୱର–୧୮

# କରୁଣାମୟୀ ମାଆ

ସ୍ନେହଲତା ମହାନ୍ତି

କୃପା ନେତ୍ରେ ଚାହାଁ ବାରେ କରୁଣାମୟୀ
ଦୁଃଖର ଉଆଁସ ରାତି ଯାଉ ଗୋ ପାହି ।
କୃପା ନେତ୍ରେ ଚାହାଁବାରେ...
ତ୍ରିଭୁବନ ସତେ ଅବା ଜଳୁଛି ଆଜି
ସତ୍ୟ, ଶାନ୍ତି, ଦୟା, କ୍ଷମା ଗଲାଣି ହଜି ।
ଲହୁ ଲୁହରେ ବତୁରି କାନ୍ଦୁଚି ଧରା
ଜୀବନଟା ମନେହୁଏ ଯାତନା ଭରା ।
ନାହିଁ କାହିଁ ବୁଝାମଣା–ଖାଲି କଳୁଷ କାମନା
ମଣିଷର ପଶୁ ପଣ ହେଉନି ସହି
କୃପା ନେତ୍ରେ ଚାହାଁବାରେ...

ଜଣାଣ କରୁଛି ତୁମ ଚରଣେ ବସି
ଦୟାମୟୀ ଦୟାବାରି ଦିଅ ବରଷି ।
ଶୀତଳ ହେଉ ଏ ଦୁଃଖ, ଶୋକର ଦାହ
ତୁମ ବିନା ମନ କିଏ ବୁଝିବ କୁହ ?
ତୁମେ ତ ବିଶ୍ୱ ଜନନୀ–ଅଭୟ ବରଦାୟିନୀ
ଦେବୀ ଦଶଭୁଜା ମାଗୋ ମହିମାମୟୀ
କୃପାନେତ୍ରେ ଚାହାଁବାରେ ...

ବାଙ୍କି ସାହି–
ତେଲେଙ୍ଗା ବଜାର, କଟକ

❖ ❖ ❖

# ଗଣକବି ବୈଷ୍ଣବ ପାଣି: ଏକ ଅମ୍ଲାନ ପ୍ରତିଭା

ବିମଳା ସିଂହ

ଈଶ୍ୱରଙ୍କ ସୃଷ୍ଟ ମନୁଷ୍ୟ ଏବଂ ପ୍ରକୃତି ଉଭୟେ ପ୍ରକାଶ ପ୍ରବଣ । ସମୁଦ୍ରର ନୀଳଲହରୀ ମାଳା ଯେପରି ବେଳାଭୂଇଁର ଆକର୍ଷଣକୁ ଏଡାଇ ନପାରି ବାରବାର ମଥା ପିଟୁଥାଏ, ତା'ର ଚରଣ ଛୁଇଁଥାଏ, ଠିକ୍ ସେହିପରି ମନୁଷ୍ୟ ତା'ର ଚାରି ପାଖରେ ଘେରି ରହିଥିବା ପ୍ରକୃତି ରୂପକ ବିରାଟ ଚିତ୍ରାଳୟରେ ଥରେ ନିଜକୁ ହଜାଇ ଦେଲେ ଆଉ ପଛକୁ ଫେରି ଆସିବାର ବାଟ ପାଏନା । କାରଣ ମଣିଷ ଓ ପ୍ରକୃତି ଉଭୟେ ହୃଦୟର କାନ୍‌ଭାସ୍‌ରେ ଲେଖୁଥାନ୍ତି ଆତ୍ମକଥା ଆଉ ମନ ଗହ୍ୱରର ସମସ୍ତ କଥାକୁ ଅନୁଭବକୁ ନେଇ ଲେଖିଯାଏ ଅଭୁଲା କବିତା, ଯାହା ଅକ୍ଷୟ ହିଁ ଅକ୍ଷୟ କେବଳ । ବ୍ୟାକୁଳ ହୃଦୟର ଅଭିବ୍ୟକ୍ତି ହିଁ କେତେବେଳେ କାବ୍ୟ, କବିତା ରୂପ ନେଇ ବାହାରି ଆସେ କାହାକାହା ଜୀବନରେ । ଏହାଦ୍ୱାରା ବ୍ୟକ୍ତିସତ୍ତା ନିଜକୁ ଅନ୍ୟମାନଙ୍କଠାରେ ଏବଂ ଅନ୍ୟକୁ ନିଜଠାରେ ଦେଖିପାରିବାର ଅନୁଭବ ସୃଷ୍ଟି କରିପାରିଥାଏ । ପରବର୍ତ୍ତୀ ପର୍ଯ୍ୟାୟରେ ରହି ଅନୁଭୂତିହିଁ ବିସ୍ତାରିତ ମୁଖା ହୋଇ ଆନନ୍ଦର ରୂପ ନେଇଥାଏ ।

କବି ଦ୍ରଷ୍ଟା ଏବଂ କାବ୍ୟ ତା'ର ସୃଷ୍ଟି । କବିତା ତା'ର ମାନସ ସନ୍ତାନ । ତେଣୁ ଆତ୍ମା ଓ ପୁରୁଷର ସମ୍ପର୍କ ଠିକ୍ କବି ଓ କବିତା ମଧ୍ୟରେ ଥିବା ସମ୍ପର୍କ ଭଳି । କବି ଜଣେ ଶିକ୍ଷକ ମଧ୍ୟ । ତେଣୁ ସେ ବଞ୍ଚିପାରେ ସମାଜ ପୃଷ୍ଠାରେ ସମାଜ ଓ ସଂସ୍କୃତିର ଶିକ୍ଷକ ଭାବରେ ଯୁଗଯୁଗ ପାଇଁ । ପ୍ରଖ୍ୟାତ କବି ୱାର୍ଡସ୍ ୱାର୍ଥଙ୍କ ମତରେ –'The Poet is a teacher, to be considered as a teacher or as nothing' । କବି ନିଜ ଭିତରେ ଦେଖିପାରେ ସତ୍ୟ–ଶିବ–ସୁନ୍ଦରର ପ୍ରତିମୂର୍ତ୍ତି ଏବଂ ସେଇ ଆଧାରରେ ଲେଖିଚାଲେ ତା'ର କବିତାଗୁଡିକୁ । ଯାହା ଯଥାର୍ଥତା ଲାଭ କରେ ସବୁରି ହୃଦୟରେ । କାରଣ ଜୀବନର ସତ୍ୟତାକୁ ଅନ୍ତର ଭିତରେ ସାଇତି ରଖି ଗୋଟିଏ ଚିତ୍ରରେ ଗୋଟିଏ ସ୍ପନ୍ଦନରେ ସେସବୁକୁ ଜୀବନ୍ୟାସ ଦିଏ କବି ତା'ର ମାନସ ସନ୍ତାନମାନଙ୍କ ଜରିଆରେ । ତେଣୁ କୁହାଯାଏ କବି ଯଦି ଆନ୍ତରିକ, ତା'ର ସୃଷ୍ଟ କାବ୍ୟ କଳାତ୍ମକ । ଏଣୁ କବିହିଁ ହୃଦୟର ବାସସିକ୍ତ ଫୁଲରେ ରସସିକ୍ତ କରିପାରେ ଅନେକ ହୃଦୟକୁ । ନିଜେ ଜଳି ଅନ୍ୟକୁ ଆଲୋକର ସାଗର ଭିତରେ ଅବଗାହନ କରାଇପାରେ, ଆଲୋକର ସ୍ପର୍ଶ ବାଣ୍ଟିପାରେ କବି । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଅନବଦ୍ୟ' ସୃଷ୍ଟିଦାନ କରି ସବୁ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ଜାହିର କରିପାରିଥିବା ଏଇଭଳି ଅନେକ ସ୍ରଷ୍ଟାଙ୍କ ଭିତରୁ କବି ବୈଷ୍ଣବ ପାଣି ଅନ୍ୟତମ ।

କୁମାରପୂର୍ଣ୍ଣିମା ତିଥିରେ ୧୮୮୨ ମସିହାରେ କଟକ ଜିଲ୍ଲାର ମାହାଙ୍ଗା ଥାନା ଅନ୍ତର୍ଗତ କୋଠପଦା ଗ୍ରାମରେ ପିତା ସୁଦର୍ଶନ ପାଣି ଏବଂ ମାତା ଚାନ୍ଦଦେବୀଙ୍କ ଔରସରୁ ଜନ୍ମ ନେଇଥିଲେ ଏହି ପ୍ରଭାବଶାଳୀ କବିସତ୍ତା ଯାତ୍ରା ତଥା ଗୀତିନାଟ୍ୟ ଜଗତର ମୁକୁଟହୀନ ସମ୍ରାଟ ଗଣକବି ବୈଷ୍ଣବ ପାଣି । ବାଲ୍ୟଜୀବନ ଥିଲା ତାଙ୍କର ଦୁଃଖମୟ । ଅନେକ ଘାତ, ପ୍ରତିଘାତରେ ସେ ବଢିଥିଲେ । କଥାରେ ଅଛି 'ବିଦ୍ୟା ଥିଲେ ଧନ ନାହିଁ', ଏହାହିଁ ଘଟିଥିଲା ବୈଷ୍ଣବ ପାଣିଙ୍କ ଜୀବନରେ । ଦାରିଦ୍ର୍ୟର କଷାଘାତରେ ସେ ଜଳି ଜଳି ମଧ୍ୟ ନିଜର ଦୃଢ଼ ଇଚ୍ଛାଶକ୍ତି ଏବଂ କଅଁରପୁର ଗ୍ରାମର ଅଧିଷ୍ଠାତା ଦେବ ବିନୋଦ ବିହାରୀଙ୍କ ଅପାର କରୁଣାରୁ ସେ ଐଶ୍ୱରିକ୍ତ ଶକ୍ତି ଯୁକ୍ତ ହୋଇ ସୃଷ୍ଟି କରିଯାଇଛନ୍ତି ଶହ ଶହ କାବ୍ୟ, କବିତା, ଗୀତିନାଟ୍ୟ । ମାଳୀହତା ଗ୍ରାମର ଶ୍ମଶାନ ନିକଟରେ ଥିବା ଗ୍ରାମଦେବୀଙ୍କ ମନ୍ଦିର ପାଖରେ ଥିବା ଏକ କଦମ୍ବ ଗଛ ମୂଳରେ ବସି ସେ ଲେଖିଥିଲେ ତାଙ୍କର ପ୍ରଥମ ଗୀତାଭିନୟ 'ମେଘନାଦ ବଧ' । 'ନିଷ୍ଠା ହିଁ ସଫଳତାର

ଚାବିକାଠି' ଏହା ଗଣକବି ପ୍ରମାଣିତ କରି ଯାଇଛନ୍ତି ତାଙ୍କ ଜୀବଦ୍ଦଶାରେ । ତାଙ୍କ ସୃଷ୍ଟ ମାନସ ସନ୍ତାନମାନଙ୍କ ମଧ୍ୟରେ ଅଛି ୧୨୦ଟି ଗୀତିନାଟ୍ୟ, ଗୀତାଭିନୟ ଓ ସୁଆଙ୍ଗ, ୨୦ଟି ଫାର୍ମ, ୮୧ଟି କାବ୍ୟ କାହାଣୀ, ସଂଗୀତ, ଭଜନ, ଜଣାଣ ଓ ଅନ୍ୟାନ୍ୟ ଗ୍ରନ୍ଥ ।

ପିତାଙ୍କର ଆର୍ଥିକ ସ୍ଥିତି ଭଲ ନଥିବାରୁ ସେ ତାଙ୍କର ବିଧବା ପିଉସୀଙ୍କ ପାଖରେ ବାଲ୍ୟକାଳ କଟାଇଥିଲେ । ଦୁରାରୋଗ୍ୟ ରୋଗରୁ ସେ ତାଙ୍କ ପିତାଙ୍କର ମାନସିକ ଜଗନ୍ନାଥଙ୍କ ବଡଛତା ତଳେ ଗଡେଇ ଦେବା ଫଳରେ ମୁକ୍ତିଲାଭ, ପିଲାଦିନର ଡାକନାମ ଶତ୍ରୁଘ୍ନରୁ ବୈଷ୍ଣବ ଏବଂ ପରବର୍ତ୍ତୀ ଜୀବନ ବୈଷ୍ଣବ ପାଣି ଭାବରେ ପରିଚିତ ହେବା, ତାଙ୍କ ଜୀବନରେ ଥିଲା ଗୋଟିଏ ଗୋଟିଏ ଅଲୌକିକ ଘଟଣା । ମଠମହନ୍ତ ରଘୁନାଥ ପୁରୀ ଗୋସ୍ୱାମୀଙ୍କ ସାହାଯ୍ୟ ପାଇଁ ସେହି ମଠରେ ମାଳୀ ଭାବରେ, ସେଥିରୁ ନିଜର ଭୋକ ଶୋଷ ମେଣ୍ଟାଇବା ଏବଂ ନିଜର ସୁନ୍ଦର ଆକର୍ଷଣୀୟ ଚେହେରା ଦ୍ୱାରା ଯାତ୍ରା ଦଳରେ ଯୋଗଦାନ କୋଠପଦାରେ ଥିବା ସ୍ଥାୟୀ ରଙ୍ଗମଞ୍ଚରେ ସତେ ଯେମିତି ଅରକ୍ଷିତକୁ ଦଇବସାହା ପରି ଘଟି ଯାଇଥିଲା ତାଙ୍କ ଜୀବନରେ । ତାଙ୍କର ପ୍ରଥମ ନାଟ୍ୟ ଅଭିନୟ ଗୋଟିପୁଅ ନୃତ୍ୟରୁ ଆରମ୍ଭ ହୋଇଥିଲା । ଗୁରୁ ଶିବରାମ ସିଂହଙ୍କ ପାଖରୁ ନୃତ୍ୟଶିକ୍ଷା ଲାଭ କରିବା ପରେ ଉକ୍ତ ମହନ୍ତଙ୍କ ସାହାଯ୍ୟରେ ମଧ୍ୟ ତା'ପରେ ସେ ମହନ୍ତଙ୍କ ପ୍ରତିଷ୍ଠିତ ମାଇନର ସ୍କୁଲରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଥିଲେ । ପାଠପଢାର ଡୋରୀ ଫିଟାଇବାରେ ସାହାଯ୍ୟ କରିଥିଲେ ଉକ୍ତ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଶ୍ରୀ ଭୋଳାନାଥ ମିଶ୍ର ଏବଂ ସହକାରୀ ଶିକ୍ଷକ ଶ୍ରୀ ହୃଷିକେଷ ପଣ୍ଡା । ପାଠ ପଢିବା ସଙ୍ଗେ ସଙ୍ଗେ ବୈଷ୍ଣବ ପାଣି ଗୁରୁଙ୍କର ସେବା କରିବାରେ ଅବହେଳା କରି ନଥିଲେ । ଦାରିଦ୍ର୍ୟର କଷାଘାତ ଭିତରେ ମଧ୍ୟ ଏଇ ଗୁରୁମାନଙ୍କର ସ୍ନେହ, ଆଶୀର୍ବାଦ ଓ ସାହାଯ୍ୟ ପାଇ ସେ ପଛକୁ ଫେରିବାର ସ୍ୱପ୍ନ ନଦେଖି ଆଗକୁ ଆଗକୁ ବଢିବାର ସ୍ୱପ୍ନ ଦେଖିଥିଲେ, ଯାହାଫଳରେ ସେ ସୃଷ୍ଟି କରି ଚାଲିଥିଲେ ଅନେକ । ତାଙ୍କର ଯାତ୍ରାଭିନୟ ଲେଖାଗୁଡିକ ଥିଲା ସରଳ ଏବଂ ଗ୍ରାମୀଣ ଭାଷାପୂର୍ଣ୍ଣ । ଏହି ସ୍ରଷ୍ଟାଙ୍କର ସୃଷ୍ଟି ଭିତରୁ ପ୍ରସିଦ୍ଧିଲାଭ କରିଥିବା ପୌରାଣିକ ଗୀତିନାଟ୍ୟଗୁଡିକ ହେଲା– ବ୍ରଜଲୀଳା, କଂସବଧ, ଧ୍ରୁବ ଚରିତ, ରାବଣ ବଧ, ଜୟଦ୍ରଥ ବଧ, ମେଘନାଦ ବଧ, ମହୀରାବଣ ବଧ, ଲକ୍ଷ୍ମୀଲାଖ ବିନ୍ଧା, ହରପାର୍ବତୀ ବିଭା, ପ୍ରହ୍ଲାଦ ଚରିତ, କୀଚକ ବଧ, ସମ୍ବରାସୁର ବଧ, କର୍ଣ୍ଣାର୍ଜ୍ଜୁନ, ଚଣ୍ଡୀଯୁଦ୍ଧ, ଭୀଷ୍ମ ଶରଶର୍ଯ୍ୟା, ପ୍ରଭାସ ମିଳନ, ଲକ୍ଷ୍ମଣ ଶକ୍ତିଭେଦ, ବସ୍ତ୍ରହରଣ । ଐତିହାସିକ ଗୀତିନାଟ୍ୟ ମଧ୍ୟରେ କଳାପାହାଡ, ସଂଯୁକ୍ତା ପରିଣୟ । ରାଣୀ ଦୁର୍ଗାବତୀ, ଯଯାତି କେଶରୀ, ଚନ୍ଦ୍ରଗୁପ୍ତ, ମୀରାବାଈ ପ୍ରଧାନ । କିମ୍ବଦନ୍ତୀମୂଳକ ଗୀତିନାଟ୍ୟ ମଧ୍ୟରେ ସାକ୍ଷୀଗୋପାଳ, କେଦାରଗୌରୀ, ଗଙ୍ଗେଶ୍ୱର ଦେବ ଏବଂ କାଞ୍ଚିକାବେରୀ ପ୍ରଧାନ । ସାମାଜିକ ଗୀତିନାଟ୍ୟ ମଧ୍ୟରେ ଫକୀରମୋହନଙ୍କ କ୍ଷୁଦ୍ର ଗଳ୍ପ ପେଟେଣ୍ଟ ମେଡିସିନ୍ ଉପରେ ଆଧାରିତ 'ଡରାବାଈ ଫାର୍ଶ' । କାଞ୍ଚନ କୁମାରୀ, ଖୁଲଣାସୁନ୍ଦରୀ, ବିଦ୍ୟାସୁନ୍ଦର, ନିର୍ବାସିତ ରାଜପୁତ୍ର, ଜୟନ୍ତ ଜୟପାଳ, ମୋହନ ସୁନ୍ଦର ମଧ୍ୟ ତାଙ୍କର ଅନ୍ୟତମ ପ୍ରସିଦ୍ଧି ଲାଭ କରିଥିବା ସାମାଜିକ ଗୀତାଭିନୟ ପୁସ୍ତକ ।

ଏହି ବିରଳ ବ୍ୟକ୍ତିତ୍ୱଙ୍କ ଜୀବନରେ ଅନେକ ବିଘଟଣ ମଧ୍ୟ ଘଟିଥିଲା । ସେ ବହୁବାର ସମାଜ ଦ୍ୱାରା ନିନ୍ଦିତ ହୋଇଥିଲେ ମଧ୍ୟ ତାଙ୍କର ନୈତିକସ୍ଖଳନ ଯୋଗୁଁ ଯାହା ତାଙ୍କ ଆତ୍ମଜୀବନୀରୁ ଜଣାଯାଏ । ତାଙ୍କ ଜୀବନରେ ଗୀତିନାଟ୍ୟ ବ୍ୟତୀତ ସେ ଉପନ୍ୟାସ 'ଦୁଃଖିନୀ ଗୋବର ଗୋଟେଇ' ଲେଖି ଓଡ଼ିଶା ସାହିତ୍ୟ ଜଗତକୁ ରୁଦ୍ଧିମନ୍ତ କରିଛନ୍ତି । କାଳିଦାସଙ୍କ ଅଭିଜ୍ଞାନ ଶକୁନ୍ତଳମ୍ ନାଟକକୁ ଅବଲମ୍ବନ କରି ଲେଖିଛନ୍ତି 'ଶକୁନ୍ତଳା' ନାଟକ । ତାଙ୍କର ସ୍ୱଭାବ ସୁଲଭ ଗ୍ରାମଶୈଳୀ, ସାଙ୍ଗୀତିକତା ଓ ସରସ ବୋଧଗମ୍ୟତାକୁ ନେଇ ସମସ୍ତ ରଚନା ସମୃଦ୍ଧ । ତେଣୁ ସେ ତାଙ୍କ ଆବର୍ତ୍ତମାନରେ ମଧ୍ୟ ଲୋକମାନଙ୍କ ହୃଦୟରେ ଜୀଇଁ ରହିଛନ୍ତି ଏକ ସ୍ୱତନ୍ତ୍ର ସ୍ଥାନ ମାଡିବସି । ସେ କୃଷ୍ଣଭକ୍ତ ଥିବାରୁ ଭକ୍ତି ରସରେ ନିଜକୁ ବୁଡାଇ ରଖି ଶ୍ରୀରାଧା ଓ କୃଷ୍ଣଙ୍କ ଭିତରେ ଥିବା ଅତୁଟ ପ୍ରେମକୁ ନେଇ ସୃଷ୍ଟି କରିଛନ୍ତି 'ଛାନ୍ଦ କିଶୋରୀ ବିଳାପ' । ଏଥିରେ ସେ ଲେଖିଛନ୍ତି–

'ଆରତ କରନ୍ତି ସଖୀଙ୍କି/ବରତ ନପାରିବି ତଳେ ଆଉ,
ଆଉଜାଅ ଏ ମୋର ହୃଦକୁ/ଲଳିତେ ଏଜୀବ ବାହାରିଯାଉ ।'

ସେ ମଧ୍ୟ ସପ୍ତାହ ଭାଗବତ ମାହାତ୍ମ୍ୟ, କୁମାରୀ ରାମାୟଣ, ବିଲଙ୍କା ରାମାୟଣ ଆଦି ପୁରାଣ ଶାସ୍ତ୍ର ରଚନା କରିଛନ୍ତି । ଅନେକ ଭଜନ ଜଣାଣ ଲେଖି ସାହିତ୍ୟ ଜଗତକୁ ରସସିକ୍ତ କରାଇ ପାରିଛନ୍ତି । ଦେବୀ ଶାରଳାଙ୍କୁ ସେ ସ୍ତୁତି କରି ଗାଇଛନ୍ତି–

କନକପୁରବାସୀ କନକ ଦାତ୍ରୀ,
କୃପାଜନ ନନ୍ଦିନୀ ଶୁଣ ବିନତି ଗୋ...
କରୁଣାମୟୀ... ।

କୃଷ୍ଣଙ୍କ ଉଦ୍ଦେଶ୍ୟରେ ସେ ଲେଖିଛନ୍ତି–

'କାଇଁଚ ମାଳିଆ କାଳିନ୍ଦୀ କୂଳିଆ
କାଳିଆ ବ୍ରଜ ସମ୍ପତ୍ତି,
ରସ ବିନୋଦିଆ ରସର ଥାଳିଆ
ଚନ୍ଦ୍ରାବଳୀ ପ୍ରାଣପତି... ।'

ଏତେ ରସସିକ୍ତ ଲେଖା ଲେଖିଥିବା ବେଳେ ତାଙ୍କ ହୃଦୟରୁ ନିଜ ଜନ୍ମଭୂମି ପାଇଁ ମଧ୍ୟ ସଂଗ୍ରାମୀର ସ୍ୱର ଫୁଟି ଉଠିଥିଲା, ଯାହା ଅନେକଙ୍କୁ ଆଶ୍ଚର୍ଯ୍ୟ ଲାଗିଥାଏ । ଭାରତମାତାର ଇଂରେଜ ସରକାରଠାରୁ ମୁକ୍ତି ପାଇଁ ସେ ଲେଖିଥିଲେ–

ଗର୍ଜ୍ଜନ କର ମାତୃ ମମତା
ଅର୍ଜନ କର ଦେଶ...

ସଂଗୀତର ଅପୂର୍ବ ଲୟ ଓ ସ୍ୱର ଶବ୍ଦ ଚୟନରେ ବିଶିଷ୍ଟତା ଓ ଗୀତ ରଚନାରେ ତାଙ୍କର ମୌଳିକତା ପରିଲକ୍ଷିତ ହୋଇଥାଏ । ଏହି ରସିକ ପ୍ରବର ପ୍ରେମିକ କବି ପ୍ରେମକୁ ନେଇ ଗାଇଥିଲେ–

'ନାହିଁ ପ୍ରେମଠାରୁ ବଳି ଆଉ ଭଲ ଦରବ,
ତା' ନେତ୍ରେ ନଥାଏ କେବେ ଧନୀ ଗରିବ ।'

ଅନ୍ୟ ଏକ ପଙ୍କ୍ତିରେ ଲେଖିଛନ୍ତି:

'ପ୍ରେମ ଈଶ୍ୱର ବଶ ତାଙ୍କ ଦାସର ଦାସ,
ସେହି ପ୍ରେମ ମନ୍ତ୍ର ଜପି ବୈଷ୍ଣବ ହେବ ।'

ଏହି ସ୍ରଷ୍ଟାଙ୍କର କାଳଜୟୀ ସୃଷ୍ଟିଗୁଡିକରେ ଅଛି ସୌନ୍ଦର୍ଯ୍ୟବୋଧ, ଦର୍ଶନ ଓ ଶିକ୍ଷାର ଏକ ଅପୂର୍ବ ସମନ୍ୱୟ । ଜୀବନର ଶେଷ ପାହାଚରେ ଉପନୀତ ଥିବା ସମୟରେ ଦାରିଦ୍ର୍ୟର କଷାଘାତ ତାଙ୍କୁ ଆହୁରି ଜାବୁଡି ଧରିଥିଲା । ନିଃସହାୟ ହୋଇ ସେ ସରକାରୀ ସାହାଯ୍ୟ ଆଶାରେ ଡଃ ହରେକୃଷ୍ଣ ମହତାବଙ୍କୁ ଗୁହାରୀ ଜଣାଇଥିଲେ କବିତା ପଙ୍କ୍ତିରେ । ସେ ଲେଖିଥିଲେ–

'ଶହ ଶହ ବହି ଉତ୍କଳ ଭାଷାରେ,
ଲେଖି ଭୋକେ ପଡି ମରୁଛି ବସାରେ ।'

କିନ୍ତୁ କୌଣସି ସାହାଯ୍ୟ ଏହି ମହାନ ସ୍ରଷ୍ଟାଙ୍କ ପାଖରେ ନପହଞ୍ଚିବାରୁ ସେ ପୁନଶ୍ଚ ଲେଖିଥିଲେ–

'ସଚିବମାନଙ୍କ ନପଡେ ନଜର
ଏହା ଚିନ୍ତି ଘୋଟିଯାଏ ଚିନ୍ତା ଜ୍ୱର ।'

ତଥାପି ସରକାରୀ ସହାଯ୍ୟରୁ ସେ ବଞ୍ଚିତ ହୋଇଥିଲେ । ପତ୍ନୀ ବିୟୋଗ ପରେ ଦାରିଦ୍ର୍ୟ ତାଙ୍କ ଜୀବନକୁ ଶୂନ୍ୟ କରି ଦେଇଥିଲା । ଅତି ଦୟନୀୟ ଅବସ୍ଥାରେ ୭୨ବର୍ଷ ବୟସରେ ୧୯୫୬ ମସିହା ବୈଶାଖ ଅମାବାସ୍ୟା (୧୯୫୬ ମଇ ମାସ ୧୦ ତାରିଖ) ତିଥିରେ ଏହି ଶ୍ରେଷ୍ଠ ସାଧକଙ୍କର ଜୀବନ ଦୀପ ସବୁଦିନ ପାଇଁ ଲିଭି ଯାଇଥିଲା ସତ, ମାତ୍ର ଗୀତିନାଟ୍ୟ ଜଗତର ମୁକୁଟ ବିହୀନ ସମ୍ରାଟ ଗଣକବି ବୈଷ୍ଣବ ପାଣି ଚିରଦିନ ଜାଜ୍ୱଲ୍ୟମାନ ହୋଇ ରହିଛନ୍ତି, ରହିଥିବେ ସମସ୍ତ କଳାପ୍ରେମୀ ଓ ସାହିତ୍ୟାନୁରାଗୀଙ୍କ ହୃଦୟରେ । ସମୁଦ୍ର ମନ୍ଥନରୁ ଅମୃତ ଆତ୍ମପ୍ରକାଶ କଲାପରି ଏହି ସ୍ରଷ୍ଟାଙ୍କର ସମଗ୍ର ସୃଷ୍ଟିକୁ ଯଦି ଅନୁଶୀଳନ କରାଯାଏ ତେବେ ବିଶ୍ୱଚେତନାରେ ଉବୁଟୁବୁ ହୋଇ ସାରିଥିବା ଏହି କାଳଜୟୀ କୃତି ସମୂହ ଯୁଗଯୁଗ ଧରି ଆଗାମୀ ପିଢିକୁ ପ୍ରେରଣା ଦେଉଥିବ ନିଶ୍ଚୟ । ଓଡ଼ିଶା ସାଂସ୍କୃତିକ ଜଗତର ଏଇ ମୁକୁଟ ବିହୀନ ସମ୍ରାଟ ଯୁବପିଢିଙ୍କୁ ପ୍ରେରଣା ଦେଉଥିବେ ଯୁଗ ଯୁଗ ଧରି ତାଙ୍କର ସାମଗ୍ରିକ କୃତି ମାଧ୍ୟମରେ ମୁଖ୍ୟ ନାୟକର ଭୂମିକା ନେଇ, ଏହା ନିଃସନ୍ଦେହ ।

ବୈଶାଖ କୃଷ୍ଣ ଅମାବାସ୍ୟା ତାଙ୍କର ତିରୋଧାନ ଦିବସରେ ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ପ୍ରଦାନ ପୂର୍ବକ ଆସନ୍ତୁ ଏଇ ପୁଣ୍ୟାତ୍ମା ପୁରୁଷଙ୍କର ଗୁଣଗ୍ରାହୀ ହେବା ।

ଶିକ୍ଷୟିତ୍ରୀ, ସରକାରୀ ଉଚ୍ଚ ବିଦ୍ୟାଳୟ,
ଖଣ୍ଡଗିରି, ଭୁବନେଶ୍ୱର–୭୫୧୦୩୦

❖ ❖ ❖

# ଉତ୍କଳ ବାଚସ୍ପତି ଗୌରୀକୁମାର ବ୍ରହ୍ମା

ପାର୍ଥସାରଥି ଅଜୟ ବାରିକ

ଗଲା ୮–୯ ବର୍ଷ ତଳର କଥା । ଓଡ଼ିଶା ସଙ୍ଗୀତ ନାଟକ ଏକାଡେମୀ ପକ୍ଷରୁ ରାଜ୍ୟସ୍ତରୀୟ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ ପାଳନ କରାଯାଉଥାଏ କବିଙ୍କ ଜନ୍ମପୀଠ କୁଳାଡ (ଗଞ୍ଜାମ ଜିଲ୍ଲା ଭଞ୍ଜନଗର ନିକଟସ୍ଥ)ରେ । ମୁଁ ଥାଏ ସେଦିନ ମୁଖ୍ୟବକ୍ତା । ଠିକ୍ ସନ୍ଧ୍ୟା ୭ଟାରେ ସଭା ଆରମ୍ଭ ହେଲା । ଏକାଡେମୀର ସମ୍ପାଦକ ଅତିଥି ପରିଚୟ କରିସାରିବା ପରେ, ମୋ ପାଳି ପଡିଲା । ମୁଁ ଭାଷଣ ଆରମ୍ଭ କଲି...

ଏ ଯେଉଁ ମାଟି ଉପରେ ଆଜି ମୁଁ ଛିଡା ହୋଇଛି, ଏହା ମହାନ୍ । ଏହାର ଗରିମା ସମଗ୍ର ବିଶ୍ୱରେ ବିରଳ । ଆପଣମାନେ ଜାଣି ଆଶ୍ଚର୍ଯ୍ୟ ହେବେ, ଏ ମାଟିରେ ଭିନ୍ନ ଭିନ୍ନ ସମୟରେ ତିନି ଜଣ ସମ୍ରାଟଙ୍କ ଆବିର୍ଭାବ ହୋଇଛି ।

ଉପସ୍ଥିତ ଦର୍ଶକ ମଣ୍ଡଳୀ ମତେ ଅପଲକ ନୟନରେ ଚାହିଁ ଥାଆନ୍ତି । କୁଆଡେ କିଛି ସ୍ୱର ଶବ୍ଦ ନାହିଁ ।

ଆଜି ଯାହାଙ୍କ ଜୟନ୍ତୀ ପାଳନ କରାଯାଉଅଛି, ସେ ହେଉଛନ୍ତି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ । ଓଡ଼ିଆ କାବ୍ୟ, ଭାଷା ଓ ସାହିତ୍ୟର ସେ ମଉଡମଣି । ଭାରତୀୟ ସାହିତ୍ୟର ବିସ୍ମୟ । ବିଶ୍ୱର ଅନ୍ୟତମ ମହାକବି ।

ଉପସ୍ଥିତ ବିଦଗ୍ଧ ଶ୍ରୋତାମଣ୍ଡଳୀ କରତାଳ ଦେଇ ମୋ କଥାକୁ ସମ୍ମତି ପ୍ରଦାନ କଲେ । ତେବେ ସେମାନଙ୍କ ଭିତରେ ପ୍ରଶ୍ନ, ଏ ଦ୍ୱିତୀୟ ସମ୍ରାଟ କିଏ ?

ଆପଣମାନେ ସମସ୍ତେ ଶୁଣିଥିବେ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ କଥା । ଏକଦା ସେ ମହାଭାଗଙ୍କ ଦେୱାନ ଥିଲେ ଲକ୍ଷ୍ମୀନାରାୟଣ ପଟ୍ଟନାୟକ । ତାଙ୍କ ସୁପୁତ୍ର ହେଉଛନ୍ତି ବିଜୟାନନ୍ଦ ପଟ୍ଟନାୟକ (ବିଜୁ ପଟ୍ଟନାୟକ) । ତାଙ୍କ ଜୀବନ କାଳ ମଧ୍ୟରେ ଓଡ଼ିଶା ନୁହେଁ କି ଭାରତ ନୁହେଁ, ସମଗ୍ର ବିଶ୍ୱସ୍ତରରେ ସେ ବହୁ ଚମକପ୍ରଦ ଘଟଣାମାନ ଘଟାଇଛନ୍ତି । ତାଙ୍କ ଜୀବଦ୍ଦଶାରେ ବିଦେଶରେ ଇଣ୍ଡୋନେସିଆ ସରକାର ତାଙ୍କୁ 'ଭୂମିପୁତ୍ର' ଉପାଧି ପ୍ରଦାନ କରିଥିଲେ । ତାଙ୍କ ପରଲୋକରେ ଦୁଇ ଦୁଇଟା ଦେଶର ଜାତୀୟ ପତାକା ଅର୍ଦ୍ଧନମିତ କରାଯାଇଥିଲା । ଏହି ବିଜୁ ପଟ୍ଟନାୟକ ହେଉଛନ୍ତି ଭଞ୍ଜ ଭୂମିର ସନ୍ତାନ । କଳିଙ୍ଗର ଗୌରବ । ଯଥାର୍ଥରେ କଳିଙ୍ଗ ସମ୍ରାଟ ବିଜୁ ପଟ୍ଟନାୟକ ।

ଏଥର ଉପସ୍ଥିତ ଜନତାଙ୍କର ସନ୍ଦେହ ଦୂରୀଭୂତ ହେଲା । ଏକାଡେମୀର ତତ୍କାଳୀନ ଉପସଭାପତି ସ୍ୱର୍ଗତ ସିକନ୍ଦର ଆଲାମ ମୋ ଆଡକୁ ନିରୀକ୍ଷଣ କରି ଅନାଇଥାନ୍ତି । ସମସ୍ତଙ୍କ ମନରେ ଉଙ୍କି ମାରୁଥାଏ ଗୋଟାଏ ପ୍ରଶ୍ନ– ଏ ତୃତୀୟ ସମ୍ରାଟ କିଏ ?

ଏହି ଭଞ୍ଜଭୂମିର ଆଉ ଜଣେ ଯୋଗ୍ୟ ସମ୍ରାଟ ହେଉଛନ୍ତି, ବିଖ୍ୟାତ ବାଗ୍ମୀପ୍ରବର ଯିଏ କି ତାଙ୍କ ବାଗ୍ମୀତାରେ କେବଳ ଉତ୍କଳ ନୁହେଁ, ଭାରତର ବହୁ ପ୍ରମୁଖ ସ୍ଥାନ ଓ ସର୍ବୋପରି ଆନ୍ତର୍ଜାତିକ ସ୍ତରରେ ଉତ୍କଳ ପାଇଁ ଗୌରବ ଆଣି ଦେଇଛନ୍ତି । ସେ ଖ୍ୟାତି ଲାଭ କରିଛନ୍ତି ଉତ୍କଳ ବାଚସ୍ପତି ଭାବରେ, ମହାପୁରୁଷ ଭାବରେ, କବି କୋକିଳ ଭାବରେ, ଭଞ୍ଜ ବିଶାରଦ ଭାବରେ, ମେହେର ସାହିତ୍ୟ ବିଶାରଦ ଭାବରେ, ଜଗନ୍ନାଥ ସଂସ୍କୃତିର ପ୍ରଖ୍ୟାତ ଗବେଷକ ଭାବରେ ଏବଂ ସର୍ବୋପରି ପ୍ରାଚୀନ ଓଡ଼ିଆ ସାହିତ୍ୟର ଚାବିକାଠି ଭାବରେ । ସେ ଆଉ କେହି ନୁହଁନ୍ତି, ସେ ହେଉଛନ୍ତି ବାଗ୍ମୀସମ୍ରାଟ ଉତ୍କଳ ବାଚସ୍ପତି ପ୍ରଫେସର ଗୌରୀକୁମାର ବ୍ରହ୍ମା ।

ଶ୍ରୋତାମଣ୍ଡଳୀ ଘନ ଘନ କରତାଳି ଦେଇ ଗଗନ ପବନ ପ୍ରକମ୍ପିତ କଲେ । ନିଜ ମାଟି ପୁଅର ଗୌରବ ଗାଥା ଶୁଣିଲେ କିଏ ବା ଉଲ୍ଲସିତ ନହେବ ? କରତାଳ ପ୍ରାୟ ଦୁଇ ମିନିଟ୍ ଧରି ଚାଲିଲା । ମୁଁ ଉପସ୍ଥିତ ଜନତାଙ୍କ ଆବେଗକୁ ଲକ୍ଷ୍ୟ କରୁଥାଏ ।

ସତରେ, ଗୌରୀକୁମାର ବ୍ରହ୍ମା କେବଳ ଉତ୍କଳ ବାଚସ୍ପତି ନୁହଁନ୍ତି, ମଣିଷ ହୃଦୟର ବାଚସ୍ପତି ।

ଯେମିତି ଭଞ୍ଜ କହିଲେ, ଆମେ ବୁଝିଥାଉ– କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କୁ । ଆଉ ଯେତେ ଭଞ୍ଜ ସାଙ୍ଗାଧାରୀ ଥିଲେ ବି ସେମାନଙ୍କ କଥା ମନକୁ ଆସେ ନାହିଁ । ସେହିଭଳି ଗାନ୍ଧୀ କହିଲେ ଆମେ ବୁଝୁ ମହାତ୍ମା ଗାନ୍ଧୀଙ୍କୁ । ସେହିପରି ନେହେରୁ କହିଲେ, କେବଳ ପଣ୍ଡିତ ଜବାହରଲାଲ ନେହେରୁ । ମେହେର କହିଲେ ଏକମାତ୍ର ସ୍ୱଭାବକବି ଗଙ୍ଗାଦର ମେହର ହିଁ ବୁଝାପଡେ । ଉତ୍କଳମଣି କହିଲେ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ ବୁଝିଥାଉ । ମହତାବ କହିଲେ ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବଙ୍କୁ ହିଁ ଆମେ ବୁଝୁ । ସେହି ନ୍ୟାୟରେ ହଜାରେ ବ୍ରହ୍ମା ସାଙ୍ଗାଧାରୀ ବ୍ୟକ୍ତି ଥିଲେ ବି ଛାତ୍ର, ଶିକ୍ଷକ, ଅଧ୍ୟାପକ, କୁଳପତି, ପ୍ରଶାସକ, ରାଜନୀତିଜ୍ଞ ଓ ସର୍ବୋପରି ପଣ୍ଡିତ ମଣ୍ଡଳୀ କେବଳ ଗୌରୀକୁମାର ବ୍ରହ୍ମାଙ୍କୁ ବୁଝିଥାନ୍ତି । ବାସ୍ତବରେ ସେ ଗୌରୀକୁମାର । ତାଙ୍କର ପିତା ହେଉଛନ୍ତି ଚନ୍ଦ୍ରଶେଖର (ପ୍ରଖ୍ୟାତ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମା) । ଗୌରୀକୁମାର ଅର୍ଥାତ୍ ମହାନ ପଣ୍ଡିତ, ବିଦ୍ୟାଦାତା, ଗଜାନନ ଗଣେଶ । ପୁଣି ଗୌରୀକୁମାର କାର୍ତ୍ତିକେୟ– ଦେବତାମାନଙ୍କର ସେନାପତି । ବ୍ରହ୍ମା ମହୋଦୟ ମଧ୍ୟ ବରେଣ୍ୟ ସାହିତ୍ୟିକ, ଗବେଷକ ଓ ପଣ୍ଡିତମାନଙ୍କର ସେନାପତି । ଶେଷରେ ବ୍ରହ୍ମା, ଅର୍ଥାତ୍ ଚତୁର୍ମୁଖ ବ୍ରହ୍ମା । ବ୍ରହ୍ମା ବିଳିବିଳିଇଲେ ବେଦ । ହଜାର ହଜାର ଛାତ୍ରଛାତ୍ରୀଙ୍କର ସେ ସର୍ଜନାକାରୀ । ବାସ୍ତବରେ ତାଙ୍କର ନାମକରଣ ଗୁଣରେ ହିଁ ଫୁଟି ଉଠିଛି । ସୁନ୍ଦର ବଳିଷ୍ଠ ଶରୀର, ଦେବପୋମ ମୁଖର କାନ୍ତି ! ଅନେକ ଅଧ୍ୟାପକ (ଯେଉଁମାନଙ୍କର ସ୍ୱଳ୍ପ ଜ୍ଞାନ) ସେମାନଙ୍କ ପାଇଁ ସେମାନେ ଆତଙ୍କ ।

ପ୍ରଫେସର ବ୍ରହ୍ମାଙ୍କ ସହିତ ୧୯୮୧ ମସିହାରୁ ମୋର ସମ୍ପର୍କ ସ୍ଥାପିତ ହୁଏ । ତାହା ପୁଣି ଏକ ନାଟକୀୟ ଢଙ୍ଗରେ ।

ଭୁବନେଶ୍ୱର ସୂଚନା ଭବନରେ ହେଉଥାଏ ସ୍ୱଭାବ କବି ଗଙ୍ଗାଧର ମେହର ଜୟନ୍ତୀ । ଉତ୍ସବର ଉଦ୍‌ଘାଟକ ଥାଆନ୍ତି ତତ୍କାଳୀନ ମୁଖ୍ୟମନ୍ତ୍ରୀ ସାହିତ୍ୟ ରସିକ ଜାନକୀ ବଲ୍ଲଭ ପଟ୍ଟନାୟକ । ସମ୍ମାନିତ ଅତିଥି ତତ୍କାଳୀନ ଶିକ୍ଷାମନ୍ତ୍ରୀ ଗଙ୍ଗାଧର ମହାପାତ୍ର । ମୁଖ୍ୟବକ୍ତା ଆସନ ଅଳଙ୍କୃତ କରିଥାନ୍ତି ଗୌରୀକୁମାର ବ୍ରହ୍ମା ।

ବ୍ରହ୍ମାଙ୍କ ନାମ ମୁଁ ମୋ ପିତାଙ୍କଠାରୁ ବହୁ ଆଗରୁ ଶୁଣିଥାଏ । କିନ୍ତୁ କେବେ ଦେଖିବାର ସୁଯୋଗ ପାଇନଥାଏ । ଆଜି ହଠାତ୍ ଦେଖି ମନ ଆନନ୍ଦରେ କୁରୁଳି ଉଠୁଥାଏ । ମାନ୍ୟବର ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନୀ ଭାଷଣ ଦେଇ ସାରିବା ପରେ ଛିଡା ହେଲେ ପ୍ରଫେସର ବ୍ରହ୍ମା ମୁଖ୍ୟବକ୍ତା ଭାବରେ ଭାଷଣ ଦେବା ପାଇଁ । ଚାରିଆଡେ ନିରବତା । ବ୍ରହ୍ମା ଅନର୍ଗଳ କହି ଚାଲିଥାନ୍ତି । ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ଶୁଣୁଥାନ୍ତି । ମୁଁ ଆଗରେ ବସି ଅଥୟ ହେଉଥାଏ । ଟିକିଏ ସୁଯୋଗ ପାଆନ୍ତି କି, ଦି' ପଦ କହିପକାନ୍ତି । ସଭାରେ ସଭାପତିତ୍ୱ କରୁଥିଲେ ତତ୍କାଳୀନ ହୋମ୍ ସେକ୍ରେଟାରୀ ବିଘ୍ନରାଜ ପଟେଲ, ଆଇ.ଏ.ଏସ୍. ।

ସାନଭାଇ ହାତରେ ଚିରିକୁଟି ଖଣ୍ଡେ ପଠେଇ ଦେଲି (ମୋ ନାଁ ଲେଖି) କିଛି କହିବା ପାଇଁ । ପଟେଲ୍ ମହୋଦୟ ଚିରିକୁଟି ଟିକୁ ଦେଖି ହଠାତ୍ ମନା କରିଦେଲେ । କହିଲେ– ନାଇଁ, ନାଇଁ, ଇଏ ମୁଖ୍ୟମନ୍ତ୍ରୀଙ୍କ ପ୍ରୋଗ୍ରାମ । ଏଠି କହିହେବ ନାହିଁ । ଆଉ କେବେ ଦେଖିବା... ।

ପଟେଲ୍ ବାବୁ ଟିକିଏ ବାଙ୍ଗରା ଲୋକ । ମୋ ସାନଭାଇ ତ ସ୍କୁଲର ଛାତ୍ର । ସେ ବା ହୋମ୍ ସେକ୍ରେଟାରୀଙ୍କ ପ୍ରଭାବ କ'ଣ ବୁଝିବ ! ଏଣୁ ତାଙ୍କୁ ଏକବାରକେ ଧମକାଇ ଦେଲା– ଆପଣ ଯଦି ସୁଯୋଗ ନଦେବେ, ତାହାହେଲେ ଆମେ ପଚାଶ ପିଲା ଆସିଛୁ, ଘୋଘା କରି ମିଟିଂ ଭାଙ୍ଗିଦେବୁ ।

ପଟେଲ ମହୋଦୟ ସ୍ମିତ ହସି କହିଲେ– ନାଇଁ ନାଇଁ, ସେମିତି କରିବନି । ଯଦି ଚାହୁଁଛ, ମୁଁ ପାଞ୍ଚ ମିନିଟ୍ ସମୟ ଦେବି ।

ବ୍ରହ୍ମାଙ୍କ ଭାଷଣ ପରେ ପରେ ଓ ଶିକ୍ଷାମନ୍ତ୍ରୀ କହିବା ପୂର୍ବରୁ ପଟେଲ ମହୋଦୟ ମତେ ଡାକି ଦେଲେ କହିବା ପାଇଁ ।

ମୁଁ ମଞ୍ଚ ଉପରକୁ ଚଢିଗଲି । ହଠାତ୍ କହି ଚାଲିଲି– ବନ୍ଧୁଗଣ ! ମୋ ଭଳି ଏକ ଅକିଞ୍ଚନ ଏବଂ ଅର୍ବାଚୀନ ଆପଣଙ୍କ ସମ୍ମୁଖରେ ଦଣ୍ଡାୟମାନ ମେହେର ସାହିତ୍ୟର ରସ ପରିବେଷଣ କରିବା ପାଇଁ । ଆମର ପରମ ସୌଭାଗ୍ୟ ଉତ୍କଳର ଜଣେ ବରପୁତ୍ର ଆସିଛନ୍ତି ଆଉ ଜଣେ ବରପୁତ୍ରଙ୍କୁ ଶ୍ରଦ୍ଧାଞ୍ଜଳି ଦେବା ପାଇଁ । ଏ ଅବସରରେ ମୋ ମନ ଚାଲିଯାଉଛି ମେହେର ସାହିତ୍ୟର ବିଖ୍ୟାତ କବିତା 'ମଳୟ ଆବାହନ' ଭିତରକୁ...

'ଯେମନ୍ତେ ପ୍ରଚଣ୍ଡ ଗ୍ରୀଷ୍ମ ହୋଇଥିଲା
ତହୁଁ ବଳି ଗଲା ଶୀତ
ନିଜେ ବିଭାବସୁ ଅନଳ କୋଣକୁ
ଦଉଡିଲେ ହୋଇ ଭୀତ ।'

ଅର୍ଥାତ୍ ଯେମିତି ପ୍ରଚଣ୍ଡ ହୋଇଥିଲା ଜାନକୀବାବୁଙ୍କ ଭାଷଣ ତାଙ୍କଠାରୁ ବହୁ ଗୁଣରେ ବଳିଗଲେ ପ୍ରଫେସର ବ୍ରହ୍ମା ।

ମୁଁ ହେଉଛି ବିଭାବସୁ ସୂର୍ଯ୍ୟ । ମତେ ବର୍ତ୍ତମାନ ଅନଳ କୋଣ ଅର୍ଥାତ୍ ମୋ ସିଟ୍‌କୁ ଯିବା ପାଇଁ ଇଚ୍ଛା ହେଉଛି । ତଥାପି କଥାରେ ଅଛି– 'ମା କୋଳେ ପୁଅ ଦୁନିଆ ଡରେନା । ବାପା ଥିଲା ପୁଅ ସଭାରେ ହାରେନା ।' ପ୍ରଫେସର ବ୍ରହ୍ମା ଯଦିଓ ମୁଁ ତାଙ୍କ ପାଖେ ପଢ଼ିବାର ସୁଯୋଗ ପାଇନାହିଁ, ତଥାପି ସେ ମୋ ପିତୃକଳ୍ପ । ତେଣୁ ଏଭଳି ଜଣେ ପିତା ମୋର ପଛରେ ଅଛନ୍ତି, ମୋର ଆଉ ଭୟ କରିବାର କାରଣ ନାହିଁ । ଆପଣମାନେ ସମସ୍ତେ ମୋର ବନ୍ଧୁ । ମେହେରଙ୍କ ଭାଷାରେ...

'ବନ୍ଧୁ ନିକଟରେ ମନକଥା ସିନା
କହିବାକୁ ଲାଗେ ସୁଖ
ବସନ୍ତ ନିକଟେ ତହିଁ ପାଇଁ ସିନା
ପିକ ହୁଏ ବାବଦୁକ ।'

ଏଣୁ ଆପଣମାନେ ଯଦି ଅନୁମତି ଦିଅନ୍ତେ, ମୁଁ ପିକ ସାଜିବା ପାଇଁ ଇଚ୍ଛା କରନ୍ତି । ଏହା ଭିତରେ ପାଞ୍ଚ ମିନିଟ୍ ସରି ଗଲାଣି । ଦର୍ଶକମଣ୍ଡଳୀରୁ ଅନୁରୋଧ ଆସୁଥାଏ ଆଉ କହିବା ପାଇଁ ।

ମୁଁ କହିଲି– ବନ୍ଧୁଗଣ ! ଇନ୍ଦୁମତିର ସ୍ୱୟମ୍ବର ସଭା । ରାଜାମାନଙ୍କର ଗୋଟିକ ପରେ ଗୋଟିଏ ଆଗମନ । ସେମାନଙ୍କ ଜ୍ୟୋତିରେ ରାଜସଭା ଜାଜ୍ୱଲିତ ହେଉଛି । ସମସ୍ତ ରାଜନ୍ୟମଣ୍ଡଳୀ ଆସନ ଗ୍ରହଣ କରି ସାରିବା ପରେ ଶେଷରେ ଆସୁଛନ୍ତି ସୂର୍ଯ୍ୟବଂଶର ମହାମହିମ ପ୍ରତିଭାଧାରୀ ରାଜନ ଅଜ । ଅନ୍ୟସବୁ ରାଜାମାନେ ତାରା ହେଲେ ଅଜଙ୍କ ଜ୍ୟୋତିଥିଲା ସବୁଠାରୁ ଜାଜ୍ୱଲ୍ୟମାନ । ଅର୍ଥାତ୍ ସେ ଥିଲେ ପୂର୍ଣ୍ଣଚନ୍ଦ୍ର । ଯେମିତି ଆମେ ସୂଚନା ଭବନରେ ପ୍ରବେଶ କଲୁ, ଆମ ଜ୍ୟୋତିରେ ଏ ସୂଚନା ଭବନ ପ୍ରେକ୍ଷାଳୟ ଝଟକି ଉଠୁଛି । ମେହେରଙ୍କ ଭାଷାରେ...

'ପୂର୍ଣ୍ଣ କଳାକାର ସମୁଦିତ ହେଲେ
ତାରା କୁଳ ଯଥା ମ୍ଳାନ
ଅଜ ଆଗମନେ ନୃପମାନଙ୍କର
ହ୍ରାସ ହେଲା ଅଭିମାନ ।'

ବନ୍ଧୁଗଣ ! ଏ ପଦକୁ ଟିକିଏ ପରିବର୍ତ୍ତନ କରି କହିଲେ ହେବ...

'ପୂର୍ଣ୍ଣ କଳାକାର ସମୁଦିତ ହେଲେ
ତାରା କୁଳ ଯଥା ମ୍ଳାନ
ବ୍ରହ୍ମା ଆଗମନେ ଆତ୍ମମାନଙ୍କର
ହ୍ରାସ ହେଲା ଅଭିମାନ ।'

ଅର୍ଥାତ୍ ମେହେର ସାହିତ୍ୟରେ ପ୍ରଫେସର ବ୍ରହ୍ମା ହେଉଛନ୍ତି ପୂର୍ଣ୍ଣଚନ୍ଦ୍ର । ତେଣୁ ତାଙ୍କ ପାଖରେ ଆମ ଜ୍ୟୋତି ବା କୁଆଡୁ ରହନ୍ତା । ହଠାତ୍ ଦେଖାଗଲା ପ୍ରଫେସର ବ୍ରହ୍ମା ଆସନରୁ ଉଠି ଆସି ସେହି ମଞ୍ଚ ଉପରେ ମତେ ଆଲିଙ୍ଗନ କଲେ । କହିଲେ, ଅଜୟବାବୁ ! ପୂର୍ବଜନ୍ମରେ ଆପଣ ମୋର ଭାଇଥିଲେ । ନହେଲେ ଏଭଳି ପ୍ରତ୍ୟୁତ୍ପନ୍ନମତିତା ଦୀର୍ଘ ଭାଷଣ ଜୀବନରେ ମୁଁ ଶୁଣି ନାହିଁ । ଯାହାର ପରିଣାମ ସ୍ୱରୂପ ୧୯୮୧ରୁ ୨୦୧୧– ଦୀର୍ଘ ତିରିଶ ବର୍ଷ ଧରି ପ୍ରଫେସର ବ୍ରହ୍ମାଙ୍କ ସହିତ ଏ ଅକିଞ୍ଚନର ସମ୍ପର୍କ ଥିଲା ଅତ୍ୟନ୍ତ ନିବିଡ଼– ଏହା କହିବା ବାହୁଲ୍ୟ ମାତ୍ର । ଓଡ଼ିଶାର ବହୁ କୋଣ ଅନୁକୋଣ ଆମେ ଏକାଠି ଯାଇଛୁ, ଭାଷଣ ଦେବା ପାଇଁ ।

ଓଡ଼ିଆ ବିଭାଗର ପ୍ରଫେସର କିନ୍ତୁ ଇଂରାଜୀ ଭାଷା ଓ ସାହିତ୍ୟରେ ଅଖଣ୍ଡ ଆଧିପତ୍ୟ । ତାଙ୍କର ସୁଯୋଗ୍ୟ ପିତା ମହାନ ପଣ୍ଡିତ ଚନ୍ଦ୍ରଶେଖର ବ୍ରହ୍ମାଙ୍କ ଉପରେ ମୁଁ ଏକ ନିବନ୍ଧ ଲେଖିଥିଲି, ଇଂରାଜୀରେ । ସେଇଟିକୁ 'ଦି ହିନ୍ଦୁ'ରେ ଛପାହେବା ପାଇଁ ପଠାଯିବା ପୂର୍ବରୁ ଜଣେ ବିଖ୍ୟାତ ଇଂରାଜୀ ପ୍ରଫେସରଙ୍କୁ ଦେଖାଇଲି । ସେ ମହାଶୟ ନିବନ୍ଧଟିର ଓ ଇଂରାଜୀ ଭାଷାର ବହୁ ପ୍ରଶଂସା କରି ମତେ ତାରିଫ୍ କଲେ । କିନ୍ତୁ ମୁଁ ମୋର ଭୁଲ୍‌ଟିକୁ ଅନୁଭବ କରୁଥାଏ ହେଲେ କେଉଁଠି ଭୁଲ୍ ହୋଇଛି ତାହା ଜାଣିପାରୁ ନଥାଏ । ସେହି ନିବନ୍ଧଟିକୁ ନେଇ ପ୍ରଫେସର ବ୍ରହ୍ମାଙ୍କୁ ଦେଖାଇଲି । ସେ ତନ୍ନତନ୍ନ କରି ପଢ଼ିଲେ । ପଢ଼ିସାରି ତିନି ଜାଗାରେ ନାଲିଗାର ମାରିଲେ ଓ ସଙ୍ଗେ ସଙ୍ଗେ ତାସଲ୍ୟ କରି କହିଲେ ଅଜୟବାବୁ ! ଆପଣ ମ୍ୟାଟ୍ରିକ୍ ପାସ୍ କରିଛନ୍ତି, ମୋର କାହିଁ ବିଶ୍ୱାସ ହେଉ ନାହିଁ । ଆପଣ ଏତେ ଖଣ୍ଡ ଇଂରାଜୀ ବ୍ୟାକରଣ ଲେଖି ସାରିବା ପରେ ଏ କି ଇଂରାଜୀ ଲେଖିଛନ୍ତି ହାଇସ୍କୁଲମାଷ୍ଟ୍ରଙ୍କ ଭଳି । ମୁଁ ନିରୁତ୍ତର ରହିଲି । କିନ୍ତୁ ମନେ ମନେ ବ୍ରହ୍ମାଙ୍କୁ ଟିକିଏ ଉପହାସ କରିଦେଲି । ଏ ତ ଓଡ଼ିଆ ଅଧ୍ୟାପକ, ୟାଙ୍କର ଇଂରାଜୀରେ ବା କ'ଣ ଦକ୍ଷତା ଅଛି ।

ଉକ୍ତ ନିବନ୍ଧର ଆଉ ଗୋଟିଏ କପି ନେଇ ଇଂରାଜୀ ବିଭାଗର ବିଖ୍ୟାତ ଅଧ୍ୟାପକ ପ୍ରଫେସର ବିଧୁଭୂଷଣ ଦାସଙ୍କୁ ଦେଖାଇଲି । ଆଶ୍ଚର୍ଯ୍ୟ ! ପ୍ରଫେସର ବ୍ରହ୍ମା ଯେଉଁଠି ନାଲିଗାର ମାରିଥିଲେ, ସେହି ଜାଗାରେ ନାଲିଗାର ମାରିଲେ ବିଧୁବାବୁ । ପାଠକେ ! ବୁଝି ଯିବେଣି ଇଂରାଜୀ ଭାଷାରେ ପ୍ରଫେସର ବ୍ରହ୍ମାଙ୍କ ଦକ୍ଷତା ।

ଏକଦା ପଣ୍ଡିତ ନେହେରୁ, ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ଓ ସର୍ବୋପରି ଇନ୍ଦିରା ଗାନ୍ଧୀଙ୍କର ସେ ଥିଲେ ଟୁରିଷ୍ଟ ଗାଇଡ୍ ।

ଇନ୍ଦିରା ଗାନ୍ଧୀଙ୍କ ସମୟରେ ତାଙ୍କୁ କୋଣାର୍କ ଦେଖାଇବା ଅବସରରେ ତାଙ୍କୁ ମାତ୍ର ଦଶ ମିନିଟ୍ ଦିଆଯାଇଥିଲା । ମାତ୍ର ପ୍ରଫେସର ବ୍ରହ୍ମାଙ୍କ ବିଦ୍ୱତ୍ତା, କଥନଭଙ୍ଗୀ ଓ ପାଣ୍ଡିତ୍ୟ ଯୋଗୁଁ ଶ୍ରୀମତୀ ଗାନ୍ଧୀ ତାହା ଚାଳିଶ ମିନିଟ୍‌କୁ ବୃଦ୍ଧି କରିଥିଲେ ।

ଓଡ଼ିଶା ବିଶ୍ୱ ଦରବାରରେ ପରିଚିତ ଜଗତର ନାଥ ଜଗନ୍ନାଥ, କଳା ଭାସ୍କର୍ଯ୍ୟ ବିମଣ୍ଡିତ କୋଣାର୍କ ଓ ଶବ୍ଦର ସମ୍ରାଟ, ସାହିତ୍ୟର ସମ୍ରାଟ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପାଇଁ । ଏ ତିନି ଜଣ ଥିଲେ ପ୍ରଫେସର ବ୍ରହ୍ମାଙ୍କର ପ୍ରାଣ । ଆଖି ଛଳଛଳ ହୋଇଯାଉଛି... ।

'ତୋଳା ସରିନାହିଁ ଜାତି କୋଣାରକ
ପଳାଇଲ କେଉଁ ରାଇଜେ
ସଂକଳପ ଥିଲା କଳପ କଳପ
ଅଳପ ତ ସରିନାହିଁ ଯେ,
ଆଉ କେ...

ଟାଣରେ ନିହାଣ ଧରିବ
ରାଣ ଦେଇ କିଏ ସମର ପ୍ରାଙ୍ଗଣେ
ଧନୁରେ ଗୁଣ ଚଢାଇବ ।

ଦାରୁଭୂତ ହୋଇ କାହିଁକି ବସିଛ
ଜଗତ ନାଥ ଜଗନ୍ନାଥ
ତୁମ ଭଳି ନାଥ ଥା'ନ୍ତେ ଜଗତେ
ଆମେ ସବୁ ହେଲୁ ଅନାଥ ।
ନୀଳାଦ୍ରିମୋହନ ହେ
ଚକାନୟନକୁ ଦିଅ ମେଲି
ଏ ଭାରତବର୍ଷରେ ବ୍ରହ୍ମା କୀର୍ତ୍ତି ରଟୁ
ବାଜୁ ଉତ୍କଳର ଜୟ ମୁରଲୀ ।'

ସମ୍ପାଦକ, 'ଚିର ସଂଧାନ'
ଭୁବନେଶ୍ୱର

# ମାଆ ଶୁଭମୟୀ

**ଡକ୍ଟର ଲକ୍ଷ୍ମୀକାନ୍ତ ଖୁଣ୍ଟିଆ**

ତୁମ ନାମ ଧରି ଶରତ ସକାଳ
ହେଉ ମାଆ ଶୁଭମୟ ।

କ୍ଷମାମୟୀ ମାଆ ତୁମେ ଦୟାମୟୀ
ଭୟ ନିବାରିଣୀ ଆଗୋ ମହାମାୟୀ
ସକଳ କଳୁଷ ଯାଉ ଗୋ ଦୂରେଇ
ପ୍ରାଣହେଉ ମଧୁମୟ ।

ଲୁହର ଅଞ୍ଜଳି ଦେଉଅଛି ମାଆ
ସରାଗରେ ତୋଳି ନିଅ ।
କୋହ ଫୁଲହାରେ କରୁଛି ଅର୍ଚ୍ଚନା
ଦିଅ ମା' ଆଶିଷ ଦିଅ ।

ଭୁବନମୋହିନୀ ଜଗତପାଳିନୀ
ଦୁଃଖ ବିନାଶିନୀ ଶାନ୍ତି ପ୍ରଦାୟିନୀ
ତୁମ କରୁଣାରେ ଏଇ ଧରାହେଉ
ମାଆଗୋ ଅମୃତମୟ ।

କରୁଣାର ଧାରା ପଡୁ ଥରେ ଝରି
ଜଗତର ଦୁଃଖ ଯାଉ ଅପସରି

ଏଫ୍ ୧୧/୨, ୟୁନିଟ୍–୯, ଭୋଇନଗର,
ଭୁବନେଶ୍ୱର–୨୨

❖ ❖ ❖

# ଆଶ୍ୱିନର ଇଷ୍ଟଦେବୀ

**ବସନ୍ତ କୁମାର ଦାସ**

ଶରତର ଶିଶିର ଭିଜା ଧରିତ୍ରୀ ନିର୍ମଳ ଆକାଶର ହିରଣ୍ମୟ ଶୋଭା ବିଶ୍ୱବ୍ରହ୍ମାଣ୍ଡର ଅନନ୍ତ ଉନ୍ମୁଖତା ଏବଂ ପ୍ରାଣୀମାନଙ୍କ ମଧ୍ୟରେ ଶୁଦ୍ଧ ପରିବ୍ୟାପ୍ତ, ଆତ୍ମାର ପ୍ରକାଶ ଜଗତ ଜନନୀଙ୍କ ସୃଜନୀ ଲୀଳାର ଆଭାସ ମାତ୍ର । ସେ ଆସନ୍ତି ଜଗତର ପାପ ତାପ ହରଣ କରି ଧର୍ମ ଶାନ୍ତି ମୁକ୍ତିର ପଥ ଦେଖାଇବା ପାଇଁ ଅସୁରମାନଙ୍କୁ ନିହତ କରି ସଂସାରକୁ ନିର୍ଭୟ ନିଃଶଙ୍କ କରିବା ପାଇଁ ପୁଣି ସେ ଆସନ୍ତି । ଦୁଃଖ ଦୈନ୍ୟ ମୋହ ଓ ଅହଂକାର ଦୂର କରି ମଣିଷକୁ ପାପମୁକ୍ତ ଓ ନିର୍ମଳ କରିବା ପାଇଁ ସେ ଜଣଙ୍କର ନୁହନ୍ତି ଗଣଙ୍କର । ଏହା ହିଁ ଶାସ୍ତ୍ର ପୁରାଣମାନଙ୍କରେ ବିଶେଷଭାବେ ସୂଚିତ ହୋଇଛି । ସେହିସବୁ ନିର୍ଯ୍ୟାସକୁ ବହନ କରି ବିଭିନ୍ନ କୌତୂହଳୋଦ୍ଦୀପକ ପରିକଳ୍ପନା।

ସେ ସମସ୍ତ ଦିବ୍ୟଶକ୍ତିର ପରିପୂର୍ଣ୍ଣ ରୂପ । ସୁତରାଂ ସେସବୁ କାଳରେ ଅପରାଜିତା, ସୃଷ୍ଟି ଚେତନାର ଆଦ୍ୟ ମଧ୍ୟ ଓ ସର୍ବତ୍ର ବିଦ୍ୟମାନ । ସେ ଶକ୍ତି ସ୍ୱରୂପିଣୀ ଅସୁର ନାଶିନୀ ଏବଂ କଲ୍ୟାଣ ଦାୟିନୀ । ଆଦ୍ୟାଶକ୍ତିଙ୍କୁ ବିଭିନ୍ନ ମାର୍ଗରେ ଦାର୍ଶନିକ ବିଶ୍ଳେଷଣରେ ଯେପରି ସ୍ତୁତି କରାଯାଇଥାଏ ଏବଂ ଶ୍ରୀଚଣ୍ଡୀରେ ଯେପରି ତାଙ୍କୁ ମହାକାଳୀ, ମହାଲକ୍ଷ୍ମୀ ଏବଂ ମହାସରସ୍ୱତୀ ଆଦି ତିନିଗୋଟି ଚରିତ୍ର ମାଧ୍ୟମରେ ପୂଜା କରାଯାଇଥାଏ, ଭାରତବର୍ଷରେ ଭକ୍ତଗଣ ଆକୁମାରୀ ହିମାଳୟ ସେହି ମହାଶକ୍ତିଙ୍କୁ ସାର୍ବଜନୀନ ମହିଷାମର୍ଦ୍ଦିନୀ ଦୁର୍ଗାଙ୍କ ସ୍ୱରୂପରେ ଆବାହନ କରିଥାଆନ୍ତି ।

ଭାରତରେ ସର୍ବମୋଟ ୫୧ଟି ଶକ୍ତିପୀଠ ଥିବାର କୁହାଯାଇଛି । ବଭିନ୍ନ ପ୍ରଦେଶରେ ଭିନ୍ନ ଭିନ୍ନ ନାମରେ ସେ ପୂଜିତା । ଯଥା କାଶ୍ମୀରରେ ସେ 'ଅମ୍ବା', ଆସାମରେ 'କାମାକ୍ଷୀ', ରାଜସ୍ଥାନରେ 'ଭବାନୀ', ଗୁଜୁରାଟରେ 'କଲ୍ୟାଣୀ', ମହୀଶୂରରେ 'ଚାମୁଣ୍ଡା', ମଦୁରାଇରେ 'ମୀନାକ୍ଷୀ', ଦାକ୍ଷିଣାତ୍ୟରେ 'ଲଳିତା', ବଙ୍ଗଳାରେ 'କାଳୀ' ଓ 'ତାରା', ଓଡ଼ିଶାରେ ବିଭିନ୍ନ ପୀଠରେ ବିରଜା, ଭୁବନେଶ୍ୱରୀ, ଚର୍ଚ୍ଚିକା, ଶାରଳା, ଭଟ୍ଟାରିକା, ହିଙ୍ଗୁଳା, ମଙ୍ଗଳା, ଗୌରୀ, ସମଲେଶ୍ୱରୀ, ସ୍ତମ୍ଭେଶ୍ୱରୀ ଏବଂ ଭଗବତୀ ଇତ୍ୟାଦି ନାମରେ ପୂଜିତା ।

ଉଲ୍ଲିଖିତ ୫୧ଟି ଶକ୍ତି ପୀଠରେ ତାତ୍ପର୍ଯ୍ୟକୁ ମଧ୍ୟ ଅତି ରସାଳ ଶୈଳୀରେ ଉପସ୍ଥାପିତ କରାଯାଇଛି ।

ପୁରାଣ ତଥା ତନ୍ତ୍ରାଦି ଗ୍ରନ୍ଥ ଅନୁଯାୟୀ ଦକ୍ଷ ଯଜ୍ଞରେ ନିଜ ପତିଙ୍କ ଅପମାନ ଓ ନିନ୍ଦା ସହ୍ୟ କରି ନପାରି ମା' ସତୀ ନିଜର ଶରୀର ତ୍ୟାଗ କଲେ, ସତୀଙ୍କ ବିରହ ଓ ବିଚ୍ଛେଦରେ ଭୋଳାନାଥ ଶଙ୍କର ଅତି ଉତ୍ତେଜିତ ଅବସ୍ଥାରେ ସତୀଙ୍କ ମରଶରୀରକୁ କାନ୍ଧରେ ଧରି ତ୍ରିଭୁବନରେ ବିଚରଣ କରିବାକୁ ଲାଗିଲେ । ଦେବଗଣ ଦେବ ଦେବ ମହାଦେବଙ୍କ ଏପରି ଆଚରଣରେ ଶଙ୍କିତ ହେଲେ । ସବୁ ଦେବତା ସମ୍ମିଳିତ ହୋଇ ଏହାର ସମାଧାନ ପାଇଁ ଭଗବାନ ବିଷ୍ଣୁଙ୍କ ଶରଣାପନ୍ନ ହେଲେ । ବିଷ୍ଣୁ ଲୋକ କଲ୍ୟାଣାର୍ଥେ ମହାଦେବଙ୍କଠାରୁ ସତୀଙ୍କ ଶରୀର ଉଦ୍ଧାର କରି ତାହାଙ୍କୁ ୫୧ ଖଣ୍ଡରେ ବିଭକ୍ତ କରି ଭାରତର ବିଭିନ୍ନ ପ୍ରାନ୍ତରେ ନିକ୍ଷେପ କଲେ । ଯେଉଁ ଯେଉଁ ସ୍ଥାନରେ ଶକ୍ତିଙ୍କ ଶରୀରର ଖଣ୍ଡସବୁ ପଡିଲା, ସେସବୁ ମହାନ ଶକ୍ତି ପୀଠରେ ପରିଣତ ହେଲା । ଅଖଣ୍ଡ ଭାରତର ସୀମା ନିର୍ଦ୍ଧାରଣ କ୍ଷେତ୍ରରେ ଏହି ଶକ୍ତିପୀଠଗୁଡିକର ଘନିଷ୍ଠ ସମ୍ପର୍କ ରହିଛି ।

ତନ୍ମଧ୍ୟରୁ ବିଶେଷ ଉଲ୍ଲେଖଯୋଗ୍ୟ ହେଉଛି ଦେବୀଙ୍କ ଯୋନି ମୁଦ୍ରା ପତିତ ହୋଇଥିଲା ବର୍ତ୍ତମାନ ଆସାମ ପ୍ରଦେଶର ଗୌହାଟି ସହରଠାରୁ ୩/୪ କି.ମି. ଦୂର ପର୍ବତରେ । ଏହି ପର୍ବତରେ ପତିତ ହେବା ଫଳରେ ସେହି ପର୍ବତ ନୀଳରୂପ ଧାରଣ କଲା । ସେଥିପାଇଁ ଏହି ପର୍ବତକୁ ନୀଳାଚଳ କୁହାଯାଏ ।

ପୌରାଣିକ ପ୍ରସଙ୍ଗରେ ନିର୍ଯ୍ୟାସ ବହନ କରି ଏହା 'କାମରୂପ' କ୍ଷେତ୍ର ରୂପେ ପ୍ରସିଦ୍ଧି ଲାଭ କରିଛି । କାମ ରୂପରେ

ଅଧିଷ୍ଠିତା ଦେବୀ ହେଉଛନ୍ତି 'କାମାକ୍ଷା' । ବର୍ତ୍ତମାନର 'କାମାକ୍ଷା' ମନ୍ଦିର ସମ୍ଭବତଃ ପଞ୍ଚଦଶ ଶତାବ୍ଦୀରେ, ବହୁ କିମ୍ବଦନ୍ତୀ ଓ ପୌରାଣିକ ଆଖ୍ୟାୟିତ ବିଜଡିତ କାମାକ୍ଷ୍ୟା ମନ୍ଦିରର ସେବା ପୂଜା ପାଇଁ ବର୍ତ୍ତମାନ ୩୪୫ ସେବକ ନିଯୁକ୍ତ । ପାହାଡର ଶୀର୍ଷ ଦେଶରେ ସେବକମାନଙ୍କର ବିରାଟ ବସତି ଗଢି ଉଠିଛି। ବହୁ ସ୍ମୃତି ବିଜଡିତ ସେହି ପ୍ରାଚୀନ ମନ୍ଦିରର ଐତିହାସିକ ଦିଗ ବେଶ୍ ରୋମାଞ୍ଚକର । ଉକ୍ତ ପୀଠ ଅତୀତରେ ଦୀର୍ଘବର୍ଷ ଲୁପ୍ତ ରହିବା ପରେ, ସେସମୟରେ ପ୍ରବଳ ପରାକ୍ରମି ରାଜା ବିଶ୍ୱସିଂହ ଘଟଣା ଚକ୍ରରେ ତାଙ୍କର ସମସ୍ତ ସୈନ୍ୟ ସାମନ୍ତଙ୍କୁ ଜଙ୍ଗଲ ମଧ୍ୟରେ ପଥଭ୍ରମ ହୋଇ ନିଖୋଜ ହୋଇଗଲେ । ତୃଷାର୍ତ୍ତ ଓ କ୍ଷୁଧାର୍ଥ ଅବସ୍ଥାରେ ରାଜା ଅବସ୍ଥା ଚକ୍ରରେ ନୀଳାଚଳ ପର୍ବତରେ ଲୁପ୍ତ ଦେବୀଙ୍କ ସାନିଧ୍ୟ ପ୍ରାପ୍ତ ହୋଇଥିଲେ । ପରେ ସେ ତାଙ୍କର ନିଖୋଜ ସୈନ୍ୟଙ୍କୁ ପାଇଲେ ଏବଂ ପରବର୍ତ୍ତୀ ଅବସ୍ଥାରେ ସେ ଯେଉଁ ମନ୍ଦିର ନିର୍ମାଣ କଲେ, ତାହା ହେଉଛି ବର୍ତ୍ତମାନର କାମାକ୍ଷା ମନ୍ଦିର ।

ମା'ଙ୍କ ପୂଜାର୍ଚ୍ଚନାର ବିଶେଷତ୍ୱ ଏବଂ ପ୍ରଧାନ ଅଙ୍ଗ ହେଉଛି ଆଷାଢ ମାସର ଷଷ୍ଠ ଏବଂ ସପ୍ତମ ଦିବସଠାରୁ ଏକାଦଶ ଦିବସ ପର୍ଯ୍ୟନ୍ତ ମା'ଙ୍କ 'ଅମ୍ବୁବାଣୀ' ଯୋଗ ଉତ୍ସବ ଅନୁଷ୍ଠିତ ହୁଏ । ଏହି ସମୟରେ ମା' ରଜସ୍ୱଳା ହୁଅନ୍ତି । ମନ୍ଦିରରେ ମା'ଙ୍କ ସ୍ନାନ ବସ୍ତ୍ର ଏହି ସମୟରେ ପରିବର୍ତ୍ତନ କାର୍ଯ୍ୟ କେବଳ ମହିଳାମାନଙ୍କ ଦ୍ୱାରା ସମାହିତ ହୋଇଥାଏ । ଅମ୍ବୁବାଣୀ ଯୋଗେବେଳେ ପ୍ରତିଦିନ ମା'ଙ୍କ ଶରୀର ଉପରେ ଯେଉଁ ବସ୍ତ୍ର ଆବୃତ୍ତ କରାଯାଏ, ତାହା ତା ପରଦିନ ରକ୍ତବର୍ଣ୍ଣ ଧାରଣ କରିଥାଏ । ଏହା ଭାରତର ଅନ୍ୟ କୌଣସି ଦେବୀ ମନ୍ଦିରରେ ବିରଳ । ଏଣୁ ସାରା ଭାରତରେ ନିକ୍ଷେପିତ ସତୀଙ୍କ ଶରୀରର ଅଂଶ ବିଶେଷ ଶକ୍ତିପୀଠ ରୂପେ ପ୍ରତିଷ୍ଠା ଲାଭ କରିଥିଲେ ମଧ୍ୟ କାମରୂପ ଜିଲ୍ଲାର କାମାକ୍ଷା ଦେବୀଙ୍କ ମନ୍ଦିର ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛନ୍ତି ।

ମହିମାମୟୀଙ୍କୁ ପ୍ରାଗ୍ ଐତିହାସିକ ଯୁଗରୁ କିଏ କିପରି ଭାବରେ ପରିକଳ୍ପନା କରିଛି, ତା'ର 'ଇୟତା ନାହିଁ । ସେସବୁର ତତ୍ତ୍ୱ ଓ ତଥ୍ୟକୁ ରୂପାୟିତ କରିବା ମାନବ ଶକ୍ତିର ବାହାରେ । ମାତୃ ଶକ୍ତିର ଅନିର୍ବଚନୀୟ ସ୍ରୋତସ୍ୱିନୀ ଉର୍ଜ୍ଜା ପ୍ରବାହିତ ହୋଇ ଚାଲିଛି ଅନନ୍ତ କାଳରୁ ।

କିନ୍ତୁ ଭକ୍ତ କହେ ଏହି ଦୁର୍ଗମ ଭବ ସାଗରରୁ ଉଦ୍ଧାର କରିବା ପାଇଁ ତୁମେ ହିଁ ଅଦ୍ୱିତୀୟା ନୌକା ସ୍ୱରୂପିଣୀ । ମା' ତୁମେ ହିଁ ଏକମାତ୍ର କାରଣ ତୁମର କରୁଣା ଆମର ଏକମାତ୍ର ଅବଲମ୍ବନ । ପ୍ରାଚୀନ ସଂସ୍କୃତି ଓ ପରମ୍ପରାର ଦାୟାଦ ଆସ୍ତିକ ହିନ୍ଦୁର ଦୃଷ୍ଟିରେ ଏ ଜଗତ୍ ଦୁର୍ଗାମୟ ହିନ୍ଦୁ ଜାତି ଚିରାଚରିତ ଐତିହ୍ୟକୁ ପୁନରୁଜ୍ଜୀବିତ କରିଥାଏ । ବାସନ୍ତୀକ ନବରାତ୍ରିର ପ୍ରତିବର୍ଷ ଶାରଦୀୟ ଦୁର୍ଗା ପୂଜାରେ ସାଂସ୍କୃତିକ ଶତ୍ରୁକୁ ଦମନ କରିବାରେ ସଂଘବଦ୍ଧ ହୁଏ ।

ଏହି ନବରାତ୍ରର ମଧ୍ୟ ଏକ ତାତ୍ତ୍ୱିକ ଆଭିମୁଖ୍ୟ ରହିଛି । ଯେପରି ପଞ୍ଚରାତ୍ର, ବିଷ୍ଣୁରାତ୍ର ଏବଂ ଋଷିରାତ୍ର ଇତ୍ୟାଦି । ଏହାକୁ ସମୀକ୍ଷା କଲେ ସ୍ପଷ୍ଟ ଜଣାପଡିବ ଏହା ଏକ ଯୁଗ୍ମଶବ୍ଦ । ଯୁଗ୍ମଶବ୍ଦ କୁହାଯିବାର ତାତ୍ପର୍ଯ୍ୟ ହେଉଛି ଏହି ରାତ୍ର ସାଧାରଣ ରାତ୍ର ନୁହେଁ, ପାଣିନୀଙ୍କ ଅଷ୍ଟାଧାୟୀ ଯୁକ୍ତିକୁ ଅଧ୍ୟୟନ କଲେ ଜଣାଯାଏ, ନବରାତ୍ରର ଅର୍ଥ ହେଉଛି ନବାନାଂ ରାତ୍ରିଣାଂ ସମାହାରଃ ନବରାତ୍ରମ୍। ରାତ୍ରାହାଃ ନାହାଃ ଫମି । ଏହା କେବଳ ଜଗତର ସୃଜନ ପାଳନ ଅର୍ଥରେ ହିଁ ବ୍ୟବହୃତ ହୁଏ ନଚେତ ନବ ଦିବସ କାହିଁକି କୁହାଯାଇ ନଥାନ୍ତା !!

ରାତ୍ରିର ନିଶାନ୍ଧରେ ଜଗତ ଯେତେବେଳେ ନିଦ୍ରାଗତ, ଯୋଗୀ, ସାଧୁ, ସନ୍ନ୍ୟାସୀମାନେ ସେତେବେଳେ ଜାଗ୍ରତ, ତପଃଶ୍ଚରତାରେ ସେମାନେ ମଗ୍ନ । ଉପନିଷଦ ଭାବେ ଗୃହୀତ ଶ୍ରୀମଦ୍ ଗୀତାକୁ ଆଲୋଚନା କରାଗଲେ ସେଥିରୁ ଯେଉଁ ନିର୍ଯ୍ୟାସ ମିଳେ ତାହା ହେଉଛି–

'ଯାନିଶା ସର୍ବ ଭୂତାନଂ ଜାଗ୍ରର୍ତୀ ସଂଜମୀ'

ଶ୍ରୀମଦ୍ ଭଗବତର ଦଶମ ସ୍କନ୍ଧରେ ଏହି ଯୁକ୍ତିକୁ ପ୍ରତିଷ୍ଠିତ କରିବାକୁ ଯାଇ କୁହାଯାଇଛି–

'ଭଗବାନ୍ ପିତା ରାତ୍ରିଃ
ଶର ଦୋତଫୁଲ୍ଲ ମଲ୍ଲିକାଃ
ଦୀକ୍ଷରନ୍ତୁଂ ମନଶ୍ଚକ୍ରେ
ଯୋଗମାୟା ସୁପାଶ୍ରିତଃ ।'

ଏକ ଶିଶିର ଭିଜା ଶରତ କାଳୀନ ଚନ୍ଦ୍ର କିରୋଣଜ୍ଜଳ ରାତ୍ରିରେ ଭଗବାନ ଶ୍ରୀକୃଷ୍ଣ ନିଜର ଅଚିନ୍ତ୍ୟ ଯୋଗମାୟାଙ୍କ ସହାୟତାରେ ଗୋପୀମାନଙ୍କ ସହ ରାସକ୍ରୀଡା କରିବା ପାଇଁ ମନସ୍ଥ କଲେ । ଆହ୍ଲାଦିନୀ ଶକ୍ତିର ପ୍ରତୀକ, ଗୋପାଙ୍ଗନାମାନେ ପରମ ପୁରୁଷଙ୍କ ସାନିଧ୍ୟ ପାଇଁ ନିଶାର୍ଦ୍ଧ ରାତ୍ରି ହିଁ ସର୍ବୋତ୍କୃଷ୍ଟ ସମୟ । ଭାରତୀୟ ଆଧ୍ୟାତ୍ମ ଚେତନାରେ ରାତ୍ରିର ସଂଯୋଜନା ଏକ ସାଧାରଣ ରାତ୍ରି ଭାବରେ ବର୍ଣ୍ଣିତ ନୁହେଁ କିମ୍ବା ବ୍ୟାକରଣ ଗତ ନ୍ୟାୟରେ ଏହା ଦ୍ୱିଗୁ ସମାସନ୍ତର୍ଗତ ତତ୍ତ୍ୱରେ ସଂଯୋଜିତ ନହୋଇ ଏହା ସୂକ୍ଷ୍ମାତିସମ ତତ୍ତ୍ୱ ଉପରେ ପ୍ରତିଷ୍ଠିତ ।

ଏହା ନବ ନୂତନ ଅର୍ଥରେ ଗ୍ରହଣ କରା ନଯାଇ ଏକ ସଂଖ୍ୟାବାଚକ ନଅ ଅଟେ । ଆଧ୍ୟାତ୍ମ ଦୃଷ୍ଟି କୋଣରୁ ନଅର ମୂଲ୍ୟବୋଧ ବେଶ ବଳିଷ୍ଠ ।

ମା'ଙ୍କର ପୂଜା ବିଧାନ ନବରାତ୍ରରେ ସୀମିତ । ଯଦି ଚ ଦଶମହାବିଦ୍ୟା ଭାବରେ ସେ ଦଶ ଭାଗରେ ବିଭକ୍ତ କିନ୍ତୁ ଏହି ଦଶ ମଧ୍ୟରୁ ନଅଟି ସ୍ୱରୂପ ହେଉଛି ତାଙ୍କର କ୍ରମ ବିକଶିତ। ଦଶମଟି କେବଳ ବିଜୟିନୀର ସଙ୍କେତ ।

ନଅ ପ୍ରକାର ପତ୍ରରେ ପୂଜା ବିଧିର କ୍ରମ । ସତ୍ତ୍ୱ, ରଜ, ତମ ଏହି ତ୍ରିଗୁଣାତ୍ମକ ନିର୍ଯ୍ୟାସରୁ ସେ ସୃଷ୍ଟ। ଏହାର ତିନିଗୁଣ ହେଲା ନଅ । ଏହି ନଅ ହିଁ ମାଆଙ୍କ ଆବାହନ ପାଇଁ ପ୍ରଶସ୍ତ ସଂଖ୍ୟକ ଦିନ । ଏଣୁ ନବରାତ୍ରର ଗୁରୁତ୍ୱ ଏହି ଦିଗରୁ ବେଶ୍ ବଳିଷ୍ଠ ।

ମାତୃ ଶକ୍ତିର ଆବାହନ ପାଇଁ ଖଞ୍ଜି ଦିଆଯାଇଛି ନାନାବିଧି ସମ୍ଭାର । ଭିନ୍ନ ଭିନ୍ନ ଚରିତ୍ରର ସମାହାରରେ ସମାଜର ସୃଷ୍ଟି। ସାମାଜିକ ମୂଲ୍ୟବୋଧକୁ ରୂପାୟିତ କରିବା ପାଇଁ ପରିକଳ୍ପିତ ଭିନ୍ନ ଭିନ୍ନ ଦେବଦେବୀ ସେହି ନିର୍ଯ୍ୟାସକୁ ଆଧାର କରି ମାତୃ ଶକ୍ତିର ପରିକଳ୍ପନା । ତାହା ପୁଣି ଭିନ୍ନ ଭିନ୍ନ ସ୍ୱରୂପରେ ପ୍ରତିଷ୍ଠିତା । ସେହି ଶକ୍ତି ଅସୀମ ଅନନ୍ତ, ଅବ୍ୟକ୍ତ ଓ ସର୍ବବ୍ୟାପ୍ତ ତଥା ପଞ୍ଚ ମହାଭୂତାତ୍ମିକା ସର୍ବବିଧି ମାନବିକ ସଫଳତାର ମୂଳ ନିଦାନ ହେଉଛି ଏହି ଶକ୍ତି । ତେଣୁ ମାନବର ଶକ୍ତି ସମ୍ବନ୍ଧୀୟ ଧାରଣା ଅତୀବ ପ୍ରାଚୀନ । ଦେବ ଦାନବ ମାନବ ସହିତ ସମଗ୍ର ଜୀବଜଗତର ଶକ୍ତି ହିଁ ରକ୍ଷାକର୍ତ୍ତାଭାବେ ଉପାସିତ । ସେ ପୁଣି ସପ୍ତମାତୃକା, ଦଶ ମହାବିଦ୍ୟା ଏବଂ ଚଉଷଠି ଯୋଗିନୀ ଭାବେ ଉପାସିତା । ଏଥିରେ ପୁଣି କେତେକ ସମ୍ପ୍ରଦାୟଭୁକ୍ତ ମତବାଦ ସୃଷ୍ଟି, ସେ ମତବାଦ କ୍ରମାନ୍ୱୟରେଉପାସନା ପଦ୍ଧତି ରୂପେ ଗୃହୀତ ହେଲା ଯାହାକୁ ବେଦାଚାର, ବୈଷ୍ଣବାଚାର, ଶୈବାଚାର, ଦକ୍ଷିଣାଚାର, ନାମାଚାର, ସିଦ୍ଧାନ୍ତାଚାର ଓ କୈଳାଚାର ନାମରେ ନାମିତ ।

ଏହିଭଳି ବିଭିନ୍ନତା ମଧ୍ୟରେ ଏକତା ଆଣିବାକୁ ଯେ ଚେଷ୍ଟା ନକରାଯାଇଛି ତା ନୁହେଁ, ତାହା ସତ୍ତ୍ୱେ ଏହା ସମ୍ଭବ ହୋଇପାରିନାହିଁ। ବିଭିନ୍ନ ସମ୍ପ୍ରଦାୟଭୁକ୍ତ ହେବାଦ୍ୱାରା ନିଜର ସ୍ୱାତନ୍ତ୍ର୍ୟତା ବଜାୟ ରଖିବା ପାଇଁ ସମ୍ପ୍ରଦାୟମାନେ ଚେଷ୍ଟିତ ହୋଇଛନ୍ତି । ଯାହାଫଳରେ ସର୍ବସମ୍ମତ ସିଦ୍ଧାନ୍ତ ବଦଳରେ ତାଳମେଳ ନଥିବାଗୁଡ଼ିଏ ବର୍ଣ୍ଣନା ପୁରାଣମାନଙ୍କରେ ଖଞ୍ଜି ଦିଆଯାଇଛି । ଅନ୍ୟ ସମ୍ପ୍ରଦାୟର ଦେବାଦେବୀମାନଙ୍କୁ ନିନ୍ଦିତ କରିବା ପାଇଁ ଗୋଟିଏ ଗୋଟିଏ ଧର୍ମର ଅନୁରାଗୀମାନେ ମନଇଚ୍ଛା ନୂଆ ନୂଆ ଶ୍ଳୋକ ରଚନା କରି କେବଳ ଦେବତାମାନଙ୍କ ପ୍ରଶଂସା ସହିତ ଘୋର ସମାଲୋଚନା ମଧ୍ୟ ପୁରାଣମାନଙ୍କରେ ରହିଛି । ସେହି ପୁରାଣମାନଙ୍କରେ ଯେଉଁ ଶକ୍ତିପୀଠମାନ ଦର୍ଶାଯାଇଛି ତା ମଧ୍ୟରେ ମତଭେଦ ରହିଛି । ଦକ୍ଷିଣାତ୍ୟରେ ପ୍ରଧାନ ଶକ୍ତିପୀଠ ରୂପେ ବର୍ଣ୍ଣିତ ଲଳିତାଙ୍କ ଉପରେ ଶକ୍ତି ଉପାସକଙ୍କ ମଧ୍ୟରେ ତୀବ୍ର ମତଭେଦ ରହିଥିବା ପ୍ରକାଶ ପାଇଛି । ଦଳେ ଭକ୍ତ ଯେତେବେଳେ ପ୍ରଚାର କରିବାକୁ ଆରମ୍ଭ କଲେ, ଯେ ଶ୍ରୀରାଧା ହେଉଛନ୍ତି କୃଷ୍ଣଙ୍କର ପରମ ପ୍ରେୟସୀ, ଆଉ ଦଳେ ଭକ୍ତ ତାର ପ୍ରବଳ ପ୍ରତିରୋଧ କରିଥିଲେ । ସେମାନେ ରାଧାଙ୍କ ବଦଳରେ ରୁକ୍ମିଣୀଙ୍କୁ ପ୍ରାଧାନ୍ୟ ଦେବାକୁ ଦାବି କଲେ । ରାଧାଙ୍କର ପ୍ରାଧାନ୍ୟ ମଧ୍ୟ ବଢ଼ି ଚାଲିଲା । ଚଣ୍ଡୀ ଭକ୍ତମାନେ ବିଶେଷତଃ ଦକ୍ଷିଣ ଭାରତର ଶାକ୍ତମାନେ ଲଳିତାଙ୍କୁ ସର୍ବୋଚ୍ଚ ଆସନ ଦେଇ ତାଙ୍କର ମହତ୍ତ୍ୱ ପ୍ରଚାର କଲେ । ଏଥିରେ ରାଧାଙ୍କର ଭକ୍ତମାନେ ବିଚଳିତ ହୋଇ ଏକ ନୂତନ କୌଶଳ ପ୍ରୟୋଗ କଲେ । ସେମାନଙ୍କ ମତରେ ଯାହାଙ୍କୁ ଲଳିତା ବୋଲି ଶାକ୍ତମାନେ କହିଛନ୍ତି, ସେ ଲଳିତା ହେଉଛନ୍ତି ରାଧାଙ୍କର ଜଣେ ସଖୀ ବା ସେବିକା ମାତ୍ର । ଏହିଭଳି ବାଦ ପ୍ରତିବାଦ ଦୀର୍ଘ ଏକ ହଜାର ବର୍ଷଧରି ହୋଇଆସିଛି । ଏଭଳି ଅଭିଯୋଗ ଓ ପ୍ରତ୍ୟାଭିଯୋଗ ଆଉ ବୌଦ୍ଧିକ ସ୍ତରରେ ସୀମିତ ନାହିଁ । ଏହା ଲଗାମହୀନ ଭାବରେ ଖୁବ୍ ନିମ୍ନସ୍ତରକୁ ଗତିକରିବାରେ ଲାଗିଛି । ସେହିପରି ଭାବରେ ଭାରତର ବିଭିନ୍ନ ଧର୍ମ, ଶାସ୍ତ୍ର, ତନ୍ତ୍ରଶାସ୍ତ୍ର ଓ ପୁରାଣରେ ଚଉଷଠି ଯୋଗିନୀଙ୍କର ନାମାବଳୀରେ ମଧ୍ୟ ଗୁରୁତର ଭିନ୍ନତା ପରିଲକ୍ଷିତ ହୁଏ ।

ବେଦବିତ୍‌ମାନେ ଏସବୁର ଊର୍ଦ୍ଧ୍ୱକୁ ଯାଇ ଏକ ସ୍ୱତନ୍ତ୍ର ଏବଂ ସୁଚିନ୍ତିତ ଆଲେଖ୍ୟ ଉପସ୍ଥାପିତ କରି ଅଛନ୍ତି ।

ପୁରାଣ ବର୍ଣ୍ଣିତ ପ୍ରତ୍ୟେକ ଦେବାଦେବୀଙ୍କର ଜନ୍ମ ବୃତ୍ତାନ୍ତଆଦି ନିବାସ ସ୍ଥଳ, ପତ୍ନୀ, ସନ୍ତାନ, ବାହନ ଆଦି ବିଷୟରେ କଳ୍ପନା କୌଣସି କୌଣସି ବୈଦିକ ବିଚାରରୁ ସମ୍ଭୁତ ହୋଇଥିଲା ।

ପ୍ରଥମେ ବ୍ରହ୍ମଚର୍ଯ୍ୟର ପାଳନ ଦୁର୍ଗାପୂଜା ନାମରେ ଅଭିହିତ ହୋଇଥିଲା । ତେଣୁ ପୁରାଣ କର୍ତ୍ତା ଲେଖିଲେ– ଦେହର ପ୍ରତ୍ୟେକ ଇନ୍ଦ୍ରିୟର ତେଜରୁ ଦୁର୍ଗା ଜାତ ହେଲେ। ଚକ୍ଷୁ, କର୍ଣ୍ଣ ଆଦି ଇନ୍ଦ୍ରିୟଗୁଡ଼ିକ ଆତ୍ମାର ବିକାଶ ନିମନ୍ତେ ଯଜ୍ଞ ଯୋଗ ବା ସଂଯମ କରିବା ଫଳରେ ଶରୀରରେ ବ୍ରହ୍ମଚର୍ଯ୍ୟ ଲାଭ ହୁଏ । ଶକ୍ତିଙ୍କୁ ଏକ ସ୍ୱତନ୍ତ୍ର ଦେବୀ କହି ସାରିବା ପରେ ତାଙ୍କ ପାଇଁ ସିଂହ ବାହନ କଳ୍ପିତ ହେଲା । ସିଂହ ପରାକ୍ରମରେ ପ୍ରତୀକ । ଦେହର ଇନ୍ଦ୍ରିୟଗୁଡ଼ିକରେ ଥିବା ଆଳସ୍ୟ ଓ ଭୋଗଶକ୍ତି ତାହାର ପାଶବିକତା ବ୍ରହ୍ମଶକ୍ତି ଆଗରେ ସମସ୍ତ ପଶୁ ଶକ୍ତି ବଳି ପଡନ୍ତି ଅର୍ଥାତ୍ ଧ୍ୱଂସ ହୁଅନ୍ତି। ଇନ୍ଦ୍ରିୟଗୁଡ଼ିକର ପାଶବିକତାର ବଳିଦାନ ଯୋଗୁଁ ବ୍ରହ୍ମଚର୍ଯ୍ୟ ଉଦିତ ହୁଏ । ଦେହର ତିନିପୁର ହେଉଛି ମସ୍ତକ, ମଧ୍ୟସ୍ଥଳ ଓ ଅଧୋସ୍ଥଳ । ମସ୍ତିଷ୍କର ଆସୁରିକ ଶକ୍ତି ଭ୍ରାନ୍ତି ବା ଅଜ୍ଞାନ । ମଧ୍ୟ ସ୍ଥଳକୁ ଭୟ ରୂପକ ଅସୁର ଆକ୍ରମଣ କରେ । ଅଧୋସ୍ଥଳର ଶତ୍ରୁ ହେଉଛି ଭୋଗ ବାସନା । ମଇଁଷି ସମସ୍ତ ପଶୁମାନଙ୍କ ମଧ୍ୟରେ ଅଧିକ ଅଳସୁଆ । 'ଆଳସ୍ୟ ମରଣର ଲକ୍ଷଣ'

ଯେତେବେଳେ ମୃତ୍ୟୁ ନାମକ ଦେବ କଳ୍ପିତ ହେଲେ । ସେତେବେଳେ ପ୍ରତୀକ ରୂପକ ଏକ ବାହାନ ଯୋଜନା କରାଗଲା । ସେଥିପାଇଁ ମଇଁଷି ଉପଯୁକ୍ତ ବୋଲି ବିବେଚିତ ହେଲା ଦେହର ପ୍ରତ୍ୟେକ ଇନ୍ଦ୍ରିୟ ଆଳସ୍ୟ ଦ୍ୱାରା ଆକ୍ରାନ୍ତ ହେଉଥିବାରୁ ବେଦାଦି ଶାସ୍ତ୍ରରେ ଇନ୍ଦ୍ରିୟମାନଙ୍କୁ ଦେବତା କୁହାଯାଇଛି । ଏହାର କାରଣ ହେଉଛି ସୂର୍ଯ୍ୟ ବାୟୁ ଆଦି ବ୍ରହ୍ମାଣ୍ଡର ଦେବତା କୁହାଯାଇଛି । ଏହାର କାରଣ ହେଉଛି ସୂର୍ଯ୍ୟ ବାୟୁ ଆଦି ବ୍ରହ୍ମାଣ୍ଡର ଦେବତାମାନେ ଅର୍ଥାତ୍ ଆଳସ୍ୟ ଭୋଗାସକ୍ତ ରୂପକ ମହିଷାସୁରର ଆକ୍ରମଣ ଦ୍ୱାରା ସେମାନେ ନିସ୍ତେଜ ହୁଅନ୍ତି ।

ଦୁର୍ଗା ବା ବ୍ରହ୍ମଚର୍ଯ୍ୟ ଶକ୍ତିକୁ ପୁରୁଷାକାର କରି ତାଙ୍କ ପାଇଁ ସିଂହବାହନ ଦିଆଯାଇଛି । ସିଂହ ପରାକ୍ରମର ପ୍ରତୀକ । ବ୍ରହ୍ମ–ନାମକ–ଚର୍ଯ୍ୟ ଆଚରଣ । ଅଶ୍ଳୀଳ ଚିତ୍ର ଦେଖିବା ଚକ୍ଷୁର ସଂକୀର୍ଣ୍ଣ ଆଚାରଣ । ଭଦ୍ରଦୃଶ୍ୟ ଦେଖିବା ଚକ୍ଷୁର ମହାନ ଆଚରଣ । ନିନ୍ଦା ଅପବାଦ ଶୁଣିବା ଦ୍ୱାରା କର୍ଣ୍ଣ ବ୍ୟଭିଚାରୀ ହୁଏ । ସଦୁପଯୋଗ ସ୍ତୁତି ପ୍ରାର୍ଥନା ଶୁଣୁଥିବା କର୍ଣ୍ଣ ବ୍ରହ୍ମଚାରୀ ହୁଏ । ପ୍ରତ୍ୟେକ ଇନ୍ଦ୍ରିୟ ବା ଦେବତା ବିଷୟା ଶକ୍ତି ସହିତ ନିରନ୍ତର ସଂଘର୍ଷ କରେ ତାହା ଦେବାସୁର ସଂଗ୍ରାମ । ଭୋଗ ଆଳସ୍ୟ ରୂପକ ଅସୁର ପ୍ରତି ମୁହୂର୍ତ୍ତରେ ପ୍ରତ୍ୟେକ ଇନ୍ଦ୍ରିୟ ସମ୍ମୁଖରେ ଠିଆହୁଏ । ସମାହିତ ମନରେ ଇନ୍ଦ୍ରିୟ ସଂଯମ କରିବା ଫଳରେ ବ୍ରହ୍ମଚର୍ଯ୍ୟ ସୁରକ୍ଷିତ ରହେ । ସୁରକ୍ଷିତ ବ୍ରହ୍ମଚର୍ଯ୍ୟ ମାନବ ଶକ୍ତିର ସର୍ବୋତ୍କୃଷ୍ଟ ଉତ୍ସ । ଦୁର୍ଗାପୂଜା ବ୍ରହ୍ମଚର୍ଯ୍ୟ ପାଳନର ସନ୍ଦେଶ । ମଣିଷର ଦେହ ଦୁର୍ଗାମଣ୍ଡପ ବ୍ରହ୍ମଚର୍ଯ୍ୟ ତେଜୋଦୀପ୍ତ ହେଲେ ଆଳସ୍ୟରେ ପ୍ରତୀକ ମହିଷ ଧ୍ୱଂସ ହୁଏ । ଏହା ହିଁ ବେଦ ତତ୍ତ୍ୱରେ ଦୁର୍ଗାତତ୍ତ୍ୱ ରହସ୍ୟ ।

ସେହି କାରଣରୁ ପୁରାଣମାନଙ୍କରେ ତପଃ ସାଧନାର ପ୍ରାଧାନ୍ୟ ବଦଳରେ ସହଜ ଚିନ୍ତନ ଓ ଭକ୍ତି ପାଇଁ ବହୁ ଦେବଦେବୀ ଓ ଦାର୍ଶନିକ ପ୍ରତୀକର କଳ୍ପନା କରାଯାଇଛି ଦୁର୍ଗା ବିଚାର ସେହି ସନ୍ଦର୍ଭର ଅଂଶ ବିଶେଷ ।

ଏହିସବୁ ତଥ୍ୟ ଓ ତତ୍ତ୍ୱକୁ ଯଦି ସୁସ୍ଥ ମସ୍ତିଷ୍କର ପର୍ଯ୍ୟାଲୋଚନା କରାଯାଏ, କୌଣସି ଅବସ୍ଥାରେ ଏକ ନିର୍ବିବାଦୀୟ ନିଷ୍ପତ୍ତିମୂଳକ ପର୍ଯ୍ୟାୟରେ ଉପସ୍ଥିତ ହୋଇ ପାରିବ ନାହିଁ । ଯାହା ଫଳରେ ସମ୍ପ୍ରତି ସୃଷ୍ଟି ହୋଇଛି ଏକ ଦ୍ୱିଧାଗ୍ରସ୍ତ ଆଧ୍ୟାତ୍ମିକ ଚେତନା । ଏସବୁର ବ୍ୟତିକ୍ରମ ଅତି ପରିସ୍ଫୁଷ୍ଟ । ଅଧିକାଂଶ ମନ୍ଦିର ଓ ମଣ୍ଡପମାନଙ୍କରେ ପୂଜାର୍ଚ୍ଚନା ସ୍ୱାଧ୍ୟାୟ ନିରବ, ନିଷ୍ଠା ଓ ଏକାଗ୍ରତା ଆଦୌ ନାହିଁ । ବରଂ କୋଳାହଳ ବୃଦ୍ଧି ପାଉଛି ଯନ୍ତ୍ର ଓ ମନ୍ତ୍ର ଉଭୟ ଏହାର ଶିକାର ହୋଇଛନ୍ତି । ଏହା ପ୍ରତି ଆଦର ଓ ଅନୁରାଗ କମିଯାଉଛି । ତାହାନୁହେଁ, ଏ ସବୁର ପରମ୍ପରା ଓ ଅଭ୍ୟାସଗତ ନିଷ୍ଠା ଓ ଆନ୍ତରିକ ଉଦ୍ୟମ ମଧ୍ୟ ଲୋପ ପାଉଛି । ତେଣୁ ଗୃହରେ କିମ୍ବା ସାର୍ବଜନୀନ ପୂଜା ମଣ୍ଡପମାନଙ୍କରେ ଜୀବନକୁ ଉନ୍ନତି ଓ ଉର୍ଦ୍ଧ୍ୱମୁଖୀ କରିବାର ଉତ୍ସାହ ଓ ଉଦ୍ଦୀପନା ଆଉ ମିଳୁନାହିଁ । ଏଥିରେ ଅତ୍ୟାଧୁନିକ କୌଶଳ ପ୍ରୟୋଗ କରି ରଙ୍ଗ ଓ ରୂପର ପରାକାଷ୍ଠାକୁ ପ୍ରତିଷ୍ଠିତ କରାଯାଉଛି ।

ତେଣୁ ଦୁର୍ଗା ଶିବ, ଗଣେଷ ଓ ସରସ୍ୱତୀ ଇତ୍ୟାଦି ଏକ ଚେତନାମୟ ମହାନ ଦିବ୍ୟ ଜୀବନର ଶାଶ୍ୱତ ରୂପକୁ ପ୍ରକଟିତ ନକରି ସୁଲଭ ଓ ଅନ୍ତଃସାର ଶୂନ୍ୟ ଏକ ଜଡ ଜୀବନର ରଙ୍ଗ ଓ ଧ୍ୱନିରେ ମ୍ରିୟମାଣ ହୋଇଛି । ମୂର୍ତ୍ତି ଗଠନରେ ଯେଉଁ ଆଧୁନିକତାର ପ୍ରତିଯୋଗିତା ଆରମ୍ଭ ହୋଇଛି ସେଥିରେ ଭକ୍ତିଭାବ ଜାଗ୍ରତ ହେବା ପରିବର୍ତ୍ତେ ଉଦ୍ଦୀପନା ସୃଷ୍ଟି ହେବାର ପ୍ରୟାସ କରାଯାଉଛି । ଯାହାକୁ ପ୍ରତୀକ କରି ଯୁଗାନ୍ତର ଗଢି ଉଠିଥିବା ବିଶ୍ୱାସକୁ ନଷ୍ଟ କରାଯାଉଛି ।

ଏଣୁ ବାସ୍ତବରେ ଦେଖିବାକୁ ଗଲେ ଆଶ୍ୱିନର ଇଷ୍ଟଦେବୀ ମହାଲକ୍ଷ୍ମୀ, ମହିଷାସୁର ମର୍ଦ୍ଦିନୀ ଦୁର୍ଗା ଶସ୍ୟଗର୍ଭା, ଶାକମ୍ବରୀଙ୍କର ପ୍ରତୀକ । ମୃଣ୍ମୟୀ ରୂପରେ ସେ ଦେବୀ ମଣ୍ଡପମାନଙ୍କରେ ଏବେ ପୂଜିତା । କିନ୍ତୁ ଜଳପୂର୍ଣ୍ଣ ଘଟ ହିଁ ତାଙ୍କର ପ୍ରତିରୂପା ନବ୍ୟପତ୍ରିକା ପୂଜାରେ, ଆଶ୍ୱିନର ଶସ୍ୟ ଲକ୍ଷ୍ମୀଙ୍କର ଆଦ୍ୟ ଆବାହନ । ଅନାବୃଷ୍ଟି, ଅତିବୃଷ୍ଟି, ବନ୍ୟା ପ୍ଲାବନ ଆଉ ଘୂର୍ଣ୍ଣି ଝଞ୍ଜା ରୂପୀ ମହିଷାସୁରର ଶତଆକ୍ରମଣ ଏଡି ଯେଉଁ ଶସ୍ୟ ଲକ୍ଷ୍ମୀ ଅଭୟ ମୁଦ୍ରାରେ ଉଦ୍‌ଭାଷିତା ହୁଅନ୍ତି, ସେ ହିଁ ଶାରଦୀୟା ମହାଦୁର୍ଗା ଆଶ୍ୱିନର ଇଷ୍ଟଦେବୀ ।

ସାର୍ବଜନୀନ ଦୁର୍ଗା ମଣ୍ଡପର ଉତ୍ସବ ଆୟୋଜନ ମଧ୍ୟରେ ଆଜି ଦୁର୍ଗା ଆଉ ଶସ୍ୟଲକ୍ଷ୍ମୀ ନାହାନ୍ତି । ସେଠାରେ ସୌଦାଗରୀ ସଂସ୍କୃତିର ଉଦ୍ଭଟ କୋଳାହଳ । ଗୋଟିଏ କାଳର ସଂସ୍କୃତି ଦିନେ ବିଦାୟ ନେଇ ଯିବା ପରେ, ତା'ର ପ୍ରତୀକର ଜୀର୍ଣ୍ଣ କଙ୍କାଳକୁ ଯେତେ ଆଡମ୍ବରରେ ସଜାଇଲେ ସୁଦ୍ଧା ସେଥିରେ ତା'ର ପ୍ରାଣର ସ୍ପର୍ଶ କିନ୍ତୁ ଆଉ ମିଳେନାହିଁ । ମିଳେ ତାହାର ବିକୃତି ।

ଶାରଦୀୟ ଉତ୍ସବ ଆଜି, ତେଣୁ ଚାନ୍ଦା ପାଇଁ ଜୁଲୁମ୍ । ବିସର୍ଜନ ପଟୁଆର ବେଳେ, ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ବଡପଣର କରାମତି ଦେଖାଇବା ପାଇଁ ପ୍ରତିଯୋଗିତା, ଲାଠୀ ସଜଡା, ସୌଦାଗରୀ ସଂସ୍କୃତିର ଉଲଗ୍ନ ପ୍ରଦର୍ଶନୀ ଆଉ ଶସ୍ତା ହିନ୍ଦୀ ଗାନାର କାନଫଟା ଆର୍ତ୍ତ ଚିତ୍କାର ଆଉ ଉତ୍ସବ ନାମରେ ଉନ୍ମତ୍ତ ତାହିଁ ଦେଖିବାକୁ ଓ ଶୁଣିବାକୁ ମିଳୁଛି ।

ସିଦ୍ଧବାରଙ୍ଗପୀଠ, ପୁନଙ୍ଗ
ଜଗତସିଂହପୁର–୭୫୪୧୦୩

# ଶକ୍ତିମୟୀ ମା': ତୋତେ ପ୍ରଣାମ

**ଛନ୍ଦା ମିଶ୍ର**

ମାଆ ଦୁର୍ଗା । ଆଦିଶକ୍ତି । ଯେଉଁ ଶକ୍ତି ବିନା ଶିବ ମଧ୍ୟ ଶବରେ ପରିଣତ ହୋଇଥାଏ । ସମଗ୍ର ବିଶ୍ୱ ଯେଉଁ ଶକ୍ତି ବଳରେ ବଳୀୟାନ୍, ସେହିଁ ସର୍ବମଙ୍ଗଳ ଦାୟିନୀ, ସର୍ବସିଦ୍ଧିଦାତ୍ରୀ । ସେ ମା', ସେ ସନ୍ତାନର ସମସ୍ତ ଦୋଷ ଦୁର୍ବଳତାକୁ କ୍ଷମା ଦେଇ ନିଜ ପଣତ ତଳେ ଦିଏ ଅଭୟ ଆଶ୍ରୟ ।



ନବରାତ୍ରୀ ପାଳନ ଅବସରରେ ମାଆ ଦୁର୍ଗାଙ୍କର ନବରୂପର ପୂଜା-ଉପାସନା ଅତ୍ୟନ୍ତ ଶ୍ରଦ୍ଧା ଓ ବିଧିବିଧାନର ସହ ପାଳନ କରାଯାଏ । ସେହି ନଅଟି ରୂପ ହେଉଛି-

**୧) ଶୈଳପୁତ୍ରୀ:** ଶୈଳରାଜ ହିମାଳୟଙ୍କ ପୁତ୍ରୀ ରୂପରେ ଭୂମିଷ୍ଠ ହୋଇ ମାଆ ଦୁର୍ଗା ପ୍ରଥମେ ଶୈଳପୁତ୍ରୀ ନାମରେ ବିଖ୍ୟାତ ହେଲେ । ତାଙ୍କର ଅନ୍ୟନାମ ପାର୍ବତୀ ବା' ହୈମବତୀ । ସେ ବୃଷଭବାହିନୀ । ତାଙ୍କ ଡାହାଣ ହାତରେ ତ୍ରୀଶୂଳ ଓ ବାମ ହାତରେ ପଦ୍ମ ଶୋଭାପାଏ । ସେ ଶିବଙ୍କର ଅର୍ଦ୍ଧାଙ୍ଗିନୀ । ନବରାତ୍ର ପୂଜା ସମୟରେ ପ୍ରଥମ ଦିବସଟିରେ ଶୈଳପୁତ୍ରୀଙ୍କ ପୂଜା-ଉପାସନା କରାଯାଏ ।

ବନ୍ଦେ ବାଞ୍ଛିତ ଲାଭାୟ ଚନ୍ଦ୍ରାର୍ଦ୍ଧକୃତ ଶେଖରାମ୍ ।
ବୃଷାରୂଢାଂ ଶୂଳଧରାଂ ଶୈଳପୁତ୍ରୀଂ ଯଶସ୍ୱିନୀମ୍ ।

**୨) ବ୍ରହ୍ମଚାରିଣୀ:** ମାଆଙ୍କର ଦ୍ୱିତୀୟ ସ୍ୱରୂପଟି ହେଉଛି ବ୍ରହ୍ମଚାରିଣୀ । ମାଆ ହିମାଳୟ ପୁତ୍ରୀ, ଭଗବାନ ଶଙ୍କରଙ୍କୁ ପାଇବା ପାଇଁ ଘୋର ତପସ୍ୟା କରିଥିଲେ । ସେହି ଦୁଷ୍କର ତପସ୍ୟା ହେତୁ ତାଙ୍କୁ ତପଶ୍ଚାରିଣୀ ବା' ବ୍ରହ୍ମଚାରିଣୀ କୁହାଯାଏ । ଦେବୀଙ୍କ ସ୍ୱରୂପ ପୂର୍ଣ୍ଣ ଜ୍ୟୋର୍ତିମୟ ଓ ଅତ୍ୟନ୍ତ ଭବ୍ୟ । ଦେବୀଙ୍କ ଡାହାଣ ହାତରେ ଜପାମାଳା ଓ ବାମ ହାତରେ କମଣ୍ଡଳୁ ଶୋଭାପାଏ ।

ଦଧାନା କର ପଦ୍ମାଭ୍ୟାମକ୍ଷମାଳା
କମଣ୍ଡଳୁ ।
ଦେବୀ ପ୍ରସାଦ ତୁ ମୟି
ବ୍ରହ୍ମଚାରିଣ୍ୟନୁତ୍ତମା ॥

**୩) ଚନ୍ଦ୍ରଘଣ୍ଟା:** ନବରାତ୍ରୀ ଉପାସନାର ତୃତୀୟ ଦିନ ଚନ୍ଦ୍ରଘଣ୍ଟାଙ୍କର ପୂଜା-ଉପାସନା କରାଯାଏ । ଏହାଙ୍କ ମସ୍ତକରେ ଘଣ୍ଟା ଆକାରର ଅର୍ଦ୍ଧଚନ୍ଦ୍ର ବିରାଜିତ ହୋଇଥାଏ । ଦେବୀଙ୍କ ଦେହର ରଙ୍ଗ ସୁନାପରି ଉଜ୍ଜ୍ୱଳ । ସେ ଦଶଭୁଜା, ସେ ସିଂହବାହିନୀ ଓ ଯୁଦ୍ଧ ନିମନ୍ତେ ଉଦ୍ୟତ ମୁଦ୍ରାରେ ବିରାଜିତ । ଦୁଷ୍ଟ ଦଳନ ପାଇଁ ମାତା ସର୍ବଦା ତତ୍ପର ରହିଥିଲେ ମଧ୍ୟ ତାଙ୍କ ସ୍ୱରୂପ ଅତ୍ୟନ୍ତ ଶାନ୍ତ ଓ ସୌମ୍ୟ ।

ପିଣ୍ଡଜପ୍ରବରାରୂଢା ଚଣ୍ଡକୋ ପାସ୍ତ୍ରକୈର୍ଯୁତା ।
ପ୍ରସାଦଂ ତନୁତେ ମହ୍ୟଂ ଚନ୍ଦ୍ରଘଣ୍ଟେତି ବିଶ୍ରୁତା ।

**୪) କୂଷ୍ମାଣ୍ଡା:** ନବରାତ୍ରର ଚତୁର୍ଥ ଦିନ ଦେବୀ କୁଷ୍ମାଣ୍ଡାଙ୍କ ସ୍ୱରୂପଙ୍କୁ ପୂଜା କରାଯାଏ । ନିଜର ମନ୍ଦହାସ ଦ୍ୱାରା ବ୍ରହ୍ମାଣ୍ଡକୁ ଉତ୍ପନ୍ନ କରିଥିବାରୁ ଦେବୀଙ୍କୁ କୁଷ୍ମାଣ୍ଡା କୁହାଯାଇଛି । ଦେବୀ କୁଷ୍ମାଣ୍ଡା ହିଁ ସୃଷ୍ଟିର ଆଦିଶକ୍ତି ବା' ଆଦିସ୍ୱରୂପା ଅଟନ୍ତି । ତାଙ୍କ ପୂର୍ବରୁ ବ୍ରହ୍ମାଣ୍ଡର କୌଣସି ଅସ୍ତିତ୍ୱ ନଥିଲା । ଦେବୀଙ୍କ ଶରୀରର କାନ୍ତି ଓ ପ୍ରଭା ସୂର୍ଯ୍ୟ ସମାନ ଦେଦୀପ୍ୟମାନ ଓ ଭାସ୍ୱର । ବ୍ରହ୍ମାଣ୍ଡର ସକଳ ବସ୍ତୁ ତଥା ପ୍ରାଣୀମାନଙ୍କର ତେଜ ହେଉଛି ମାଆ କୁଷ୍ମାଣ୍ଡାଙ୍କର ଛାୟାମାତ୍ର । ଅଷ୍ଟଭୁଜା ଦେବୀ କୁଷ୍ମାଣ୍ଡା ସିଂହବାହିନୀ ଅଟନ୍ତି ।

ସୁରା ସମ୍ପୂର୍ଣ୍ଣ କଳଶଂ ରୁଧିରାପ୍ଲୁତ ମେବ ଚ ।
ଦଧାନା ହସ୍ତପଦ୍ମାଭ୍ୟାଂ କୁଷ୍ମାଣ୍ଡା ଶୁଭଦାସ୍ତୁ ମେ ॥

**୫) ସ୍କନ୍ଦମାତା:** ଶ୍ରୀ ଦୁର୍ଗାଙ୍କର ପଞ୍ଚମ ସ୍ୱରୂପର ନାମ ସ୍କନ୍ଦମାତା । କୁମାର କାର୍ତ୍ତିକେୟଙ୍କର ଅନ୍ୟନାମ ସ୍କନ୍ଦ । ମାଆଙ୍କ ବିଗ୍ରହରେ ଭଗବାନ ସ୍କନ୍ଦ ବାଳକ ରୂପେ କୋଳରେ ବସିଥାନ୍ତି । ଦେବୀ ଚର୍ତୁଭୂଜା । ସିଂହ ଦେବୀଙ୍କର ବାହନ ଅଟେ । ସ୍କନ୍ଦମାତା ସୂର୍ଯ୍ୟମଣ୍ଡଳର ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି ।

ସିଂହାସନା ଗତା ନିତ୍ୟଂ ପଦ୍ମାଶ୍ରିତକର ଦ୍ୱୟା
ଶୁଭଦାସ୍ତୁ ସଦା ଦେବୀ ସ୍କନ୍ଦମାତା ଯଶସ୍ୱିନୀ ।

**୬) କାତ୍ୟାୟନୀ:** ମାତା ଦୁର୍ଗାଙ୍କର ଷଷ୍ଠ ସ୍ୱରୂପର ନାମ କାତ୍ୟାୟନୀ । ମାତାଙ୍କ ସ୍ୱରୂପ ଅତ୍ୟନ୍ତ ଭବ୍ୟ ଓ ଦିବ୍ୟ । ବର୍ଣ୍ଣ, ସୁବର୍ଣ୍ଣ ପରି ଉଜ୍ଜ୍ୱଳ । ଦେବୀ ଚର୍ତୁଭୁଜା, ସିଂହବାହିନୀ । ଦେବୀ କାତ୍ୟାୟନୀ, ବ୍ରଜମଣ୍ଡଳର ଅଧିଷ୍ଠାତ୍ରୀ ଦେବୀ ରୂପେ ପ୍ରତିଷ୍ଠିତ ।

ଚନ୍ଦ୍ରହାସୋଜ୍ୱଳ କରା ଶାର୍ଦ୍ଦୁଳବର ବାହାନା ।
କାତ୍ୟାୟନୀ ଶୁଭଂ ଦଦ୍ୟାଦେବୀ ଦାନବ ଘାତିନୀ ।

**୭) କାଳରାତ୍ରୀ:** ମାଆଙ୍କର ସପ୍ତମ ଶକ୍ତି କାଳରାତ୍ରୀ ନାମରେ ବିଖ୍ୟାତ । ଦେବୀଙ୍କ ଶରୀରର ରଙ୍ଗ ରାତ୍ରୀର ଅନ୍ଧକାର ପରି ଗାଢ଼କଳା, କେଶ ମୁକୁଳା, ମାଆଙ୍କର ତିନୋଟି ନେତ୍ର । ତାଙ୍କର ବାହନ ଗର୍ଦ୍ଦଭ । ମାଆ ଚର୍ତୁଭୁଜା । ଦେବୀ କାଳରାତ୍ରୀଙ୍କ ସ୍ୱରୂପ ଅତ୍ୟନ୍ତ ଭୟଙ୍କର ହୋଇଥିଲେ ମଧ୍ୟ ମାଆ ସର୍ବଦା ଶୁଭଫଳ ପ୍ରଦାନ କରୁଥିବାରୁ ତାଙ୍କର ଅନ୍ୟନାମ ଶୁଭଙ୍କରୀ ।

ଏକବେଣୀ ଜପାକର୍ଣ୍ଣପୁରା ନଗ୍ନା ଖରସ୍ଥିତା ।
ଲମ୍ବୋଷ୍ଠୀ କର୍ଣ୍ଣକା କର୍ଣ୍ଣୀ ତୈଳାଭ୍ୟକ୍ତ ଶରୀରିଣୀ ।
ବାମ ପାଦୋଲ୍ଲ ସଲ୍ଲୋହଲ ତାକଣ୍ଟକ ଭୂଷଣା ।
ବର୍ଦ୍ଧନ ମୂର୍ଧଧ୍ୱଜା କୃଷ୍ଣା କାଳରାତ୍ରି ଭୟଙ୍କରୀ ।

**୮) ମହାଗୌରୀ:** ନବରାତ୍ରର ଅଷ୍ଟମ ଦିନ ମହାଗୌରୀଙ୍କର ପୂଜା ଆରାଧନା କରାଯାଏ । ମାଆଙ୍କର ଗୌରବର୍ଣ୍ଣ ବର୍ଣ୍ଣନା କରି ଶଙ୍ଖ, ଚକ୍ର ଓ କୁନ୍ଦଫୁଲର ଉପମା ଦିଆଯାଏ । ଦେବୀଙ୍କର ସମସ୍ତ ବସ୍ତ୍ର ଓ ଆଭୂଷଣ ମଧ୍ୟ ଶ୍ୱେତ । ମାଆ ଚତୁର୍ଭୁଜା ଓ ବୃଷବାହିନୀ ।

ଶ୍ୱେତବୃଷେ ସମାରୂଢ଼ା ଶ୍ୱେତାମ୍ବରଧରା ଶୁଚିଃ ।
ମହାଗୌରୀ ଶୁଭଂ ଦଦ୍ୟାନ୍ମହାଦେବ ପ୍ରମୋଦଦା ॥

**୯) ସିଦ୍ଧିଦାତ୍ରୀ:** ସକଳ ସିଦ୍ଧି ପ୍ରଦାନ–କାରୀ ମା' ଦୁର୍ଗାଙ୍କୁ ନବମୀଦିନ ସିଦ୍ଧିଦାତ୍ରୀ ରୂପରେ ପୂଜା କରାଯାଏ । ସେ ଚତୁର୍ଭୁଜା, ସିଂହବାହିନୀ ଏବଂ ପଦ୍ମାସିନୀ । ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ହେଉଛି ମାତାଙ୍କ ଭୂଷଣ । ଯେକେହି ଶାସ୍ତ୍ରୀୟ ବିଧି–ବିଧାନ ଅନୁସାରେ, ପୂର୍ଣ୍ଣ ନିଷ୍ଠାର ସହ ଦେବୀଙ୍କ ସାଧନା କରେ, ମାତା ସିଦ୍ଧିଦାତ୍ରୀଙ୍କ କୃପାରୁ ତାଙ୍କୁ ସକଳ ସିଦ୍ଧି ପ୍ରାପ୍ତ ହୁଏ ।

ସିଦ୍ଧ ଗନ୍ଧର୍ବ ଯକ୍ଷା ଦ୍ୟୈରସୁ ରୈରମରୈରପି ।
ସେବ୍ୟମାନା ସଦା ଭୂୟାତ୍ ସିଦ୍ଧିଦା ସିଦ୍ଧିଦାୟିନୀ ॥

ତେବେ ମା' ଦୁର୍ଗା ଅନେକ ରୂପରେ ନିଜ ପରାକାଷ୍ଠା ଦେଖାଇ ଥିଲେ ମଧ୍ୟ ମାଆ ମହିଷାମର୍ଦ୍ଦିନୀ ରୂପରେ ସର୍ବଜନବିଦିତା । ବ୍ରହ୍ମାଙ୍କୁ କଠୋର ତପସ୍ୟା କରି ବରପ୍ରାପ୍ତ ହେଲାପରେ ଦୈତ୍ୟ ମହିଷାସୁର ତିନିଲୋକରେ ଆତଙ୍କ ଚଳାଇ ଥିଲା । ଚତୁର୍ଦ୍ଦିଗ ଅରାଜକତାର ବିଷବଳୟରେ ହାହାକାର କରିବାକୁ ଲାଗିଲା । ଆସୁରିକ ଶକ୍ତିର ପ୍ରଭାବରେ ଦୈବୀଶକ୍ତି ହେଲା ଥରହର । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଭୟ ଓ ଆତଙ୍କରେ କମ୍ପିଉଠିଲା କିଂକର୍ତ୍ତବ୍ୟ ବିମୂଢ଼ ହୋଇ ବ୍ରହ୍ମା, ଶିବ, ଧରିତ୍ରୀମାତା ଓ ଅନ୍ୟ ଦେବଦେବୀଗଣ ବିଷ୍ଣୁଙ୍କ ପାଖରେ ସମସ୍ୟାର ସମାଧାନ ପାଇବା ପାଇଁ ମନ୍ତ୍ରଣା କରିବାକୁ ଏକତ୍ର ହେଲେ ।

ଦୈତ୍ୟ ମହିଷାସୁର ବେଶ୍ ଚତୁର ଥିଲା। ସେ ବ୍ରହ୍ମାଙ୍କଠାରୁ ଅମର ବର ପ୍ରାପ୍ତ କରିବା ପାଇଁ ଚାହୁଁଥିଲା, ମାତ୍ର ତାହା ଅସମ୍ଭବ ଜାଣି କୌଶଳତା ପୂର୍ବକ ଏକ ଅଦ୍ଭୁତ ବର ଆପଣେଇ ନେଲା । କୌଣସି ଦେବ, ଦାନବ ଅବା ମାନବ ନୁହେଁ ବରଂ ଏକ ନାରୀ, ସେ ପୁଣି ନିଜର ସର୍ବଶ୍ରେଷ୍ଠ ଭୂଷଣ ଲଜ୍ଜ୍ୟା ତ୍ୟାଗ କରି ଉଲଗ୍ନ ହୋଇ ମହିଷାସୁରର ମୃତ୍ୟୁର କାରଣ ସାଜିବ । ମାତ୍ର ଏହା କିଭଳି ସମ୍ଭବ ହେବ, ତାହା ଥିଲା ଦେବତାମାନଙ୍କ ପାଇଁ ଚିନ୍ତାର

କାରଣ । ଶେଷରେ ସୃଷ୍ଟିକର୍ତ୍ତା ବ୍ରହ୍ମା, ପାଳନ କର୍ତ୍ତା ବିଷ୍ଣୁ ଓ ସଂହାରକର୍ତ୍ତା ମହେଶ୍ୱରଙ୍କ ତେଜରୁ ଆବିର୍ଭୂତା ହେଲେ ଏକ ଦେବକନ୍ୟା । ତାଙ୍କୁ ସମସ୍ତ ଦେବଦେବୀ ନିଜର ଅସ୍ତ୍ରପ୍ରଦାନ କଲେ ।

ଦେବୀ, ରଣହୁଙ୍କାର ଦେଇ, ନିଜ ସିଂହବାହନ ଉପରେ ଉପବିଶ୍ଟ ପୂର୍ବକ, ଦୈତ୍ୟ ମହିଷକୁ ଯୁଦ୍ଧ ପାଇଁ ଆହ୍ୱାନ ଦେଲେ । ଜଣେ ତୁଚ୍ଛ ନାରୀ ବୋଲି ହେୟଜ୍ଞାନ କରି ଅସୁର, ଅକ୍ଲେଶରେ ଦେବୀଙ୍କୁ ପରାଜିତ କରିଦେବ ବୋଲି ମନେ କରିଥିଲା । ମାତ୍ର ବାରମ୍ବାର ହାରିଲା ପରେ ଅନେକ ପ୍ରକାର ରୂପ ଧାରଣ କରିପାରୁଥିବା ମାୟାବୀ ମହିଷାସୁର, ଶେଷରେ ଗୋଟିଏ ମହିଷର ରୂପ ଧରି ଦେବୀଙ୍କ ଦୃଷ୍ଟିରେ ଭ୍ରମ ସୃଷ୍ଟି କରି ଦେବୀଙ୍କ ଉପରେ ଆକ୍ରମଣ କରିବାକୁ ଆଗେଇ ଆସିଲା । ହେଲେ, ଯିଏ ସକଳ ଶକ୍ତିର ଆଧାର, ଯାହାର ନିର୍ଦ୍ଦେଶ ବିନା ତ୍ରିଭୂବନ ଛାଣୁ ପାଲଟିଯାଏ, ସେହି ମହାନ୍ ଶକ୍ତିମୟୀ ଦୁର୍ଗାଙ୍କୁ କେଉଁ ମାୟା ଅବା ଶକ୍ତି ବା ହରାଇପାରିବ ? ଶେଷରେ ମହିଷାସୁରର ବକ୍ଷ ଭେଦ କଲା ଦେବୀଙ୍କ ତ୍ରୀଶୂଳ । ଅନ୍ୟାୟ, ଅନୀତି ଓ ଦୂରାଚାରର ବିନାଶ ହେଲା । ଚତୁର୍ଦ୍ଦିଗରେ ଶାନ୍ତିହେଲା ପ୍ରତିଷ୍ଠା । ତ୍ରିଭୂବନ, ଆନନ୍ଦ ସୁଖରିତ ହୋଇଉଠିଲା ଶୁଭ ଶଙ୍ଖ ଧ୍ୱନିରେ ।

ଯେ ସନ୍ତାନ ବତ୍ସଳା, ଯାହାର ହୃଦୟ ସନ୍ତାନ ପାଇଁ ସଦା ବ୍ୟାକୁଳିତ, ସେ ସନ୍ତାନର ଦୁଃଖ ଦେଖି ସହିବ ବା କିପରି ? କାଳେ କାଳେ ମା' ଏହା ପ୍ରମାଣିତ କରିଦେଇଛନ୍ତି । ସେ ଦେବୀ, ଦୟା, କ୍ଷମା, ସ୍ନେହ, ପ୍ରେମ ଓ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କ ଚରଣାଶ୍ରିତ ହୋଇ ଭକ୍ତ ପାଏ ଅଭୟ ଆଶ୍ରୟ ଓ ମାନସିକ ପ୍ରଶାନ୍ତି ।

ଜୟ ଦୁର୍ଗା, ତୁମେ ଦୁର୍ଗତିନାଶିନୀ, ତୁମ କରୁଣାରେ ସମସ୍ତ ଦୁଃଖ ଓ ଶୋକ ନାଶ ହୁଏ । ସୁଖ, ଶାନ୍ତି ଓ ମୈତ୍ରୀରେ ଧରା ହୁଏ ପ୍ଲାବିତ । ତୁମ ଚରଣରେ କୋଟି କୋଟି ପ୍ରଣାମ୍ ।

୩ ଆର୍/୬, ବିଜେବିନଗର
ଭୁବନେଶ୍ୱର

# ମା' ଶରଣ ଦିଅ ଚରଣେ

ଉର୍ମିଳା ମିଶ୍ର

ଜଗଦମ୍ବା ଯୋଗମାୟା ଯୋଗେଶ୍ୱରୀ
ଜୟମା କ୍ଷମାସାଗରୀ ।
ଦୁର୍ଗା ଦୁର୍ଗେଶ୍ୱରୀ ଦୁଷ୍ଟଦର୍ପହାରୀ
ଢାଳିଦିଅ କୃପାବାରି ।

କାତ୍ୟାୟନୀ ମହାମାୟୀ ମାହେଶ୍ୱରୀ
ଭଟ୍ଟାରିକା ଭଗବତୀ
ଲାବଣ୍ୟମୟୀ ମା' ଭବାନୀ ଶିବାନୀ
ରୁକ୍ମୁଣୀ ଉମା ପାର୍ବତୀ ।

ଜଗତ୍‌ଜନନୀ ମହିଷାମର୍ଦ୍ଦିନୀ
କ୍ଷମା କରିଦିଅ ବାରେ ।
ସର୍ବପାପ ତାପ ଧୋଇ ଦେଇ ମାଆ
ଶରଣ ଦିଅ ଚରଣେ ।

ପୁଣ୍ୟତୋୟା ପୌର୍ଣ୍ଣମାସୀ ପୂଜ୍ୟା ତୁମେ
ଏହି ଭିକ୍ଷା ଢାଳି ଦେବ ।
ପତିତପାବନ– ପୀତାମ୍ବରୀ ପଦେ
ମଥା ମୋର– ଲୋଟୁଥିବ ।

ଶଙ୍କଟ ତାରିଣୀ ଭୁବନ ମୋହିନି
ସତ ହେବ କି ମୋ ସ୍ୱପ୍ନ ।
କାଇଁଚମାଳିଆ ଘନଶ୍ୟାମକୁ ମୋ
କରାଇ ଦେବ ଦର୍ଶନ ।

ମାର୍ଫତ୍– ଶ୍ରୀଚରଣ ମିଶ୍ର
ଗ୍ରା/ପୋ– ମହୁଲିଆ
ଭାୟା– ବଡମ୍ବା, ଜିଲ୍ଲା–କଟକ

❖ ❖ ❖

# ଶକ୍ତି ରୂପେଣ ସଂସ୍ଥିତା

କଳିଙ୍ଗରତ୍ନ ବ୍ରହ୍ମାନନ୍ଦ ମହାନ୍ତି

ଯାହା ବିନା ସାରା ଜଗତ ଅଚଳ, ତାହା ହିଁ ଶକ୍ତି । ଜଡ ଶରୀରରେ ଯିଏ ପ୍ରାଣ ସଞ୍ଚାର କରେ, ତାହା ହିଁ ଶକ୍ତି । ଶକ୍ତିର ପରିପ୍ରକାଶ ହିଁ ପ୍ରକୃତି । ମାଆ ସେ । ତ୍ରାଣକର୍ତ୍ତ୍ରୀ ସେ ପ୍ରକୃତି ମାଆ । ଶକ୍ତି ହିଁ ବ୍ରହ୍ମର ଅବ୍ୟକ୍ତ ରୂପକୁ ପରିପ୍ରକାଶ କରି ଏ ବିଶ୍ୱକୁ ପ୍ରକଟିତ କରିଥାଏ । ଶ୍ରୀମଦ୍ ଭଗବତ ଗୀତାରେ ନବମ ଅଧ୍ୟାୟର ଦଶମ ଶ୍ଳୋକରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କଥା ପ୍ରସଙ୍ଗରେ କହିଛନ୍ତି ଯେ–

ମୟାଧକ୍ଷଣ ପ୍ରକୃତିଃ<br>
ସୂୟତେ ସଚରାଚରଂ,<br>
ହେ ତୁ ନାନେନ<br>
କୌନ୍ତେୟ ଜଗତ୍<br>
ବିପରିବର୍ତ୍ତତେ ।

ଅର୍ଥାତ୍– ହେ କୌନ୍ତେୟ ! ଆତ୍ମକୁ ଅର୍ଥାତ୍ ବ୍ରହ୍ମକୁ ମାଧମ କରି ପ୍ରକୃତି ବା ଶକ୍ତି ଏ ସଚରାଚର ଜଗତକୁ ପରିପ୍ରକାଶ କରୁଛି । ତେଣୁ ଏ ସଂସାର ବାରମ୍ବାର ଜାତ ହେଉଛି ପୁଣି ଧ୍ୱଂସ ପାଉଛି । ତାଙ୍କ ବିନା ପୁରୁଷ ପାଲଟେ ଜଡ । ଶିବ ହୁଅନ୍ତି ଅଶିବ । ସେ ହିଁ କେବଳ ଶିବଙ୍କ ଉପରେ ଥାପି ପାରନ୍ତି ପାଦ । ତାଙ୍କୁ ଆରାଧନା କଲେ ତେତ୍ରିଶ କୋଟି ଦେବଦେବୀ, ଯକ୍ଷ ରକ୍ଷ, ନର କିନ୍ନର ସର୍ବେ ବଶୀଭୂତ ହେବାର ପ୍ରବାଦ ସୁସ୍ପଷ୍ଟ । ଅସଂଖ୍ୟ ରୂପ ସେ ଶକ୍ତିର । ସେ ସୃଜନ କାଳରେ ସରସ୍ୱତୀ, ପାଳନ କାଳରେ ମହାଲକ୍ଷ୍ମୀ, ବିନାଶ କାଳରେ ମହାକାଳୀ । ସେ ସତ୍ତ୍ୱ, ରଜ, ତମ ତଥା ସୃଷ୍ଟି ସ୍ଥିତି ପ୍ରଳୟର ସ୍ୱରୂପ ।



ମାତ୍ର ଏ ଜଗତ ଶକ୍ତି ସ୍ୱରୂପା ହୋଇଥିଲେ ମଧ୍ୟ ଶକ୍ତିର ସ୍ୱରୂପ ନାରୀକୁ ସର୍ବଦା ଅବଳାଦୁର୍ବଳା ଭାବରେ ଦେଖି ଆସୁଛି ଏ ମଣିଷ । ଆଜି ନୁହେଁ କି କାଲି ନୁହେଁ– ଆବାହମାନ କାଳରୁ ଏପରି ଭ୍ରମାତ୍ମକ ଧାରଣା ରହି ଆସିଛି । ଏପରି ବିକଳ୍ପ ଭାବନା ବି ଜାତ ହୋଇପଡିଥିଲା ଦାନବାସୁର ମହିଷାର ଅନ୍ତଃକରଣରେ । ଦୁର୍ବଳା ନାରୀଟେ । କ'ଣ ସେ କରି ପାରିବ ପ୍ରବଳ ପରାକ୍ରମୀ ମହିଷାର ।

ସୁପାର୍ଶ୍ୱ ଋଷିଙ୍କ ପୁତ୍ର ସିନ୍ଧୁଦ୍ୱୀପଙ୍କ ଔରସରୁ ଏବଂ ଅସୁରରାଜ ବିପ୍ରଚିତ୍ତିଙ୍କ କନ୍ୟା ମହିଷ୍ମତୀରୁ ଗର୍ଭରୁ ଜନ୍ମ ନେଇଥିଲା ମହିଷା । ଯୌବନରେ ପଦାର୍ପଣ କରି ତପସ୍ୟା କଲା ପ୍ରଜାପିତା ବ୍ରହ୍ମାଙ୍କୁ ଏବଂ ବର ମାଗିଲା ଅମରତ୍ୱ ପ୍ରାପ୍ତି ହେବାକୁ । ଚଣ୍ଡୀ ପୁରାଣରେ ମହାକବି ସାରଳା ଦାସ ଏଥି ପ୍ରସଙ୍ଗରେ ଲେଖିଛନ୍ତି–

ଜନ୍ତୁ ମର୍ତ୍ତ୍ୟରେ ଜନ୍ମିଣ ଅମର କେ ନାହିଁ,<br>
ଦେବତା ହୋଇଲେ ମଧ୍ୟ ଅବଶ୍ୟ ମରଇ ।

ଏହି କଥା ଗୋଟି ତୁହି ରଖି ଥାଅ ମନେ,
ରମଣୀ ହସ୍ତରେ ବଧ ହୋଇବୁ ତୁ ଦିନେ ।

ବ୍ରହ୍ମାଙ୍କ ମୁହଁରୁ ଏକଥା ଶୁଣି ମହିଷାର ଆନନ୍ଦ କହିଲେ ନସରେ । ମନେ ମନେ ଭାବିନେଲା ସାମାନ୍ୟ ନାରୀ ସେ କିପରି ବଧିବ ଏ ପରାକ୍ରମୀ ମହିଷାସୁରକୁ । ଏଣୁ ପୁନଶ୍ଚ ତାଚ୍ଛଲ୍ୟରେ ବ୍ରହ୍ମାଙ୍କୁ ନିବେଦନ କରି କହି ଉଠିଲା– ହେ, ପ୍ରଜାପିତା ବ୍ରହ୍ମା । ଯେଉଁ ନାରୀ ଯୁଦ୍ଧ ଭୂମିରେ ନିଜର ମୁକ୍ତ ଯୌବନ ମୋତେ ଦର୍ଶନ ଦେଇ ପାରିବ, ସେହି ନାରୀ ହିଁ ମୋତେ ବଧିବାକୁ ସକ୍ଷମ ହେବ । ଏତିକି ଅନୁକମ୍ପା ମୋ ପ୍ରତି ଥାଉ । ସାରଳା ଦାସଙ୍କ ଭାଷାରେ–

ଯେବେ ସ୍ତିରୀ ହାତରେ ହେବ ମୋ ନିଧନ,
ହୋଇ ବି ଚାହିଁ ଥିବି ତା ସ୍ତନ ଯୌବନ ।

ଧାରଣା ଥିଲା ଦାନବ ବୀର ମହିଷାର । ରଣାଙ୍ଗନାରେ ସମ୍ବେଦନଶୀଳ । ନାରୀଟିଏ ଅସଂଖ୍ୟ ସୈନ୍ୟ ସେନାନୀଗଣଙ୍କ ମଧରେ ନା ତାର ମୁକ୍ତ ଯୌବନ ପ୍ରଦର୍ଶନ କରିପାରିବ ନା ପାରିବ ହତ୍ୟା କରି । ବ୍ରହ୍ମା କିନ୍ତୁ ଏ ରହସ୍ୟ ପ୍ରତି ସ୍ମିତହାସ୍ୟରେ ତଥାସ୍ତୁ କହି ଚାଲିଗଲେ ।

ଆସିଲା ସେହି ସମୟ । ଅଯୋନୀ ସମ୍ଭୂତାଦେବୀ ଦୁର୍ଗା ନିଜର ସ୍ତନ–ଯୌବନ ପ୍ରକଟିତ କରି ଶୂଳ ବିଦ୍ଧ କଲେ ମହିଷାର ବକ୍ଷରେ । ମାତୃ ଶକ୍ତିର ଯୌବନ ଦର୍ଶନରେ ଅବଶ ହୋଇ ପ୍ରାଣ ହାରିଲା ଦାନବବୀର ପ୍ରବଳ ପରାକ୍ରମୀ ମହିଷା । ମା'ପରା, କ'ଣ ନକରିପାରେ ତା'ର ସନ୍ତାନସନ୍ତତିଙ୍କ ପାଇଁ ।

ଆଦିକବି ସାରଳା ଦାସ ମାତୃକୃପା ଲାଭ କରି କହିଛନ୍ତି– ଦୁର୍ଗା ହେଉଛନ୍ତି ସମଗ୍ର ଜଗତର ଜନନୀ । ତାଙ୍କ ଉପାସନା ପାଇଁ କୌଣସି ବିଶିଷ୍ଟ ଜାତି ଉଦ୍ଦିଷ୍ଟ ନୁହନ୍ତି । ସବୁଜାତି, ସବୁବର୍ଗର ଲୋକେ ଆପଣା ମନସ୍କାମନା ପୂରଣ ପାଇଁ ପୂଜାର୍ଚ୍ଚନା କରିପାରିବେ । ଏଥିପାଇଁ ସେ ବର୍ଣ୍ଣନା କରିଛନ୍ତି ଯେ–

ବିପ୍ର ଚାଣ୍ଡାଳ ନଜାଣୁ କାମ ଅର୍ଥେ ପୂଜି
ମଇଁଷି ମେଷ ଛାଗଳ ବରୋହା ମାଂସ ଭୋଜି ।
ଗନ୍ଧ ପୁଷ୍ପ ଚନ୍ଦନ ଧୂପଦୀପ ନଇବେଦ୍ୟ
ଏମନ୍ତ ପ୍ରକାରେ ତୋତେ ପୂଜା କରିବେ ସର୍ବ
ସମସ୍ତେ ଯେବେ ତୋତେ ପୂଜା କରିବେ
ରାଜାମାନେ ତୋତେ ପୂଜା ଆରମ୍ଭିବେ ।

ବ୍ରହ୍ମ କ୍ଷତ୍ରିୟ ଶୁଦ୍ର ବୈଶଃ ଚାରିଜାତି,
ଯେ ତୋତେ ସ୍ଥାପନା କରିବ ବାଞ୍ଛା ପୂରିବ ଜଗତମାତି ।

ସତ୍ତ୍ୱ, ରଜ, ତମ ଭେଦରେ ଯେଉଁ ତିନିଗୋଟି ଭେଦ ରହିଛି, ସେହି ଗୁଣତ୍ରୟର ସମାବସ୍ଥାରେ ଯେ ସର୍ବ ବ୍ୟାପିନୀ ସେ ହେଉଛନ୍ତି ଦେବୀଦୁର୍ଗା । ତାଙ୍କର ତପ୍ତ କାଞ୍ଚନ ବର୍ଣ୍ଣର ଆଭା ଏବଂ ଆଭୂଷଣଗୁଡିକର ତେଜରେ ଶୂନ୍ୟବ୍ରହ୍ମ ଜଗତକୁ ପରିପୂର୍ଣ୍ଣ କରିଥିଲେ । ତେଣୁ ପ୍ରାଧାନିକ ରହସ୍ୟରେ କୁହାଯାଇଛି–

ସର୍ବସ୍ୟାଦ୍ୟା ମହାଲକ୍ଷ୍ମୀ ସ୍ତ୍ରୀଗୁଣା ପରମେଶ୍ୱରୀ
ଲକ୍ଷାଲକ୍ଷ ସ୍ୱରୂପାସା ବ୍ୟାପ୍ୟ କୃସ୍ନଂ ବ୍ୟବସ୍ଥିତା
ତପ୍ତ କାଞ୍ଚନ ବର୍ଣ୍ଣାଭ୍ୟା ତପ୍ତ କାଞ୍ଚନ ଭୂଷଣା
ଶୂନ୍ୟ ତଦଖିଳଂ ସ୍ୱେନ ପୂରୟା ମାସ ତେଜସା ।

ତମ ଗୁଣରେ ମହାଶକ୍ତି– ମହାକାଳୀ, ରଜଗୁଣରେ ସମ୍ପନ୍ନା ମହାଲକ୍ଷ୍ମୀ, ତତ୍ତ୍ୱଗୁଣରେ ଦେବୀ ସରସ୍ୱତୀ, ସ୍ୱଗୁଣ ଓ କର୍ମାନୁସାରେ ମହାକାଳୀ, ମହାଲକ୍ଷ୍ମୀ ଓ ଦେବୀ ସରସ୍ୱତୀଙ୍କ ସହ ଦେବାଧିଦେବ ଶିବ ସୃଷ୍ଟିକର୍ତ୍ତା ବ୍ରହ୍ମା ଓ ସ୍ୱୟଂ ଭଗବାନ ବିଷ୍ଣୁଙ୍କର ମିଳନରୁ ସୃଷ୍ଟି ଏ ଜଗତ ।

ଚାମୁଣ୍ଡା ତନ୍ତ୍ରରେ କୁହାଯାଇଛି– ଆଦିମାତା, ସର୍ବଶକ୍ତିମୟୀ ଦେବୀଙ୍କ ବିଭିନ୍ନ ନାମକୁ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି–

କାଳୀ ତାରା ମହାବିଦ୍ୟା ଷୋଡଶୀ ଭୁବନେଶ୍ୱରୀ
ଭୈରବୀ ଛିନ୍ନମସ୍ତାଃ ବିଦ୍ୟା ଧୂମାବତୀ ତଥା
ବଗଳା ସିଦ୍ଧ ବିଦ୍ୟାଃ ମାତଙ୍ଗୀ କମଳାତ୍ମିକା ।
ଏତାଦଶ ମହାବିଦ୍ୟା ସିଦ୍ଧ ବିଦ୍ୟା ପ୍ରକୀର୍ତ୍ତିତାଃ ।

ମହାସିଦ୍ଧି ସାରସ୍ୱତାନୁଯାୟୀ– ଆଦିନାଥ ଶ୍ରୀ ସଦାଶିବଙ୍କ ଦ୍ୱାରା କଥିତ ତନ୍ତ୍ରରେ ଯାମଳ, କୁଳାର୍ଣ୍ଣବ, ଜ୍ଞାନାର୍ଣ୍ଣବ, ନୀଳତନ୍ତ୍ର, କାଳୀତନ୍ତ୍ର ଆଦି ଚଉଷଠୀ ଭେଦକୁ ବର୍ଣ୍ଣନା କରାଯାଇଛି । ସମସ୍ତ ଭେଦର ଆଦି ହେଉଛନ୍ତି ଦେବୀ ଶକ୍ତି ସ୍ୱରୂପିଣୀ ମା' ଦୁର୍ଗା ।

ସେହିପରି କଳ୍ପଦ୍ରୁମରେ ସୃଷ୍ଟି, ପ୍ରଳୟ, ଦେବପୂଜା, ସାଧନ, ପୁରଶ୍ଚରଣ, ଷଟ୍ କର୍ମ ସାଧନ ଚତୁର୍ବିଦ୍ଧ ଧ୍ୟାନ ଏହି ସାତ ଲକ୍ଷଣ ବର୍ଣ୍ଣନା ଦେଖିବାକୁ ମିଳେ ।

ଏହି ସାତ ଲକ୍ଷଣର ମୂଳ ଉତ୍ସ ହେଉଛନ୍ତି ଦେବୀଦୁର୍ଗା । ତାଙ୍କୁ ଭକ୍ତି ଏବଂ ଏକାଗ୍ରତାର ସହିତ ପ୍ରାତଃ କାଳରେ ସ୍ମରଣ କଲେ ସର୍ବବାଧା ଦୂରୀଭୂତ ହୋଇଥାଏ । ମା'= ମ+ଆ, ମ– ଅର୍ଥାତ୍ ଆନନ୍ଦ ପ୍ରବର୍ଦ୍ଧକ ଏବଂ ଆ– ଅର୍ଥାତ୍ ବାଧା ପ୍ରତି ହରଣକାରୀ।

ଦୁର୍ଗା ଉପାସନା ଏକ ସ୍ୱତନ୍ତ୍ର ଉପାସନା । ଏହାଦ୍ୱାରା ଧର୍ମ, ଅର୍ଥ, କାମ, ମୋକ୍ଷ ଆଦିଚତୁଃବର୍ଗ ଫଳ ପ୍ରାପ୍ତି ହୋଇଥାଏ । ଦୁର୍ଗାପୂଜା ହେଉଛି ସାର୍ବଜନୀନ ପୂଜା । ଏହାକୁ ସର୍ବେ ସର୍ବତ୍ରପାଳନ ହିଁ ବିଧେୟ । ମା’ ସର୍ବ ବନ୍ଦନୀୟା ।

ପୂଜନୀୟା ଜନୈର୍ଦେବୀ ସ୍ଥାନେ ସ୍ଥାନେ ପୁରେ ପୁରେ
ଗୃହେ ଗୃହେ ଶକ୍ତି ପରେ ଗ୍ରାମେ ଗ୍ରାମେ ବନେ ବନେ ।

କାଳିକା ପୁରାଣରେ ବର୍ଣ୍ଣିତ ଯେ ଭାରତବର୍ଷରେ ଚାରି ଦିଗରେ ଥିବା ଚାରି ମୁଖ୍ୟ ଶକ୍ତିପୀଠମାନଙ୍କ ମଧ୍ୟରୁ ଉଡ୍ର ବା ଓଡ଼ିଶା (ଉତ୍କଳ) ହିଁ ଅନ୍ୟତମ ।

ଓଡ୍ରପୀଠଂ ପଶ୍ଚିମେ ତୁ ତଥୈବୋଡ୍ରେଶ୍ୱରୀ ଶିବାମ୍
କତ୍ୟାୟନୀଂ ଜଗନ୍ନାଥ ମୋଡ୍ରେଶଂ ଚ ପ୍ରପୂଜୟେତ୍ ।

ଓଡ୍ରେଶ୍ୱରୀ ହେଉଛନ୍ତି କାତ୍ୟାୟନୀ । ଓଡ୍ର ପ୍ରଦେଶ ହେଉଛି ମାଆଙ୍କର ଆଦିପୀଠ । ଓଡ୍ରାଖ୍ୟଂ ପ୍ରଥମଂପୀଠଂ ଦ୍ୱିତୀୟଂ ଜାଳଶୈଳକମ୍ ତୃତୀୟଂ ପୂର୍ଣ୍ଣପୀଠନ୍ତୁ କାମରୂପଂ ଚତୁର୍ଥକମ୍ ।

ଋକ୍‌ବେଦର ବିଶେଶ୍ୱରୀ ସୂକ୍ତରେ ବେଦପତି ବ୍ରହ୍ମା ସ୍ତୁତିକରି କହିଛନ୍ତି– ହେ ନିତ୍ୟା, ହେ ଅକ୍ଷର ବ୍ରହ୍ମ ସ୍ୱରୂପା । ଆପଣ ହିଁ ଅମୃତରୂପା । ପ୍ରଣମ ସ୍ୱରୂପା– ଶକ୍ତିରୂପିଣୀ । ଅ–ଭ–ମ ଏହି ତ୍ରିବିଧମାର୍ଗର ଅବସ୍ଥିତା । ଆପଣ ହିଁ ପରିଣାମହୀନା ଶ୍ରେଷ୍ଠ ଶକ୍ତି ଓ ଦେବଗଣଙ୍କର ମାତା ପରମ ବୈଷ୍ଣବୀ ଆଦ୍ୟା ସନାତନୀ । କାରଣ ଓ ଉପାଦାନର ପ୍ରତୀକ । ଆପଣ ହିଁ ଜଗତର ଆଦି, ମଧ୍ୟ ଏବଂ ଅନ୍ତ । ଜଗତର ଧରୟିତ୍ରୀ, ବିଶ୍ୱପାଳିକା ମଙ୍ଗଳମୟୀ

ଅହଂ ରୁଦ୍ରେଭିଃ ଦସ୍ତୁଭିଶ୍ଚ ରାମ୍ୟନମାଦି
ତ୍ୟୈରରୁତ ବିଶ୍ୱଦେବୈଃ
ଅହଂମିତା ବରୁଣା ବୁଭୌ ବିଭର୍ମ୍ୟ
ହମିନ୍ଦ୍ରାଗ୍ନୀ ଅହମଶ୍ୱିନା ବୁଭୌ ।

ଅର୍ଥାତ୍– ଏକାଦଶ ରୁଦ୍ର, ଦ୍ୱାଦଶ ଆଦିତ୍ୟ, ଅଷ୍ଟବସୁ, ସର୍ବ ଦେବଗଣ, ଅଗ୍ନି, ବରୁଣ, ମିତ୍ର, ଅଶ୍ୱିନୀକୁମାର ସମସ୍ତ ଦେବୀଗଣମାନଙ୍କର ଅଂଶ ବିଶେଷ ।

ବିଭିନ୍ନ ପୁରାଣରେ ଦୁର୍ଗା ମହିମା ବର୍ଣ୍ଣନା କ୍ଷେତ୍ର ବିଚାରରେ– ଦେବୀ କୌଶଲ୍ୟା (ଶ୍ରୀରାମ ଜନନୀ) ସମସ୍ତ ଅଶୁଭନାଶ ଏବଂ ପୁତ୍ର, ପୁତ୍ରବଧୂଙ୍କର ମଙ୍ଗଳ ନିମନ୍ତେ ଦୁର୍ଗା ପୂଜା କରିଥିବା କଥା ଆଧ୍ୟାତ୍ମ ରାମାୟଣରେ ବର୍ଣ୍ଣନା କରାଯାଇଛି । ଶ୍ରୀମଦ୍ ଭାଗବତ କହେ କୃଷ୍ଣ ପ୍ରେମ ଲାଭ ନିମିତ୍ତ ଗୋପାଙ୍ଗନାମାନେ ଦେବୀ କାତ୍ୟାୟନୀଙ୍କୁ ପୂଜା କରିଥିଲେ । ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡରେ ସୃଷ୍ଟିର ସାରସର୍ବସ୍ୱ ମଧ୍ୟ ପ୍ରକୃତିରୂପିଣୀ ମହାଶକ୍ତି ଏବଂ ସର୍ବୋଚ୍ଚ ପରାଶକ୍ତାଙ୍କ ବିଷୟରେ ବିଶଦ୍‌ଭାବେ ବର୍ଣ୍ଣନା କରାଯାଇଛି । ବରାହମିହିରଙ୍କ ବୃହତ୍ ସଂହିତାରେ ଦେବୀ ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ଏପରିକି ବାମନ ପୁରାଣ, କାଳିକା ପୁରାଣ, ମତ୍ସ୍ୟ ପୁରାଣ ଆଦିରେ ଦେବୀ ମାହାତ୍ମ୍ୟ ଓ ବିଭିନ୍ନ ଶକ୍ତିପୀଠରେ ପରିଚୟ ଦେଖିବାକୁ ମିଳେ । ଦେବୀ ସକଳ ଦେବଙ୍କ ତେଜରୁ ଉତ୍ପନ୍ନା । ତେଣୁ ଉଲ୍ଲେଖ ଅଛି ଯେ–

ହିମବାନ ବାହନଂ ସିଂହମ ରତ୍ନାନୀ ବିବିଧାନୀ ଚ
ଦଦାବଶ୍ୱନଂ ସ୍ମରୟା ପାନ ପାତ୍ରଂ ଧନାଧୀପଃ ।

ଅର୍ଥାତ୍ ହିମବାନ ଦେବୀଙ୍କୁ ମହାବଳବାନ ସିଂହ ସହିତ ରତ୍ନ ଓ ଅଳଙ୍କାର ପ୍ରଦାନ କରିଛନ୍ତି । ଧନପତି କୁବେର ହେଉଛନ୍ତି ସୁରାପତି ପୂର୍ଣ୍ଣ ପାନପାତ୍ର । ସକଳଦେବତା ପ୍ରଦାନ କରିଛନ୍ତି ଶକ୍ତି, ତେଜ ଓ ଅସ୍ତ୍ରଶସ୍ତ୍ର । ଶକ୍ତିମୟୀ ମା’ ସେ । ସର୍ବଶକ୍ତିର ପ୍ରତୀକ । ଯା ଦେବୀ ସର୍ବ ଭୂତେଷୁ ଶକ୍ତିରୂପେଣ ସଂସ୍ଥିତା ।

ଆସ ମା’, ଆସ । ତାମସିକ ଭାବାପନ୍ନରେ ସର୍ବେ ଆପି ନିମଜ୍ଜିତ । ଯା’ ଦେବୀ ସର୍ବ ଭୂତେଷୁ ମାତୃ ରୂପେଣ ସଂସ୍ଥିତା । ମା’ ପରା ତୁ ଏ ସର୍ବଜନଙ୍କର । ସତ୍ୱଗୁଣ ଭରି ଦେ ମା’ ସବୁରି ହୃଦୟରେ । ମହିଷା ସ୍ୱଭାବ ଛାଡି ବଡି ଯାନ୍ତୁ ସର୍ବେ ତୋରି ପରିତ୍ରାଣାୟାଂ ସାଧୁନାଂ ଧର୍ମରେ । ଏତିକି ମାଗୁଣି ମା’ ତୋରି ପାଦପଦ୍ମରେ ।

ନେତାଜୀନଗର, ମଧୁପାଟଣା
କଟକ–୧୦

❖ ❖ ❖

# ପୋଡ଼ାଗଡ଼ର ଦଶହରା ପରବ

ଡକ୍ଟର ପ୍ରମୋଦିନୀ ହୋତା

ନବଭାବ, ନବରଙ୍ଗ, ନବ ଉନ୍ମାଦନା ନେଇ ମନକୁ ଯିଏ ବିହ୍ୱଳିତ କରିଥାଏ, ସେହି ନବରଙ୍ଗପୁର ଜିଲ୍ଲା ଲୋକ ସଂସ୍କୃତିରେ ପରିପୂର୍ଣ୍ଣ । ପୋଡାଗଡ ଯାହାକୁ ଜିଲାର ମୁକୁଟ କହିଲେ ଅତ୍ୟୁକ୍ତି ହେବନାହିଁ । ଦିନେ ପୋଡାଗଡରେ ନଳରାଜାମାନେ ରାଜତ୍ୱ କରୁଥିଲେ । ସେହି ରାଜ୍ୟର ନାମଥିଲା ରାୟରତନପୁର । ରାଜ୍ୟରେ ପ୍ରଜାମେଳି ହୋଇ ପ୍ରଜା ଆନ୍ଦୋଳନ ହେଲା । ପ୍ରଜାମାନେ ରାଗିଯାଇ ଗୁମ୍ଫା ଭିତରେ ରାଜା, ରାଣୀଙ୍କୁ ରଖି ନିଆଁ ଲଗାଇ ଜୀଅନ୍ତା ପୋଡିଦେଲେ । ପରେ ଏହି ରାଜ୍ୟର ନାମ ପୋଡାଗଡ ରଖାଗଲା । ଏଠାରେ ସ୍ୱତନ୍ତ୍ର ଇଟା ତିଆରି ଭଗ୍ନ ପ୍ରାସାଦ, ଶିଳାଲେଖ, ମୂର୍ତ୍ତି ଏବଂ ଦୁଇଟି ପଥରକୁ ସ୍ୱତନ୍ତ୍ର ଲୌହ ନିର୍ମିତ ଆଙ୍କୁଶ ଦ୍ୱାରା ଯୋଡେଇ ହେବା ଦେଖାଯାଏ । ଏଠାରେ ବାର ମାସରେ ତେର ପର୍ବ ପାଳନ କରାଯାଏ । ଏଠାରେ ବିଶେଷତଃ ଆଦିବାସୀମାନେ ବାସ କରନ୍ତି । ଦଶହରା ପର୍ବରେ ଏଠାରେ ସ୍ୱତନ୍ତ୍ରତା ରହିଛି । ଯାହା ଅନ୍ୟତ୍ର ଦେଖାଯାଏ ନାହିଁ । ଶରତର ନୀଳ ଆକାଶର ସବୁଜିମା, ଧରିତ୍ରୀ ରାଣୀ କାଶତଣ୍ଡୀ ଫୁଲରେ ବିମଣ୍ଡିତ ହୋଇଥାଏ । ଆଶ୍ୱିନର ଶୀତ କାକର ଭିଜା ସକାଳର ଶିହରଣ । ଆକାଶର ଭାସମାନ ଧଳା ଧଳା ମେଘଖଣ୍ଡରେ ମେଢ ମନରୁ ସମସ୍ତ ଆବିଳତା ଓ ଅନ୍ଧାର ଦୂର କରି ମିଛ, ମାୟା, ଅତ୍ୟାଚାର, ଦୁର୍ନୀତିର ଦାନବ ନିଧନ ପାଇଁ ମନରୁ ଅନ୍ଧକାର ଦୂର କରିବା ପାଇଁ ଆବିର୍ଭୂତା ହୁଅନ୍ତି ମା' ଦୁର୍ଗା । ଭକ୍ତ ନିଜକୁ ମାଆଙ୍କର ଚରଣାବିନ୍ଦରେ ମନ, ଆତ୍ମା ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରିଥାଏ । ମାଁ ହେଉଛନ୍ତି ଆଦ୍ୟାଶକ୍ତି, ସର୍ବଚେତନ ସ୍ୱରୂପା, ଆଦିରୂଢ ।

ନିରବ ଉପତ୍ୟକା ପୋଡାଗଡ ଯେଉଁଠି ଦଶହରା ପର୍ବକୁ ତିନୋଟି ପର୍ଯ୍ୟାୟରେ ବିଭକ୍ତ କରାଯାଇଥାଏ । ପ୍ରଥମ ଦଶହରାକୁ ଗୁଣ୍ଡୁରୁ ଭୈରବ ଯାତ୍ରା, ଦ୍ୱିତୀୟ ଦଶହରାକୁ ଜୟପୁର ଦଶହରା ପର୍ବ ବା ଅପରାଜିତା ପୂଜାରେ ଯୋଗଦାନ ଏବଂ ତୃତୀୟ ଦଶହରାକୁ ବାହୁଡା ଦଶହରା ଯାତ୍ରା କୁହାଯାଏ । କଙ୍କାଳିନୀ ଏବଂ ପେଣ୍ଡ୍ରାଣୀ ଯାତ୍ରା ପରେ ଦଶହରା ପର୍ବର ଏକମାସ ପର୍ବରୁ ଗାଁର ପ୍ରତ୍ୟେକ ଘରକୁ ଧୁଆ, ଲିପାପୋଛା କରାଯାଇଥାଏ । ତା'ପରେ ପ୍ରତ୍ୟେକ ଘରଘର ବୁଲି ଚାଉଳ ସଂଗ୍ରହ କରାଯାଏ ।

ଝାଝଲ ଦେଇ ପର୍ବତମାଳାର ଏକ ଉଚ୍ଚପର୍ବତ ପୁରୁଣାଗଡର ପାହାଡ ଉପରେ ତିନିମୁଠା ଗ୍ରାମ ହିରାପୁର, ପରିଆ, ବୋରିଗାଁର ଏବଂ ତେୟାନବେଟି ବା ତେୟାନବେ ମୌଜାର ଶିରା, ଚଲାଣ, ଦିସାରୀ, ପୂଜାରୀ, ମୁଖିଆମାନେ ଏକାଠି ହୋଇଥାନ୍ତି । ସେହି ପାହାଡର ପାଦ ଦେଶରେ ଚଉଁରୀଆ ଦେବୀ ପୀଠ ଏବଂ ଗୁଣ୍ଡୁରୁ ଭୈରବ ପୀଠ ରହିଅଛି । ପ୍ରଥମେ ଭୈରବ ପୀଠରେ ଥିବା ସମସ୍ତ ଦେବଦେବୀଙ୍କୁ ପାଣିରେ ଧୋଇ ଦିଆଯାଏ । ତା'ପରେ ଦିଶାରୀମାନେ ଚାଉଳ ଚୂନାରେ ଝୋଟି ମନ୍ଦିରରେ ଦେଇଥାନ୍ତି । ସେଠାରେ ଛତ୍ର, ବନ୍ଧୁକ, ଖଣ୍ଡାକାତିକୁ ସିନ୍ଦୂର, ଚାଉଳ ଫୁଲ ଦେଇ ପୂଜା କରାଯାଏ । ଗୋଟିଏ ପତ୍ର ଦନାରେ ଚାଉଳରେ ଦୁଗ୍ଧ ମିଶାଇ ଦେବଦେବୀଙ୍କୁ ଅର୍ପଣ କରାଯାଏ । ସେଠାରେ ଜୟପୁର ଦଶହରାରେ କେଉଁ ଦିନ ଯାତ୍ରା କରାଯିବ ଦିନ ଠିକ୍ କରାଯାଏ । ଏହାକୁ ପ୍ରାକ୍ ଦଶହରା କୁହାଯାଏ । ଲାଠିଗୁଡିକ ପ୍ରସ୍ତୁତ ହୋଇଥାଏ । ଲାଠିଗୁଡିକ ନିଜ ନିଜ ଗ୍ରାମର ପ୍ରତିଷ୍ଠିତ ଦେବଦେବୀଙ୍କର ପ୍ରତୀକ ବିଭିନ୍ନ ରଙ୍ଗର ବାନା (ପତାକା) ପରିଶୋଭିତ ଏକ ପବିତ୍ର ବାଉଁଶ ଦଣ୍ଡ । ଏହି ପବିତ୍ର ଲାଠି ସହିତ ବିମାନ, ଛତ୍ର ଚାମର, ଖଣ୍ଡାକାତି ଇତ୍ୟାଦି ଧରି ଗାଁର ନାଇକ, ବାରିକ, ଶିରା, ପୂଜାରୀ ଏବଂ ଗାଁର ମୁଖିଆମାନେ ତଥା ଲାଠିଧାରୀ ବାହାକମାନେ ନିଷ୍ଠାପର ଭାବରେ ଖାଲି ପାଦରେ

ଚାଲି ଚାଲି ପୋଡାଗଡରୁ ତିନିଦିନ ପରେ ଜୟପୁରରେ ପହଞ୍ଚିଥାନ୍ତି । ଜୟପୁର ସହରରେ ବିଭିନ୍ନ ଅଞ୍ଚଳରୁ ଲାଠି ଆସିବା ପରେ ବିଜୟା ଦଶମୀରେ ତୂରୀ, ମହୁରୀ, ଢୋଲ ବଜାଇ ସ୍ୱାଗତ କରାଯାଏ । ପାରମ୍ପାରିକ ରୀତିରେ ଲାଠିଗୁଡିକୁ ପୂଜା କରାଯାଏ । ରାତ୍ରିରେ ଅପରାଜିତା ପୂଜା କରାଯାଏ । ବିଜୟା ଦଶମୀ ବା ଦଶହରା ପୂଜା ପରେ ସମସ୍ତ ଲାଠି ସହିତ ଲାଠିଧାରୀ ଏବଂ ଅନ୍ୟାନ୍ୟ ବ୍ୟକ୍ତିମାନେ ନିଜନିଜ ଗ୍ରାମକୁ ଫେରିଥାନ୍ତି । ପୋଡାଗଡକୁ ଫେରିବା ପାଇଁ ଲାଠୀଧାରୀମାନଙ୍କୁ ଦୁଇସପ୍ତାହ ଲାଗିଥାଏ । ପ୍ରତ୍ୟେକ ଲାଠିଧାରୀମାନଙ୍କୁ ବିଭିନ୍ନ ଗ୍ରାମରେ ଫେରିବା ସମୟରେ ଫୁଲ, ଫଳ, ନଡିଆ, ଚାଉଳ ଧୂପ ଦୀପ ଦେଇ ଦେବଦେବୀଙ୍କୁ ପୂଜା କରାଯାଇଥାଏ । ରାସ୍ତାରେ ରାତିରେ ଲାଠିଧାରୀମାନେ ମନ୍ଦିରମାନଙ୍କରେ ବିଶ୍ରାମ ନେଇ ଦିନରେ ଲାଠିଧରି ଯାତ୍ରା ଆରମ୍ଭ କରିଥାନ୍ତି । ଜୟନ୍ତଗିରିର ରାମମନ୍ଦିର ନବରଙ୍ଗପୁର ଭଣ୍ଡାର ଘରଣୀ ମନ୍ଦିର, ମୋକିଆର ଚାଉଁରୀଆ ଦେବୀ ମନ୍ଦିର, ମହେନ୍ଦ୍ରୀ ଦନ୍ତେଶ୍ୱରୀ ମନ୍ଦିର, ଡାବୁଗାଁର ଭୈରବପୀଠ, ପରିଆପୀଠରେ ଲାଠିଗୁଡିକୁ ସ୍ୱାଗତ କରାଯାଇଥାଏ । ସେଠାରେ ଲାଠିଧାରୀମାନେ ବିଶ୍ରାମ ନେଇଥାନ୍ତି । ଭଦ୍ରଶା ପୀଠରେ ପହଞ୍ଚିଲା ପରେ ସେଠାରେ ରହିଥିବା ପ୍ରାଚୀନ ଲେଖନୀପତ୍ରକୁ ପୂଜାର୍ଚ୍ଚନା କରାଯାଇଥାଏ । ଦିରାଗୁଡାକୁ ପୋଡାଗଡର ମୁଖଶାଳା କୁହାଯାଏ । ଯେଉଁଠି ଦନ୍ତେଶ୍ୱରୀ ମାଉଲିପୀଠ ରହିଛି ଏଠାରେ ଦୁଇଦିନ ପୂଜାର୍ଚ୍ଚନା କରାଯାଏ । ତା'ପରେ ଗୁଣ୍ଡୁରୁ ଭୈରବପୀଠକୁ ଏବଂ କଳା ଭୈରବପୀଠକୁ ସମସ୍ତ ଲାଠିଧାରୀମାନେ ଯାତ୍ରା କରିଥାନ୍ତି । ଜୟପୁରରୁ ବିଜୟା ଦଶମୀ ସାରି ଫେରିଥିବା ସମସ୍ତ ଦେବଦେବୀଙ୍କ ଲାଠି ତେଲେଙ୍ଗିନୀ ଚଉଁରିଆବାବା, ସମଲାଇ, ଦନ୍ତେଶ୍ୱରୀ, ତୋପେଶ୍ୱରୀ, ପେଣ୍ଟ୍ରାଣୀ, ଖମ୍ବେଶ୍ୱରୀ, ଆଖପାଖ ଗାଁର ସମସ୍ତଙ୍କ ଦେବଦେବୀ ନିଜ ନିଜର ବିମାନ, ପାଲିଙ୍କି, ସମସ୍ତ ଲାଠିସହ ମଣ୍ଡେଇଭଙ୍ଗା ବା ଦଶହରା ଭଙ୍ଗାକୁ ଯାଆନ୍ତି । ଧୂପ, ଝୁଣା ସହ ବାଜା ବଜାଇ ସମସ୍ତ ଲାଠିକୁ ସ୍ୱାଗତ କରାଯାଏ ଏବଂ ପୂଜା କରାଯାଏ । ଏଠାରେ ହାଟ ବା ମଣ୍ଡି ବସିଥାଏ । ବିଭିନ୍ନ ସାମଗ୍ରୀ ବିକ୍ରି ହୁଏ । ସେଦିନ ଗୁରୁବାର ଦିନ ହୋଇଥାଏ କାରଣ ବାହୁଡା ଦଶହରା ଗୁରୁବାର ଦିନ ପାଳନ କରାଯାଏ । ରାଜାଙ୍କ ପାଟଖଣ୍ଡାକୁ ସେଦିନ ପୂଜା କରାଯାଏ । ନାଗରାବାଦ୍ୟ, ମହୁରୀ, ଟାମକ୍, ଝୁଡୁବୁଡୁ ବାଦ୍ୟରେ ଦଶହରା ପଡିଆ ମୁଖରିତ ହୋଇଥାଏ । ଦଶହରାର ମୁଖ୍ୟ ଆକର୍ଷଣ ହେଉଛି ଘୋଡା ପଟୁଆର, ଲାଖବିନ୍ଧା । ବାହୁଡା ଦଶହରା ଦିନ ସିଂହସାର ଗ୍ରାମର 'ଘୋଡାଚରିଆ'ମାନେ ଘୋଡାକୁ ସୁସଜ୍ଜିତ କରି ପାଖଗାଁକୁ ଯାଇ ଘୋଡା ସହ ଇନାମ ମାଗିଥାନ୍ତି । ଏହାକୁ ପଲେ କୁହାଯାଏ । ଦଶହରା ପଡିଆରେ ଏକ ଉଚ୍ଚ ବାଉଁଶ ଖୁଣ୍ଟି ପୋତାଯାଇଥାଏ । ଖୁଣ୍ଟିରେ ଫୁଲମାଳ ଲଗାଯାଇଥାଏ । ଚାରିପଟେ ମୁରୁଜ ଝୋଟି, ଦୁବଚାଉଳ, ଫୁଲ ରଖାଯାଏ । ସୁସଜ୍ଜିତ ଘୋଡା ସହ ସମସ୍ତ ପଟୁଆର ସହ ଲାଠି, ଖଣ୍ଡା, ଛତ୍ର, ବନ୍ଧୁକ ନେଇ ସମସ୍ତେ ଆସି ପହଞ୍ଚିଥାନ୍ତି । ଖୁଣ୍ଟି ପାଖରେ ସମସ୍ତେ ପହଞ୍ଚିଲା ପରେ ନଡିଆ, କଦଳୀ, ପୂଜାରୀ ପୂଜା କରିଥାନ୍ତି । ଖୁଣ୍ଟି ଉପରେ ଗୋଟିଏ କମଳା ରଖାଯାଏ । ଲାଖବିନ୍ଧାଳୀମାନେ ଖୁଣ୍ଟି ଶୀର୍ଷରେ ଥିବା କମଳାକୁ ଲକ୍ଷ୍ୟ କରି ଲାଖ ବିନ୍ଧିଥାନ୍ତି । ଯିଏ ଲାଖ ଠିକ୍ ଭାବରେ ବିନ୍ଧିଥାଏ, ତାକୁ ଗାଁ ସାରା କାନ୍ଧରେ ବୁଲାଇ ସମ୍ମାନିତ କରାଯାଏ । ଦଶହରା ହେଉଛି ଆଦିବାସୀ ସଂସ୍କୃତି ଓ ସାମାଜିକ ସ୍ଥିତିର ପ୍ରତୀକ । ଏହି ମଣ୍ଡିରେ ସେମାନେ ପରସ୍ପର ମଧ୍ୟରେ ବନ୍ଧୁତା, ଭାବର ଆଦାନ ପ୍ରଦାନ କରିଥାନ୍ତି । ଏଠାରେ ଦେଶିଆ ନାଟ, ସର୍କସ, କଣ୍ଢେଇ ନାଚ ହୁଏ । ଆଦିବାସୀ ସଂସ୍କୃତି ଓ ପରମ୍ପରାରେ ରହିଛି ମୂଲ୍ୟବୋଧ, ସ୍ୱାଧୀନତା ମନୋଭାବ, ବ୍ୟକ୍ତିଗତ ଓ ଗୋଷ୍ଠୀ ଜୀବନରେ ବସୁଧୈବ କୁଟୁମ୍ବକମ୍ ଚିନ୍ତାଧାରା । ପୋଡାଗଡର ପାହାଡ ଝରଣା, ପଦର, ଘଞ୍ଚ ସବୁଜ ବନାନୀ ଆଜିବି ଇତିହାସର କଥା କୁହେ । ଗୀତ, ନୃତ୍ୟରେ ପୋଡାଗଡର ଦଶହରା ପଡିଆର ପରିବେଶ ବେଶ୍ ଉତ୍ସବ ମୁଖର ହୋଇଉଠିଥାଏ ।

ପାଇଲ ସାହି,
ଜୟପୁର, ଜିଲ୍ଲା–କୋରାପୁଟ

❖ ❖ ❖

# ଶ୍ରୀଦୁର୍ଗାଙ୍କର ଦଶବିଧ ରୂପ

**ପଣ୍ଡିତ ରାମକୃଷ୍ଣ ମିଶ୍ର**

ଦଶମହାବିଦ୍ୟା ରୂପେ ଦେବୀ ଦୁର୍ଗାଙ୍କୁ ଚୈତ୍ର ମାସରେ ଶୁକ୍ଳ ପ୍ରତିପଦଠାରୁ ନବମୀ ପର୍ଯ୍ୟନ୍ତ ପୂଜା କରାଯାଏ । ଶ୍ରୀଦୁର୍ଗା ଦଶମହାବିଦ୍ୟା ଯଥା– କାଳୀ, ତାରା, ଷୋଡଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳା, ମାତଙ୍ଗୀ ଓ କମଳାଙ୍କର ମୂଳପିଣ୍ଡ ଏବଂ ଦେବୀ ମଣ୍ଡଳରେ ଦୁର୍ଗା ସମସ୍ତ ଦେବତାମାନଙ୍କର ତେଜରୁ ଜନ୍ମ ଅଯୋନି ସମ୍ଭୂତା ଓ ପରମ ପୂଜ୍ୟା । ଏଣୁ ଶ୍ରୀଦୁର୍ଗାଙ୍କର ପୂଜା ପରେ ଦଶ ମହାବିଦ୍ୟାଙ୍କର ପୂଜା ହୋଇଥାଏ ।



କାଳୀ ତାରା ମହାବିଦ୍ୟା
ଷୋଡଶୀ ଭୁବନେଶ୍ୱରୀ ।
ଭୈରବୀ ଛିନ୍ନମସ୍ତା ଚ ବିଦ୍ୟା
ଧୂମାବତୀ ଯଥା ।
ବଗଳା ସିଦ୍ଧବିଦ୍ୟା ଚ ମାତଙ୍ଗୀ
କମଳାତ୍ମିକା ।
ଏତାଦୃଶ ମହାବିଦ୍ୟାଃ ସିଦ୍ଧବିଦ୍ୟାଃ
ପ୍ରକୀର୍ତ୍ତିତାଃ ।

ଏହି ଦଶମହାବିଦ୍ୟା ମଧ୍ୟରେ କାଳୀ ହେଉଛନ୍ତି ପ୍ରଥମ ମହାବିଦ୍ୟା । ସେ ଏକ ଶବ ଉପରେ ବିକଟ ଓ ଭୟଙ୍କର ରୂପରେ ଦୃଶ୍ୟମାନ ହୁଅନ୍ତି । ସେ ବରପ୍ରଦାନକାରୀ, ହାସ୍ୟମୟୀ, ତିନିଲୋଚନାକପାଳ ବିଶିଷ୍ଟ, ମୁକ୍ତକେଶୀ, ବାରମ୍ବାର ରକ୍ତପାନ କରୁଥିବା ଜିହ୍ୱା ଲହଲହ ବିଶିଷ୍ଟ ଏବଂ ଚାରିବାହୁ ଯୁକ୍ତ ଦେବୀ ଅଭୟ ପ୍ରଦାନକାରୀ ଅଟନ୍ତି । ସେ ମେଘବର୍ଣ୍ଣା, ମସ୍ତକରେ ଚନ୍ଦ୍ର ଶୋଭିତା, ଲୋହିତବସ୍ତ୍ର ପରିହିତା ଏବଂ ରକ୍ତ ପଦ୍ମାସନା ।

ରୁଦ୍ରଯାମଳ ତନ୍ତ୍ରର ଦିସପ୍ତତି (୭୨) ପଟଳରେ କାଳୀ ଆଦ୍ୟାଶକ୍ତି ରୂପେ ବର୍ଣ୍ଣିତ ହୋଇଛନ୍ତି । ପରମାତ୍ମା ଭଗବାନଙ୍କ ହୃଦୟରେ ଜାଗ୍ରତ ଇଚ୍ଛାଶକ୍ତି ସୃଷ୍ଟିର ଆରମ୍ଭରେ ଆବିର୍ଭୂତା ହୋଇଥିବାରୁ ଏହାଙ୍କୁ ଆଦ୍ୟାଶକ୍ତି ରୂପେ ସ୍ୱୀକାର କରାଯାଏ । ଏହି ଶକ୍ତି ସାହାଯ୍ୟରେ ପରମାତ୍ମା ଶିବ ସୃଷ୍ଟି କଳନା କରିଥିବାରୁ ଶିବଙ୍କୁ କାଳ ବା ମହାକାଳ କୁହାଯାଏ । ସେଇ ଇଚ୍ଛାଶକ୍ତି ବା ଆଦ୍ୟାଶକ୍ତି କାଳ ବା ଶିବଙ୍କର କଳନାକୁ ଚରିତାର୍ଥ କରିବା ଦିଗରେ ନିରନ୍ତର ସୃଷ୍ଟି କାର୍ଯ୍ୟରେ ବ୍ୟାପୃତ ରହିବାରୁ ସେ କାଳୀ ନାମରେ ଅଭିହିତ ହେଲେ । ଋକ୍ ବେଦରେ ଉଗ୍ରମୂର୍ତ୍ତିକୁ ଶାନ୍ତ କ୍ଷାନ୍ତ କରିବା ସକାଶେ ନୃସିଂହଙ୍କ କୋଳରେ ଲକ୍ଷ୍ମୀଙ୍କୁ, କାଳୀଙ୍କ ପାଦତଳେ ସମ୍ଭୋଗକାମୀ ଶିବଙ୍କୁ ସ୍ଥାପନ କରାଯାଇଛି ।

କାଳଃ ଶକ୍ତ୍ୟା ସର୍ବମିଦଂ ଜଗତ୍
ପରିଚାଳୟତି ସୈବକାଳୀ ପ୍ରକୀର୍ତ୍ତିତା ।
ଯଦ୍‌ବାକାଳୟତି, କଳୟତି, ଉତ୍ପାଦୟତି,
ପାଳୟତି, ପ୍ରଳୟେ ପୁନରାତ୍ମନ୍ୟେବ
ବିଳାସୟତି ଇତି କାଳୀ । (ଅଥର୍ବ ବେଦ ମତ)

ମେଘାଙ୍ଗୀ ଶିଶିଶେଖରାଂ
ତ୍ରିନୟନାଂ ରକ୍ତାମ୍ବରଂ ବିଭ୍ରତିମ୍ ।
ପାଣିଭ୍ୟାମଭୟଂ ବରଂ ଚ
ବିଳସଦ୍ ରକ୍ତାରବିନ୍ଦ ସ୍ଥିତାମ୍ ।(ମହା ନିର୍ବାଣ ତନ୍ତ୍ର)

ବୈଷ୍ଣବ ମତରେ ବିଷ୍ଣୁଙ୍କ ଦଶାବତାର ସଦୃଶ ତାନ୍ତ୍ରିକମାନେ ଭଗବତୀ ଜଗଦମ୍ବା ଦୁର୍ଗାଙ୍କ ଏକ ଅବତାର କାଳୀଙ୍କୁ ଦଶମହାବିଦ୍ୟା ରୂପରେ ଦେଖନ୍ତି ।

ତ୍ରିଗୁଣାତ୍ମିକା ଶକ୍ତି ପୂଜାରେ ତାମସୀ ମହାକାଳୀ ଗାଢ କୃଷ୍ଣବର୍ଣ୍ଣା, ତେଜୋମୟୀ ଓ ଡାଳିମ୍ବଦନ୍ତୀ । ତାଙ୍କର ମୁଖମଣ୍ଡଳ ଗୋଲାକାର ଏବଂ ଜିହ୍ୱା ଲହଲହ ହେଉଥାଏ । ସେ ଖଡ଼୍‌ଗ ଖର୍ପର ଧାରିଣୀ ଓ ନରମୁଣ୍ଡମାଳିନୀ । ସେ ମଧୁ ଓ କୈଟଭ ନାମକ ଦୁର୍ଦ୍ଧର୍ଷ ଅସୁର ଦ୍ୱୟଙ୍କ ଓ ରକ୍ତବୀର୍ଯ୍ୟଙ୍କ ରକ୍ତ ଶୋଷି ବିନାଶ କରିଥିଲେ । ରଜଗୁଣୀ, ମା'ଲକ୍ଷ୍ମୀ ଅଣିମାଦି ଅଷ୍ଟସିଦ୍ଧିଦାତ୍ରୀ । ତାଙ୍କର ନୟନଯୁଗଳ ଦୟାର୍ଦ୍ର ଭାବଯୁକ୍ତା ଏବଂ ତାଙ୍କ ଶରୀରବର୍ଣ୍ଣ ଶୁଦ୍ଧସୁବର୍ଣ୍ଣ ପରି ଉଜ୍ଜ୍ୱଳ ।

ପଦ୍ମାସନରେ ଅଧିଷ୍ଠିତା ଜଗଦ୍ଧାତ୍ରୀ, ହାସ୍ୟବଦନା, ସିଦ୍ଧିଦାତ୍ରୀ ଓ ଦୁଃଖ ମୋଚନକାରିଣୀ ଅଟନ୍ତି । ସତ୍ୟଗୁଣୀ, ମହାସରସ୍ୱତୀ, ତପ୍ତକାଞ୍ଚନ ବର୍ଣ୍ଣା, ତେଜୋମୟୀ ଏବଂ ବଧୂଲି ଓ କାଞ୍ଚନ ପୁଷ୍ପ ସଦୃଶ ଶୁଭବସ୍ତ୍ର ପରିହିତା । ତାଙ୍କ ଶ୍ରୀହସ୍ତରେ ବୀଣା ଓ ପୁସ୍ତକ ଶୋଭାପାଏ । ରବି, ଚନ୍ଦ୍ର ଓ ଅଗ୍ନି ତାଙ୍କର ତ୍ରିନେତ୍ର । ସେ ଅତୀବ ସୁନ୍ଦରୀ, ହାସ୍ୟମୁଖୀ, ଅଜ୍ଞାନ ବିଧ୍ୱଂସିନୀ, ଜ୍ଞାନ ପ୍ରଦାୟିନୀ ଓ ଅଭୟ ବରଦାତ୍ରୀ । ସେ ବିଶ୍ୱେଶ୍ୱରୀ, ଭୁବନେଶ୍ୱରୀ, ଦେବୀ ବଗଳାମୁଖୀ, ଶତ୍ରୁ ବିନାଶିନୀ ଓ ଦୁର୍ଦ୍ଧର୍ଷ ଆସୁରିକ ଶକ୍ତିନାଶିନୀ ।

ଆଦିଶକ୍ତି ଦୁର୍ଗାଙ୍କର ନବଦୁର୍ଗା ଶକ୍ତି ଅଟନ୍ତି । ଏହି ନବଦୁର୍ଗାଙ୍କର ଉପାସନା ଅନାଦି କାଳରୁ ପ୍ରଚଳିତ ଓ ପ୍ରସିଦ୍ଧି ଲାଭ କରିଛି ଏବଂ ଶାସ୍ତ୍ରରେ ପ୍ରମାଣ କରାଯାଇଛି । ପୁରାଣରେ ମଧ ନବଦୁର୍ଗାଙ୍କର ଉପାସନା ଉଲ୍ଲେଖ ଅଛି ।

ପ୍ରଥମଂ ଶୈଳୀପୁତ୍ରୀତି ଦ୍ୱିତୀୟଂ ବ୍ରହ୍ମଚାରିଣୀ ।
ତୃତୀୟଂ ଚନ୍ଦ୍ରଘଣ୍ଟେତି କୁଷ୍ମାଣ୍ଡେତି ଚତୁର୍ଥକଂ ।
ପଞ୍ଚମଂ ସ୍କନ୍ଦମାତେତି ଷଷ୍ଠଂ କାତ୍ୟାୟିନୀ ତଥା ।
ସପ୍ତମଂ କାଳଂରାତ୍ରିତି ମହାଗୌରୀତି ଚାଷ୍ଟମଂ ।
ନବମଂ ସିଦ୍ଧିଦାତ୍ରୀ ଚ ନବଦୁର୍ଗାଃ ପ୍ରକୀର୍ତ୍ତିତାଃ ।
ଉକ୍ତାନ୍ୟେତାନି ନାମାନି ବ୍ରାହ୍ମଣୈବ ମହାତ୍ମନା ।

(ଶ୍ରୀଶ୍ରୀ ସପ୍ତଶତୀ ଚଣ୍ଡୀ)

ନବରାତ୍ର ଚାରି ପ୍ରକାର ରହିଛି । ଚୈତ୍ର ଶୁକ୍ଳ ପ୍ରତିପଦ ପ୍ରାରମ୍ଭରୁ ପାଳନ ହେଉଥିବା ନବରାତ୍ରକୁ 'ବସନ୍ତ ନବରାତ୍ର କୁଶୟନ' କୁହାଯାଏ ଏବଂ ଆଶ୍ୱିନ ମାସର ଶୁକ୍ଳ ପ୍ରତିପଦାଠାରୁ ଆରମ୍ଭ ହେଉଥିବା ନବରାତ୍ରକୁ 'ଶାରଦୀୟ ବୋଧନ ନବରାତ୍ର' କୁହାଯାଏ । ବାସନ୍ତୀକ ପୂଜାରେ ମା' ଜାଗ୍ରତ ଥିବାବେଳେ ଶାରଦୀୟ ପୂଜାରେ ପୁରାଣାନୁସାରେ ପ୍ରଭୁ ରାମଚନ୍ଦ୍ର ସୁପ୍ତ ମା'ଙ୍କୁ ନିଜର ଅଭୀଷ୍ଟ ସିଦ୍ଧି ପାଇଁ ରାବଣ ବଧ ନିମିତ୍ତ ଭଗବତୀଙ୍କର ଶରଣ ନେଇ ତାଙ୍କୁ ଜାଗ୍ରତ କରାଇ ଅସମୟରେ ପୂଜା କରିଥିବାରୁ ଏହା 'ଅକାଳବୋଧନ' ନାମରେ ଖ୍ୟାତ ।

ଏହା ବ୍ୟତୀତ ଦୁଇଟି ଗୁପ୍ତ ନବରାତ୍ର ମଧ ରହିଛି । ପ୍ରଥମଟି ଆଷାଢ଼ ଶୁକ୍ଳ ପ୍ରତିପଦାଠାରୁ ଓ ଦ୍ୱିତୀୟଟି ମାର୍ଗଶିର ଶୁକ୍ଳ ପ୍ରତିପଦଠାରୁ ପ୍ରାରମ୍ଭ ହୋଇଥାଏ । ଏହି ଚାରୋଟି ନବରାତ୍ରରେ ଭଗବତୀ ଦୁର୍ଗାଙ୍କର ଆରାଧନା କରାଯାଏ । ଦେବୀ ଉପରୋକ୍ତ ନବଶକ୍ତି ଏହି ସମୟରେ ଏକ ମହାଶକ୍ତିଙ୍କର ରୂପ ଧାରଣ କରିଥାଏ । ଏଣୁ ସାଧକ ବା ଭକ୍ତ ସାଧନାରେ ସିଦ୍ଧି ପ୍ରାପ୍ତ ହୋଇଥାଏ ।

ନବରାତ୍ରରେ ନବଦୁର୍ଗା ପୂଜାରେ ସତ୍ତ୍ୱ, ରଜ, ତମର ପ୍ରତୀକ ତିନି ଦେବୀଙ୍କୁ ଆରାଧନା କରାଯାଏ । ପ୍ରଥମ ତିନି ଦିନ ଅସୀମ ଶକ୍ତିର ଅଧିକାରିଣୀ ହୋଇ ମା' ଦୁର୍ଗା ମନୁଷ୍ୟର କଳୁଷ ବିନାଶ କରନ୍ତି । ଦ୍ୱିତୀୟ ତିନି ଦିନ ଆଧାତ୍ମିକ ସଂପଦ ପ୍ରଦାୟିନୀ ମା' ଲକ୍ଷ୍ମୀ ରୂପେ ଆରାଧନା ଏବଂ ଶେଷ ତିନିଦିନ ପ୍ରଜ୍ଞା ଓ ଜ୍ଞାନର ଅଧିକାରିଣୀ ମା' ସରସ୍ୱତୀ ରୂପେ ପୂଜା ପାଇଥାନ୍ତି । ଓଡ଼ିଶାରେ ଶକ୍ତି ପୂଜା ୭ମ ଖ୍ରୀଷ୍ଟାବ୍ଦରୁ ହୋଇଥିବାର ଜଣାଯାଏ । ବ୍ରହ୍ମାଙ୍କ କଥନ ଅନୁସାରେ ନବଦୁର୍ଗାଙ୍କ ନଅଗୋଟି ରୂପ ହେଉଛନ୍ତି– ଶୈଳୀପୁତ୍ରୀ, ବ୍ରହ୍ମଚାରିଣୀ, ଚନ୍ଦ୍ରଘଣ୍ଟା, କୁଷ୍ମାଣ୍ଡ, ସ୍କନ୍ଦମାତା, କାତ୍ୟାୟିନୀ, କାଳରାତ୍ରି, ମହାଗୌରୀ ଓ ସିଦ୍ଧିଦାତ୍ରୀ । ଏହି ନଅଟି ରୂପକୁ କ୍ରମାନ୍ୱୟରେ ନବରାତ୍ରି ପୂଜାରେ ପୂଜା କରାଯାଇଥାଏ ।

**୧) ଶୈଳୀପୁତ୍ରୀ:** ଦକ୍ଷଯଜ୍ଞରେ ସ୍ୱାମୀଙ୍କ ନିନ୍ଦାଗାନ ସହ୍ୟ ନକରି ଅଗ୍ନିରେ ଝାସ ଦେଇ ସତୀ ପରଜନ୍ମରେ ପର୍ବତରାଜ

ହିମାଳୟଙ୍କ କନ୍ୟା ରୂପରେ ଜନ୍ମଗ୍ରହଣ କରି ଶୈଳପୁତ୍ରୀ ହେଲେ । ମା' ପ୍ରଭାମୟୀ ତ୍ରିଶୂଳ ଓ ବରହସ୍ତା, ଜଟାଜୁଟଧାରିଣୀ ଅଟନ୍ତି । ମା' ବୃଷଭ ବାହନ ଆସୀନା ।

**୨) ବ୍ରହ୍ମଚାରିଣୀ:** ନାରଦଙ୍କ ପରାମର୍ଶକ୍ରମେ ଦେବୀ କଠୋର ତପ ଆଚରଣ କରିଥିବାରୁ ତାଙ୍କର ବ୍ରହ୍ମଚାରିଣୀ ନାମ ହେଲା । ବୃଷଭ ଉପରେ ପଦ୍ମାସନରେ ଆସୀନା ଓ ମୃଗସିଂହ ଛାଲ ଉତ୍ତରୀୟ ଧାରିଣୀ । ଦେବୀ କମଣ୍ଡଳ, ଅକ୍ଷମାଳା ଓ ବରଦ ହସ୍ତା ।

**୩) ଚନ୍ଦ୍ରଘଣ୍ଟା:** ଦେବୀଙ୍କ ମସ୍ତକରେ ଘଣ୍ଟା ସଦୃଶ ଅର୍ଦ୍ଧଚନ୍ଦ୍ର ସୁଶୋଭିତ ଥିବାରୁ ତାଙ୍କର ନାମ ଚନ୍ଦ୍ରଘଣ୍ଟା । ଏ ରୂପରେ ଦେବୀ ଦଶଭୁଜା । ଦେବୀଙ୍କର ବାହନ ବ୍ୟାଘ୍ର । ବ୍ୟାଘ୍ର ଛାଲ ପରିହିତା, ଗଜଚର୍ମ ଉତ୍ତରୀୟ । ଦେବୀ କ୍ଷୁରୀ, ମୁଣ୍ଡମାଳା, ଗଡ୍ଗ ଓ ପାଶ ଧାରିଣୀ ।

**୪) କୁଷ୍ମାଣ୍ଡ:** ଦେବୀ ପର୍ବତବାସିନୀ, ଶବଆସୀନା, ବିକଟ ଦନ୍ତଯୁକ୍ତା । ଦେବୀ ପାଣି କଖାରୁ ବଳି ପାଉଥିବାରୁ ଦେବୀଙ୍କ ନାମ କୁଷ୍ମାଣ୍ଡ । ଦେବୀ ଅଷ୍ଟଭୁଜା, ଶାର୍ଦ୍ଦୂଳ ବାହିନୀ ।

**୫) ସ୍କନ୍ଦମାତା:** ଭଗବାନ ସ୍କନ୍ଦ (କାର୍ତ୍ତିକେୟ)ଙ୍କ ଜନ୍ମଦାତ୍ରୀ ହେତୁ ତାଙ୍କୁ ସ୍କନ୍ଦମାତା କୁହାଯାଏ । ମା' ସିଂହବାହିନୀ, ଦିବ୍ୟ ବସ୍ତ୍ର ଓ ଅଳଙ୍କାର ପରିହିତା, ବାମ କୋଳରେ ପୁତ୍ର, ବିନ୍ଧ୍ୟପର୍ବତ ବାସିନୀ ।

**୬) କାତ୍ୟାୟିନୀ:** ଋଷି ପ୍ରବଳ କାତ୍ୟାୟନଙ୍କର ଭକ୍ତିରେ ଦେବୀ ତାଙ୍କର କନ୍ୟା ରୂପେ ଆବିର୍ଭୁତା ହୋଇଥିବାରୁ ଦେବୀଙ୍କର ନାମ କାତ୍ୟାୟିନୀ । ଏ ଦେବୀଙ୍କର ପୂଜାର୍ଚ୍ଚନାରେ ଧର୍ମ, ଅର୍ଥ, କାମ, ମୋକ୍ଷ ପ୍ରାପ୍ତ ହୁଏ । ମା' ସିଂହବାହିନୀ, ମଣିମୟ କୁଣ୍ଡଳ ଶୋଭିତା, ମହିଷ ମସ୍ତକରେ ଉପରେ ଆସୀନା ଏବଂ ମସ୍ତକରେ ଚନ୍ଦ୍ରମା ଧାରିଣୀ । ହାତରେ ଶଙ୍ଖ, ଚକ୍ର, କୃପାଣ, ଖେଟକ, ବାଣ, ଧନୁ, ଶୂଳ ଧାରଣ କରିଛନ୍ତି । କାତ୍ୟାୟିନୀଙ୍କ ଅନ୍ୟରୂପ ଏକାନଂଶା, ପରବର୍ତ୍ତୀ ସମୟରେ ଏକାନଂଶା ହେଉଛନ୍ତି ମା' ସୁଭଦ୍ରା । ଅଙ୍ଗିରାଙ୍କ କନ୍ୟା 'କୁହୁ'ଙ୍କର ଅନ୍ୟନାମ ଏକାନଂଶା । ସେ ଦ୍ୱିଭୁଜା ଓ ଚତୁର୍ଭୁଜା । ସଂସ୍କୃତ ହରିବଂଶରେ ଯଶୋଦାଙ୍କ ଗର୍ଭରେ ଜନ୍ମ ନେଇଥିବା ଯୋଗମାୟା ହେଉଛନ୍ତି କାତ୍ୟାୟନୀ । ସେ ଅଷ୍ଟାଦଶ ଭୁଜା ହୋଇ ଆକାଶରେ ଦୃଶ୍ୟ ହେଲେ ଓ ପରେ ବିନ୍ଧ୍ୟାଞ୍ଚଳ ବାସିନୀ ନାମରେ ବିନ୍ଧ୍ୟାଞ୍ଚଳରେ ରହିଲେ ।

**୭) କାଳରାତ୍ରି:** ଦେବୀଙ୍କର ସପ୍ତମ ରୂପ କାଳରାତ୍ରୀ, ଦେବୀଙ୍କର ରୂପ ଅତ୍ୟନ୍ତ ଭୟଙ୍କର ହେଲେ ମଧ୍ୟ ସେ ଭକ୍ତମାନଙ୍କୁ ଅଭୟ ପ୍ରଦାନ କରନ୍ତି । ଦେବୀ ବିକଟ ଦନ୍ତଯୁକ୍ତା, କଜ୍ଜ୍ୱଳ କଳାବର୍ଣ୍ଣା, ବିକଟ ଚକ୍ଷୁ ଓ କ୍ଷିଣା । ଖଡ୍‌ଗ, ପାନପାତ୍ର, ନରମୁଣ୍ଡ ଓ ଖେଟକ ଚାରି ହାତରେ ଧାରଣ କରିଛନ୍ତି । ଗଳାରେ ମସ୍ତକବିହୀନ ଶରୀରର ମାଳା ଓ ମସ୍ତକ ହାର ଧାରିଣୀ ।

**୮) ମହାଗୌରୀ:** କଠୋର ତପସ୍ୟା କରି ଦେବୀଙ୍କ ବର୍ଣ୍ଣ କଳା ହୋଇଯାଇଥିଲା । ଶିବ ସନ୍ତୁଷ୍ଟ ହୋଇ ଜଟର ଗଙ୍ଗାଜଳରେ ଦେବୀଙ୍କୁ ଧୌତ କରି ଦେଇଥିବାରୁ ସେ ଗୌରବର୍ଣ୍ଣା ହେଲେ । ତେଣୁ ତାଙ୍କ ନାମ ମହାଗୌରୀ ହେଲା । ଦେବୀ ବୃଷଭ ବାହିନୀ, ରତ୍ନ ନୂପୁର, ବରହସ୍ତା, ରତ୍ନବସ୍ତ୍ର, ହାର, ତ୍ରିନୟନା, ନୀଳକାନ୍ତି, ଶୂଳ ଆଦି ହଜାର ହଜାର ବସ୍ତ୍ର ଓ ମୁକୁଟ ଧାରିଣୀ ।

**୯) ସିଦ୍ଧିଦାତ୍ରୀ:** ନବରାତ୍ରର ନବମ ଦିବସରେ ମା' ଦୁର୍ଗାଙ୍କର ସିଦ୍ଧିଦାତ୍ରୀ ରୂପକୁ ପୂଜାର୍ଚ୍ଚନା କରାଯାଏ । ଦେବୀ ଭକ୍ତଙ୍କୁ ସମସ୍ତ ପ୍ରକାର ସିଦ୍ଧି ପ୍ରଦାନ କରିଥାନ୍ତି । ମା' ସିଦ୍ଧିଦାତ୍ରୀ, ଚତୁର୍ଭୁଜା, ସିଂହବାହିନୀ ଓ ପଦ୍ମାସନା ।

ଏ.ଏଲ୍–୫୩, ବୀର ସୁରେନ୍ଦ୍ରସାଏ ନଗର,
ଭୁବନେଶ୍ୱର

❖ ❖ ❖

# ଐତିହ୍ୟ ଓ ସଂସ୍କୃତିର ଗନ୍ତାଘର – ବୋଡ଼ାସମ୍ବର

କୁଞ୍ଜବିହାରୀ ସାହୁ

ବୋଡ଼ାସମ୍ବର ଏକ ଐତିହ୍ୟପୂର୍ଣ୍ଣ ଜମିଦାରୀ ଅଞ୍ଚଳ ଥିଲା । ଏହା ୮୪୧ ବର୍ଗମାଇଲ ତଥା ୪୭୬ଟି ଗ୍ରାମକୁ ନେଇ ପ୍ରସିଦ୍ଧି ଲାଭ କରିଥିଲା । ପାଞ୍ଚୋଟି ଥାନାକୁ ନେଇ ଗଠିତ ଏହି ଗଡ଼ଜାତମାନଙ୍କ ଭିତରେ ସର୍ବବୃହତ୍ ଥିଲା । ପ୍ରାଚୀନ କାଳରେ ବୀର ବାରଭାଇ ବେଣ୍ଟକାର ଅରଣ୍ୟ ଭିତରେ ପରିଭ୍ରମଣ କରୁକରୁ ଏହି ଜମିଦାରୀ ଅଞ୍ଚଳ ପ୍ରତିଷ୍ଠା କରିଥିଲେ । ବୋଡ଼ାସମ୍ବରର ଦକ୍ଷିଣରେ ୧୦୪୪.୦୮ ମିଟର ଉଚ୍ଚତା ବିଶିଷ୍ଟ ଗନ୍ଧମାର୍ଦ୍ଦନ ପର୍ବତମାଳା, ପୂର୍ବ ସୀମାରେ ବଲାଙ୍ଗୀର ଜିଲ୍ଲାର ଆଗଲପୁର, ପଶ୍ଚିମ ଦିଗରେ ନୂଆପଡ଼ା ଜିଲ୍ଲା, ଉତ୍ତର ଦିଗରେ ଛତିଶଗଡ଼ ରାଜ୍ୟର ଫୁଲଝର ଅଞ୍ଚଳର ଅବସ୍ଥିତି ଜଣାପଡେ ।

ଅଧୁନା ବରଗଡ଼ ଜିଲ୍ଲାର ପଦ୍ମପୁର ସହରରୁ ୧୮ କି.ମି ଦୂରରେ ବୋଡ଼ାସମ୍ବର ଗ୍ରାମ ଅବସ୍ଥିତ । ଯାହାହେଉନା କାହିଁକି ବୋଡ଼ାସମ୍ବର ଅଞ୍ଚଳ ପଦମ୍ପୁର ଉପଖଣ୍ଡର ମୁଖ୍ୟ ଅଂଶ ପାଲଟି ଯାଇଛି । ନିବିଡ଼ ଅରଣ୍ୟ ଦ୍ୱାରା ଆଚ୍ଛାଦିତ ଏହି ଗ୍ରାମ ବୋଡ଼ାସମ୍ବର ଗଡ଼ଜାତର କେନ୍ଦ୍ରସ୍ଥଳୀ ଥିଲା । ବୋଡ଼ାସମ୍ବର ଗ୍ରାମ ପ୍ରତିଷ୍ଠା ପୂର୍ବରୁ ପଡିକୋଡ଼ ଗାଁ ଥିଲା ମୁଖ୍ୟ କେନ୍ଦ୍ର । ପରବର୍ତ୍ତୀ କାଳରେ ଏହା ବୋଡ଼ାସମ୍ବର ଗ୍ରାମକୁ ସ୍ଥାନାନ୍ତରିତ ହୋଇଥିଲା ।

ବୋଡ଼ାସମ୍ବରରେ ବିଞ୍ଝାଲ,କନ୍ଧ,ଶବର ତଥା ଗଣ୍ଡ ଜାତିର ସର୍ଦ୍ଦାରମାନେ ଅନେକ ସଂଖ୍ୟାରେ କ୍ଷୁଦ୍ରକ୍ଷୁଦ୍ର ରାଜ୍ୟଗୁଡ଼ିଏ ପ୍ରତିଷ୍ଠା କରିଥିଲେ । ବିଂଝାଲମାନଙ୍କର କୂଳଗିରି ବିନ୍ଧ୍ୟ ପର୍ବତରୁ ବାହାରି ଥିଲା । ସେଥିରୁ ଗୋଟିଏ ଶାଖା ବିନ୍ଧ୍ୟ ପର୍ବତର ଉତ୍ତର–ପୂର୍ବ ଆଡ଼କୁ ଗତିକରି ରାୟପୁର ବାଟ ଦେଇ ଗନ୍ଧମାର୍ଦ୍ଦନର ପାଦଦେଶରେ ପହଞ୍ଚି ଥିଲେ । ଏମାନଙ୍କ ପୂର୍ବପୁରୁଷ ବାରଭାଇ ବେଣ୍ଟକାର । ପ୍ରତ୍ୟେକ ଭ୍ରାତା କେତେଗୁଡ଼ିଏ ଗ୍ରାମକୁ ନେଇ ପ୍ରଶାସନିକ ଖଣ୍ଡର ଶାସନ ଭାର ଗ୍ରହଣ କରିଥିଲେ । ବାରଭାଇଙ୍କ ମଧ୍ୟରେ ସୂର୍ଯ୍ୟ ବରିହା ଥିଲେ ଜ୍ୟେଷ୍ଠ ଭ୍ରାତା । 'ଶ୍ରୀ ନୃସିଂହ ମାହାତ୍ମ୍ୟ' ଅନୁଯାୟୀ ସୂର୍ଯ୍ୟ ବରିହା ହେଉଛନ୍ତି ବୋଡ଼ାସମ୍ବର ଗଡ଼ଜାତର ପ୍ରଥମ ରାଜା । ୧୮୯୯ ମସିହାରେ ଲାଲ ରାଜେନ୍ଦ୍ର ସିଂହ ବରିହା ରାଜ୍ୟର ଶାସନ ଭାର ବହନ କରିଥିଲେ । ଶାସନର ଗୁରୁତ୍ୱକୁ ଉପଲବ୍ଧି କରି ସେ ପଦ୍ମପୁରକୁ ରାଜଧାନୀ ରୂପେ ବାଛିଥିଲେ ।

ବୋଡ଼ାସମ୍ବର ଏକ ଶୃଙ୍ଖଳିତ,ଐତିହ୍ୟ ସମ୍ପନ୍ନ,ଶକ୍ତିଶାଳୀ ତଥା କ୍ଷମତାପୂର୍ଣ୍ଣ ଗଡ଼ଜାତ ଅଞ୍ଚଳ ରୂପେ ସୁଖ୍ୟାତି ବହନ କରିଥିଲା ।

ବୋଡ଼ାସମ୍ବର ନାମକରଣ ପଛରେ କିମ୍ବଦନ୍ତୀମୂଳକ ଆଖ୍ୟାନ ରହିଛି । ବାରଭାଇ ବେଣ୍ଟକାର ଶିକାର ଉଦ୍ଦେଶ୍ୟରେ ନିଘଞ୍ଚ ଅରଣ୍ୟ ଭିତରେ ବୁଲୁଥିଲା ବେଳେ ଏକ ଅଦ୍ଭୁତ ଦୃଶ୍ୟ ଦେଖି ଚମକି ପଡ଼ିଲେ । ଶ୍ୱେତ ବରାହ ଓ ଶ୍ୱେତ ଶଶା ଭିତରେ ମରଣାନ୍ତକ ଲଢ଼େଇ ଚାଲିଥିଲା । ଜ୍ୟେଷ୍ଠ ଭ୍ରାତା ପ୍ରବଳ ସିଂ ଶର ନିକ୍ଷେପ କଲେ । ତାହା ଲକ୍ଷ୍ୟଭ୍ରଷ୍ଟ ହୋଇ ବରାହ ଶଶକ ସହ ପୂର୍ବ ଦିଗକୁ ଗଲା । ଶୁଣାଯାଏ ସ୍ୱୟଂ ଜଗନ୍ନାଥ ବରାହ ରୂପ ଧାରଣ କରିଥିଲେ । ବରାହ ରୂପୀ ଜଗନ୍ନାଥ ପ୍ରାଣ ବିକଳରେ ପୁରୀ ଶ୍ରୀମନ୍ଦିରରେ ଲୁଚି ଗଲେ ଏବଂ ଯାଉଁଳା କବାଟଟିକୁ ବନ୍ଦ କରିଦେଲେ । ଫଳତଃ ଶ୍ରୀମନ୍ଦିରର ମୁଖ୍ୟ ଦରଜାରେ ଶରଟି ଲାଖି ରହିଲା ।

ସମସ୍ତ ମଲ୍ଲଯୋଦ୍ଧା ଆପ୍ରାଣ ଉଦ୍ୟମ କଲେ ସୁଦ୍ଧା ଶରଟିକୁ ବାହାର କରି ପାରିଲେନି । ବାରଭାଇ ବେଣ୍ଟକାର ପୁରୀରେ ପହଞ୍ଚି ନିଜର ଶରଟିକୁ ଅନାୟସରେ ଚିହ୍ନି ପାରିଲେ । ମହାରାଜାଙ୍କର ଅନୁମତିକ୍ରମେ ଶରଟିକୁ ବାହାର କରି ବଳଶାଳୀର ପରିଚୟ ଦେଇଥିଲେ । ସନ୍ତୁଷ୍ଟ ହୋଇ ମହାରାଜ କହିଲେ 'ତୁମେ ଗନ୍ଧମାର୍ଦ୍ଦନର ପାଦଦେଶରେ ଥିବା 'ମଣିଦାକାନନ' ରେ ନିଜ

ରାଜ୍ୟ ସ୍ଥାପନ କର । ଏକ ବାର୍‌ହା ପଛରେ ଧାବନ କରି କ୍ଷତ୍ରିୟ ଧର୍ମ ପାଳନ କରିଥିବାରୁ ତୁମକୁ 'ବରିହା' ଉପାଧି ପ୍ରଦାନ କରାଗଲା ।' ଗଜପତିଙ୍କ ଠାରୁ ମେଲାଣି ନେଇ ବାଟରେ ଲୁହୁରା କନ୍ୟା ସୁଲୋଚନାକୁ ପ୍ରବଳ ସିଂ ବିବାହ କଲେ । ମଣିଦାକାନନରେ ରାଜ୍ୟ ପ୍ରତିଷ୍ଠା କରି ବସବାସ କଲେ ।

ଜଙ୍ଗଲରେ ଭ୍ରମଣ କରୁଥିଲାବେଳେ ବାରଭାଇ ବେଣ୍ଟକାର ବିଚିତ୍ର ଦୃଶ୍ୟର ଅବଲୋକନରେ ଆତ୍ମହରା ହୋଇପଡ଼ିଲେ । ବୁଢ଼ା(ବୋଡ଼ା)ସାପଟିଏ ବିରାଟ ସମ୍ବରକୁ ଆକ୍ରମଣ କରୁଥିଲାବେଳେ ଦୁହିଁଙ୍କ ଉପରକୁ ଶର ନିକ୍ଷେପ କଲେ । ସାପଟି ସମ୍ପୂର୍ଣ୍ଣ ରୂପେ ସମ୍ବରକୁ ଗିଳି ପଳାୟନ କରୁଥିଲେ ମଧ ସମ୍ବରର ମୁନିଆଁ ଶିଙ୍ଘରେ ଆକ୍ରାନ୍ତ ହୋଇ ସେଠି ଟଳି ପଡିଲା । ଏ ସ୍ଥାନଟି ବୀର ମାଟି । ଶତ୍ରୁ ହେଲେ ବି ପରାସ୍ତ ହୋଇପାରେ ଅନାୟସରେ । ଏମନ୍ତ ବିଚାରି ବାରଭାଇ ବେଣ୍ଟକାର ଗଡ଼ ତିଆରିଲେ । 'ନୃସିଂହ ମାହାତ୍ମ୍ୟ' ରେ ଲିଖିତ ଅଛି –

ବିଂଝାଲ ରାଜାଙ୍କ ସେହି ମୁଖ୍ୟଗଡ଼ ହେଲା
ରାଜବୋଡାରେ ସେ ଗଡ଼ ବିଖ୍ୟାତ ହୋଇଲା ।
ଅରଣ୍ୟ କଟାଇ ତହିଁ ଗ୍ରାମ ବସାଇଲେ
ସେଦିନୁ ସମସ୍ତେ ବୁଢ଼ା ସମ୍ବର ବୋଇଲେ ।

ମଣିଦାକାନନର ନାମ ପରିବର୍ତ୍ତିତ ହୋଇ ବୁଢ଼ାସମ୍ବର/ ବୋଡ଼ାସମ୍ବର ବୋଲି ନାମିତ ହେଲା । ଏବେ ବି ପଦମ୍‌ପୁର ଉପଖଣ୍ଡକୁ ବୋଡ଼ାସମ୍ବର ବୋଲି କୁହାଯାଉଛି ।

ଐତିହାସିକଙ୍କ ମତାନୁଯାୟୀ ବୁଢ଼ାସମ୍ବର ବା ବୋଡ଼ାସମ୍ବର ଶବ୍ଦର ଆରମ୍ଭ ନିଶ୍ଚିତ ଭାବେ ବୁଦ୍ଧ ସମ୍ବତ୍ସରରୁ ହୋଇଛି । ବୁଦ୍ଧ ଶବ୍ଦକାଳ କ୍ରମେ ଅପଭ୍ରଂଶ ହୋଇ ବୁଢା ହୋଇଛି । ସମ୍ବତ୍ସର ଶବ୍ଦରୁ ସମ୍ବଅର ବା ସମ୍ବର ହୋଇ ବୁଢ଼ାସମ୍ବର ବା ବୋଡ଼ାସମ୍ବରର ନାମକରଣ ହୋଇଥିବାର ପ୍ରମାଣ ମିଳେ । ବୋଡ଼ାସମ୍ବରରେ ମାର୍ଜାର କେଶରୀ ବୈଷ୍ଣବ ଧର୍ମର ଦେବତା ପୂଜା ଦେଖିବାକୁ ମିଳେ । ଏ ଅଞ୍ଚଳ ବୌଦ୍ଧଧର୍ମ ସାଧନାର ପୀଠ ଥିଲା । ଗନ୍ଧଗିରି/ଗନ୍ଧମାର୍ଦନ ଗିରିର ପାଦଦେଶରେ ବୁଦ୍ଧସମ୍ବତ୍ସର ବୈଶାଖ ପୂର୍ଣ୍ଣିମାରେ ଅନୁଷ୍ଠିତ ହେଉଥିଲା । କାଳକ୍ରମେ ଜନବସତି ସ୍ଥାପନ ହେବା ସହ ଏହି ସ୍ଥାନର ନାଁ ବୋଡ଼ାସମ୍ବର ହୋଇଥିବାର ଜଣାପଡ଼େ ।

ବୋଡ଼ାସମ୍ବର ଏକ କ୍ଷମତାଶାଳୀ ଜମିଦାରୀ ଥିଲା, ଏହା ସ୍ୱୀକାର୍ଯ୍ୟ ହେଲେ ମଧ୍ୟ ଏହାର ଐତିହ୍ୟ, ସାଂସ୍କୃତିକ ପରଂପରା, ଲୋକସଂସ୍କୃତି ସର୍ବୋପରି ଶକ୍ତିପୂଜା ଓ ଦଶହରା ପର୍ବର ମାହାତ୍ମ୍ୟ ସ୍ପଷ୍ଟ ବାରି ହୋଇପଡ଼େ । ଐତିହ୍ୟପୂର୍ଣ୍ଣ ବୋଡ଼ାସମ୍ବର ପଦମ୍‌ପୁର, ଗାଇସିଲେଟ୍, ପାଇକମାଳ, ଝାରବନ୍ଧ ଓ ସୋହେଲା ବ୍ଲକ୍‌ର କେତେକ ଗ୍ରାମକୁ ନେଇ ଗଠିତ ହୋଇଥିଲା । ସେଥିପାଇଁ ବୋଧହୁଏ ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହେଉଥିବା ଲୋକଯାତ୍ରା ବୋଡ଼ାସମ୍ବରର ମହନୀୟତାକୁ ଦ୍ୱିଗୁଣିତ କରିପାରିଛି । ପାଇକମାଳ ଅଞ୍ଚଳର ତିନ୍‌ସାଲି ବା ବାହ୍ମନି ପଠାରିଯାତ୍ରା ଗାଇସିଲେଟ ବ୍ଲକ୍‌ର ଟେଙ୍ଗନାପାଲିର 'ପାଟଖଣ୍ଡା ଯାତ୍ରା', ସୋହେଲା ବ୍ଲକ୍‌ର ବାଟତେର୍‌ମା ଗାଁର 'ମାଁ ମାଉଲି ଯାତ୍ରା', ପଦମ୍‌ପୁର ବ୍ଲକର ଚଣ୍ଡୀପାଲି ଗ୍ରାମର 'ଚଣ୍ଡୀ ଯାତ୍ରା' ପଲ୍ଲୀ ଚିତ୍ରକୁ ରଂଗୀନ କରିପାରିଛି । ପଲ୍ଲୀଗୁଡ଼ିକରେ ପୂଜିତ ଦେବାଦେବୀ ଏଭଳି ଯାତ୍ରାର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ଲୋକ ସଂସ୍କୃତି ଜୀବନକୁ ମହନୀୟ କରିପାରେ, ହୃଦୟରେ ଆନନ୍ଦର ଫୁଆରା ସୃଷ୍ଟି କରେ । ଯେଉଁଥିପାଇଁ ଇଂରେଜୀ ଉକ୍ତି– Culture takes a total heritage of mankind'ର ଯଥାର୍ଥତା ମଣିଷ ଜୀବନରେ ଅଙ୍ଗେ ଅଙ୍ଗେ ପ୍ରତିପାଦିତ ହୋଇପାରିଛି ।

ଲୋକ ସଂସ୍କୃତି ବୋଡ଼ାସମ୍ବର ଆରଣ୍ୟକ ଅଧିବାସୀମାନଙ୍କ ମନ ହୃଦୟରେ ଆମୋଦ ପ୍ରମୋଦର ଖୋରାକ ଯୋଗାଉଛି । ବିଭିନ୍ନ ଗୀତ, ବାଦ୍ୟ ମାଧ୍ୟମରେ ନିଜ ଜୀବନକୁ ଉପଭୋଗ କରିପାରିଛନ୍ତି । କାନ୍ଦଣା ଗୀତଠୁଁ ଆରମ୍ଭ କରି ସଜନା ଗୀତ, ଚୁଟ୍‌କା ଗୀତ, କନିଆଁର ଗୀତ, ବଉଲୀ ଗୀତର ଚାହିଦା ଲୋକ ମୁଖରେ ରହିଯାଇଛି । ଡାଲଖାଇ, ରସରକେଲି, ମାଏଲାଜଡ଼ ପରି ଲୋକନୃତ୍ୟ ଆଦରଲାଭ କରିଥିଲାବେଳେ ଭାଲୁବୟଂଶି, ଧୁନ୍‌କେଲ୍, ବ୍ରହ୍ମବୀଣା, ସିଂଘା ଠାଡ୍‌ବଁଶି ଏବଂ ପଞ୍ଚବାଦ୍ୟ (ଢୋଲ୍, ନିଶାନ, ମୁହୁରୀ, ତାସା ଓ ଟିମ୍‌କିଡ଼ି) ଲୋକବାଦ୍ୟ ମଧ ହୃଦୟତନ୍ତ୍ରୀରେ ତରଙ୍ଗ ତୋଳିଥାଏ । ନୂଆଁଖାଇ, ପୁଷପୁନି, ଚଏତପୁନି, ଲକ୍ଷ୍ମୀପୂଜା, କରମସାନୀ, ହରାଲି ଉଆଁସ, ପୁଏ ଜୀଉଁନ୍ତିଆ, ଭାଏ ଜୀଉଁନ୍ତିଆ, ଅଏଁଲାତଲ୍, ପହିଲ ପୁଷ ପ୍ରଭୃତି ଓଷା, ପର୍ବପର୍ବାଣି ବୋଡ଼ାସମ୍ବରର ଅଧିବାସୀମାନଙ୍କର ମନକୁ ପାର୍ବଣର ଶୋଭା ମହକରେ ଦ୍ୱିଗୁଣିତ କରିଦିଏ ।

ଭାରତବର୍ଷର ପ୍ରାଚୀନ ସଭ୍ୟତାର ମୂଳପିଣ୍ଡ ମହେଞ୍ଜୋଦାରୋ ଓ ହରପ୍ପା ସହରରୁ ଶକ୍ତିପୂଜାର ଐତିହାସିକ ପ୍ରମାଣ ମିଳିସାରିଛି । ଶକ୍ତିପୂଜା ହେଉଛି ମାତୃ ଉପାସନା । ମା' ଓ ମାଟି ହିଁ ଏକ ଓ ଅଭିନ୍ନ ବୋଲି ଅଭିହିତ ଅଛି ।

ପଶ୍ଚିମ ଓଡ଼ିଶାରେ ଶକ୍ତି ପୂଜାର ନିଦର୍ଶନ ଦେଖିବାକୁ ମିଳେ । ଓଡ଼ିଶାର ପ୍ରାଚୀନତମ ଶକ୍ତିର ଦେବତା ରୂପେ

ସୋନ୍‌ପୁରରେ ବିରାଜିତ ମା' ସ୍ତମ୍ଭେଶ୍ୱରୀ ପୂଜାପାଇ ଆସୁଛନ୍ତି । ଗଞ୍ଜାମ ଓ କଳାହାଣ୍ଡି ଜିଲ୍ଲାରେ ମଧ୍ୟ ସ୍ତମ୍ଭେଶ୍ୱରୀ ଦେବୀ ଶକ୍ତି ପୂଜାର ନିଦର୍ଶନ ରୂପେ ପୂଜା ପାଇବାର ସୂଚନା ମିଳିଛି । ସେହିପରି ବୋଡ଼ାସମ୍ବର ଅଞ୍ଚଳର 'ଖଏରା' ଗ୍ରାମର ଗ୍ରାମଦେବୀ ସ୍ତମ୍ଭେଶ୍ୱରୀ ହେଉଛନ୍ତି ଶକ୍ତି ପୂଜାର ନିଦର୍ଶନ । ରହେନ୍ କାଠର ଗଣ୍ଡିରେ ମା' ବିରାଜିତା ।

ବୋଡ଼ାସମ୍ବର ଅଞ୍ଚଳର ବିଭିନ୍ନ ଗ୍ରାମପଞ୍ଚାୟତରେ ମାତୃଦେବୀ ବୃକ୍ଷ ଗଣ୍ଡିରେ ପୂଜା ପାଇଆସୁଛନ୍ତି । କେତେକ ଦେବୀମାନଙ୍କ ପ୍ରତିମୂର୍ତ୍ତି ପାଷାଣ ରୂପେ ଉପାସନା ପାଉଥିବା ବେଳେ କେତେକ ଦେବୀ ଲୁହା ଶିକୁଳି,ଲୌହଦଣ୍ଡ, ତ୍ରିଶୂଳ, ଖଣ୍ଡା, ଚିମୁଟା ପରି ଲୌହ ପଦାର୍ଥରେ ରହି ଭକ୍ତଙ୍କୁ ଦର୍ଶନ ଦେଇଥାନ୍ତି । ସରାଇପାଲି-ପାଟଣାଗଡ଼ ରାସ୍ତାରେ ମା ଘଣ୍ଟେଶ୍ୱରୀ, ଝାଙ୍କରପାଲି, ବାଦୀମାଳ, ସିଂହନପୁର ଗାଁର ଦେବୀ ମା ଲଙ୍କେଶ୍ୱରୀ, ବିଜାପାଲି ଗାଁର ବିଜାତଲିଏନ୍, ଛିନ୍ଦେକେଲା ଗାଁର ଚମ୍ପାତଲିଏନ, ଗନିଆଁପାଲି ଗାଁର ଆମ୍‌ତଲିଏନ୍ ଦେବୀ ମାତୃଶକ୍ତିର ପରିଚୟ ଦେବାସହ ଗ୍ରାମୀଣ ମଣିଷର ରକ୍ଷା କବଚ ରୂପେ ସ୍ଥାନ ପାଇଆସୁଛନ୍ତି । ଗଛଲତା, ନଦୀ,ଶସ୍ୟ, ଫୁଲ-ଫଳର ନାମାନୁସାରେ ଶକ୍ତିମୟୀ ବିପଦରେ ସାହା ହୋଇପାରିଛନ୍ତି । କେବଳ ଏତିକି ନୁହେଁ, ଏ ଅଞ୍ଚଳର ଅଧିବାସୀମାନେ ବିଭିନ୍ନ ଓଷା, ବ୍ରତ, ପୂଜାପାର୍ବଣ ମାଧ୍ୟମରେ ମା' ଶକ୍ତିଙ୍କର ଆରାଧନା କରି ସନ୍ତାନମାନଙ୍କର ଶୁଭ ମନାସି ଥାଆନ୍ତି ।

ଶକ୍ତି ହିଁ ମା' । ସେ ବ୍ରାହ୍ମଣୀ, ବୈଷ୍ଣବୀ, ରୌଦ୍ରୀ । ସେ ହିଁ ଶକ୍ତି ସ୍ୱରୂପିଣୀ ଦୁର୍ଗା । ଦୁର୍ଗତିରୁ ରକ୍ଷା କରିଥିବାରୁ ଦୁର୍ଗା ନାମ ବହନ କରିଛନ୍ତି । ବୋଡ଼ାସମ୍ବରରେ ଦୁର୍ଗାଦେବୀଙ୍କ ପୂଜା ଉପାସନା ସହ ଦଶହରା ପର୍ବ ଧୁମ୍‌ଧାମ୍‌ରେ ପାଳନ କରାଯାଏ । ପାର୍ବଣର ଋତୁ ଆଶ୍ୱିନ ମାସ ହିଁ ଜଗତ୍‌ଜନନୀ ମା' ଦେବୀଙ୍କର ଆରାଧନାର ସମୟ । ଆଶ୍ୱିନ ଶୁକ୍ଳ ପକ୍ଷ ଦଶମୀ ତିଥିରେ ମା'ଙ୍କ ପୂଜାକୁ ଶାରଦୀୟ ଦୁର୍ଗାପୂଜା ବୋଲି କୁହାଯାଏ । ଦେବୀଙ୍କୁ ଦୁର୍ଗା, ବନଦୁର୍ଗା, ଜୟଦୁର୍ଗା, ବିନ୍ଧ୍ୟାବାସିନୀ ଦୁର୍ଗା, ମହାଦୁର୍ଗା କୁହାଯାଉଥିଲା ବେଳେ ଦ୍ୱିଭୁଜା ଚତୁର୍ଭୁଜା, ଅଷ୍ଟଭୁଜା, ଦଶଭୁଜା, ଦ୍ୱାଦଶଭୁଜା ଏପରିକି ସହସ୍ରଭୁଜା ବୋଲି ପୁରାଣ ପୃଷ୍ଠାରୁ ଶୁଣିବାକୁ ମିଳେ ।

ଶତ୍ରୁ କବଳରୁ ରାଜ୍ୟକୁ ରକ୍ଷା କରିବାପାଇଁ ବରିହା ରାଜବଂଶ ବୋଡ଼ାସମ୍ବର ରାଜ୍ୟରେ ଦେବୀ ଦୁର୍ଗାଙ୍କୁ ଉପାସନା କରୁଥିଲେ । ବିନ୍ଧ୍ୟ ଗୋଷ୍ଠୀର ଏହି ବରିହା ସମ୍ପ୍ରଦାୟ ନିଜ ଜୀବନକୁ ସୁରକ୍ଷିତ ରଖିବା ପାଇଁ ବିନ୍ଧ୍ୟବାସିନୀ ଦୁର୍ଗାଙ୍କର ପୂଜା ଆରମ୍ଭ କରିଥିଲେ । ଶୁଣାଯାଏ ଯେ ବରିହା ବଂଶର ତୃତୀୟ ରାଜା ଦଶମନ୍ତ ବରିହା ମାର୍ଜାର କେଶରୀ ନୃସିଂହନାଥଙ୍କ ମନ୍ଦିରରେ ଦୁର୍ଗାଦେବୀଙ୍କୁ ସ୍ଥାପନା ପୂର୍ବକ ଉପାସନା କରୁଥିଲେ । ଷଷ୍ଠ ରାଜା ଜଗଦେବ ବରିହା ମଧ୍ୟ ଦୁର୍ଗାଦେବୀଙ୍କ ଭକ୍ତ ଥିଲେ ଏବଂ ମା'ଙ୍କ ପୂଜା ନିମିତ୍ତ ଦୁର୍ଗାପାଲି ନାମକ ଏକ ଗ୍ରାମକୁ ନିଷ୍କର କରି ଦାନ କରିଥିଲେ। କେବଳ ଏତିକି ନୁହେଁ ଦେବୀ ମା'ଙ୍କ ପ୍ରସିଦ୍ଧ ଭୋଗ ନାରଙ୍ଗୀ ଏବଂ ଏହାର ପ୍ରଚୁର ଉତ୍ପାଦନ ପାଇଁ ବରିହା ବଂଶର ଅଷ୍ଟମ ରାଜା ମୁକୁନ୍ଦ ଦେବ ବରିହା ଦୁର୍ଗାଖୋଲ୍‌ଠାରେ ନାରଙ୍ଗୀ ବଗିଚା ସୃଷ୍ଟି କରିଥିଲେ । ବିନ୍ଧ୍ୟଗିରି ପାଦଦେଶରେ ବସବାସ କରୁଥିବା ଶବର, ପୁଳିନ୍ଦ, ବର୍ବର, କିରାତ ପ୍ରଭୃତି ଆରଣ୍ୟକ ଜନଜାତିମାନେ ବିନ୍ଧ୍ୟବାସିନୀ ଦୁର୍ଗାଙ୍କୁ ଆରାଧ୍ୟ ଦେବୀ ରୂପେ ପୂଜା ଆରାଧନା କରି ସମସ୍ତ ମାନସିକ ଯୋଗ ପୂରଣ କରିବା ସହ ବିପଦରୁ ମଧ୍ୟ ଉଦ୍ଧାର ପାଉଥିଲେ ।

ଏଥିରୁ ସ୍ପଷ୍ଟ ଅନୁମତି ହୁଏ ଯେ ବୋଡ଼ା ସମ୍ବରର ବରିହା ରାଜବଂଶ ଦେବୀ ଦୁର୍ଗାଙ୍କର ଉପାସକ ଥିଲେ ।

ବୋଡ଼ାସମ୍ବରର ଦୁର୍ଗାଙ୍କର ଉପାସନାର ଦୁଇଟି ବିଭାଗ ମଧ୍ୟରେ ଲୌକିକ ଉପାସନାର ପ୍ରଭାବ ବାରି ହୋଇପଡ଼େ । ତନ୍ମଧ୍ୟରେ ଭାଏଜୀଉଁନ୍ତିଆ, ଡ଼ାଲଖାଇ, ଘଟପୂଜା ଅନ୍ୟତମ ।

ଭାଇଜିଉଁନ୍ତିଆ ଆଶ୍ୱିନ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ପାଳନ କରାଯାଉଥିଲା ବେଳେ ଭାଇର ମଙ୍ଗଳ କାମନା ପୂର୍ବକ ଆରାଧ୍ୟ ଦେବୀ ଦୁର୍ଗାଙ୍କର ପୂଜା କରାଯାଏ । ଭଉଣୀମାନେ ସନ୍ଧ୍ୟା କାଳରେ ଦେବୀ ଦୁର୍ଗାଙ୍କୁ ଫଳ ପୁଷ୍ପ ସହ ଆଠ ବର୍ଣ୍ଣର ଫୁଲ-ଫଳ ସମର୍ପଣ କରିଥାନ୍ତି । ୧୦୮ଟି ଦୁବ ଓ ୧୦୮ଟି ଅରୁଆ ଚାଉଳ ସହ କେଇଟା ଫୁଲ ଶାଳପତ୍ର ଠୁଙ୍ଗାରେ ବାନ୍ଧିସାରି ତା' ଉପରେ ସୂତା (ବରତ ବା ଜୀଉଁନ୍ତିଆ କୁହାଯାଏ) ଗୁଡ଼େଇ ଦେଇ ଦେବୀ ଦୁର୍ଗାଙ୍କୁ ଫଳ-ପୁଷ୍ପ ସହ ପୂଜା କରନ୍ତି । ପରଦିନ ସକାଳୁ ଉପବାସ ରହିଥିବା ଓ ଭାଇର ଶୁଭ ମନାସି ଥିବା ଭଉଣୀମାନେ ସ୍ନାନ ସାରି ନଈ ତୁଠରେ ସ୍ଥାପିତ ବାଲୁକା ବେଦୀରେ ପୂଜା କରିବା ସହ ବରତକୁ ଧରି ଘରକୁ ଫେରିଥାନ୍ତି । ଅରୁଆଚାଉଳ ଓ ଦୀପଜାଳି ଭାଇଙ୍କୁ ବନ୍ଦାପନା କରି ଦୁବକେରାରେ ସାତଥର ଝାଡ଼ିଦେଇ ଭାଇ ହାତରେ ବ୍ରତ (ଜୀଉଁନ୍ତିଆ)କୁ ବାନ୍ଧି ଦିଅନ୍ତି । ପାର୍ବଣର ମାହୋଲ ଭିତରେ ସମୟ କଟିଯାଏ। ଆଶ୍ୱିନ ଶୁକ୍ଳ ଅଷ୍ଟମୀ ତିଥିରେ ପାଳନ କରାଯାଉଥିବା ଡାଲଖାଇ ପୂଜାବି ଅନନ୍ୟ ରୂପେ ବିବେଚିତ ହୋଇଥାଏ । ଏଠାରେ ଅଧିବାସୀମାନଙ୍କର ଆରାଧ୍ୟ ଦେବୀ ଦୁର୍ଗାଙ୍କୁ ଡାଲଖାଇ ରୂପେ ବିବେଚନା କରି ଗୀତ ନାଚ ମାଧ୍ୟମରେ ଓଷା

ପାଳିତ ହୁଏ । ଗାଁର କୋଠିଶାଳରେ କାନ୍ଥରେ ଦୁର୍ଗାଙ୍କ କଳ୍ପନା ପ୍ରସ୍ତୁତ ଚିତ୍ର ଅଙ୍କିତ ହୋଇ ପୂଜା କରାଯାଏ । ବିଶ୍ୱାସ ରହିଛି ଯେ ଡାଲଖାଇ ଓଷା ପାଳନରେ ବିଭିନ୍ନ ରୋଗବ୍ୟାଧିର ଆଶଙ୍କା ଦୂରୀଭୂତ ହୁଏ ତଥା ସୁଖ, ଶାନ୍ତି, ପୁତ୍ର ପ୍ରାପ୍ତିର ସୌଭାଗ୍ୟ ମିଳିଥାଏ ।

ଦୁର୍ଗାଦେବୀଙ୍କୁ ଏକାତ୍ମଭାବେ ଉପାସନା କରିବାର ଆଉ ଏକ ଜ୍ୱଳନ୍ତ ନିଦର୍ଶନ ହେଲା ଘଟପୂଜା, ଯେଉଁଥିରେ ସମସ୍ତେ ନିଜନିଜର ବ୍ୟବହୃତ ସାମଗ୍ରୀକୁ ଦୁର୍ଗାଙ୍କ ସମ୍ମୁଖରେ ସ୍ଥାପନା ପୂର୍ବକ ପୂଜା କରୁଥିଲେ । ଏବେ ବି ଏହି ପୂଜା ଏ ଅଞ୍ଚଳବାସୀଙ୍କ ପରମ୍ପରା ହୋଇ ରହିଛି ।

ବୋଡ଼ାସମ୍ବରରେ ଦଶହରା ପର୍ବର ଏକ ଭିନ୍ନ ଆକର୍ଷଣ ରହିଛି । ରାଜାରାଜୁଡ଼ା ଶାସନ କାଳରେ ଏହା ବିଧିବଦ୍ଧ ଭାବରେ ପାଳିତ ହେଉଥିଲା । ଦଶହରା ପର୍ବ ଅବସରରେ କେତୋଟି ସୂଚିତ କାର୍ଯ୍ୟକ୍ରମ ଅନୁଷ୍ଠିତ ହେଉଥିଲା, ତନ୍ମଧ୍ୟରେ ଖଣ୍ଡାଧୁଆ, ଖଣ୍ଡାବସା, ସନ୍ଧିପୂଜା, ରଣଜିତା ଏବଂ ରାମଲୀଳା (ନାଟକ) ମୁଖ୍ୟତଃ ଆକର୍ଷଣୀୟ ତଥା ପାର୍ବଣର ଆମୋଦଦାୟକ ଖୋରାକ ପ୍ରଦାନ କରୁଥିଲା ।

ଖଣ୍ଡାଧୁଆ ପର୍ବରେ ରାଜାଙ୍କଠାରୁ ଆରମ୍ଭ କରି ତାଙ୍କର ଆନୁଗତ୍ୟମାନେ ଆପଣା ଖଣ୍ଡା, ଢାଲ, ବର୍ଚ୍ଛା, ଧନୁଶର, ବନ୍ଧୁକ, କଲମ କରି ଯୁଦ୍ଧ ପାଇଁ ବ୍ୟବହୃତ ହେଉଥିବା ଅସ୍ତ୍ରଶସ୍ତ୍ରକୁ ସାଥିରେ ବହନ କରି ଆଶ୍ୱିନ ମାସର ଶୁଭ ଶୁକ୍ଳ ସପ୍ତମୀ ତିଥିରେ ରାଜଉଆସ ନିକଟବର୍ତ୍ତୀ ଖଣ୍ଡାଧୁଆ ନାଳରେ ପରିଷ୍କାର ପୂର୍ବକ ପୂଜା କରୁଥିଲେ । କୁଳପୁରୋହିତ ଏହି ପୂଜାକୁ (ଖଣ୍ଡାଧୁଆ) ଦେବୀ ଦୁର୍ଗାଙ୍କ ନାଁରେ ସମର୍ପି ଦେଉଥିଲେ । ଏ ବିଧି ରାଜଉଆସରେ ଦେଖିବାକୁ ମିଳେ ।

ବିଭିନ୍ନ ଅସ୍ତ୍ରଶସ୍ତ୍ରକୁ ପୁନଃ ଉଆସ ପରିସରରେ ଥିବା ପାଟଣେଶ୍ୱରୀଙ୍କ ପୂଜା କରିବା ସହ ଦେବୀଦୁର୍ଗାଙ୍କ ମୂର୍ତ୍ତି ସହ ସ୍ଥାପନ କରାଯାଉଥିଲା, ଯାହାକୁ ଖଣ୍ଡାବସା ଦେବୀ ବୋଲି କଥିତ ଅଛି ।

ବିଭିନ୍ନ ସ୍ଥାନରେ ଦେବୀ ଦୁର୍ଗାଙ୍କ ପୀଠରେ ସନ୍ଧିପୂଜା ଭଳି ବୋଡ଼ାସମ୍ବରରେ ମଧ୍ୟ କୁଳ ପୁରୋହିତଙ୍କ ଦ୍ୱାରା ଲଗ୍ନ ସ୍ଥିର କରାଯାଇ ଦେବୀ ଦୁର୍ଗାଙ୍କୁ ବଳିଭୋଗ ଅର୍ପଣ କରିବା ସହ ମନସ୍କାମନା ପୂରଣ ସକାଶେ ସନ୍ଧି ପୂଜା ହେଉଥିଲା । ଏହା ସମ୍ପୂର୍ଣ୍ଣ ଗୁପ୍ତ ଭାବରେ ଏକନିଷ୍ଠ ଭକ୍ତି ଭାବନା ପୂର୍ଣ୍ଣରେ ପାଳିତ ହେଉଥିଲେ ମଧ୍ୟ ଏବେବି ପରମ୍ପରା ଅକ୍ଷୁଣ୍ଣ ରହିଛି ।

ପୁରାଣ ବର୍ଣ୍ଣିତ ବିଜୟା ଦଶମୀ (ଆଶ୍ୱିନ ଶୁକ୍ଳପକ୍ଷ ଦଶମୀ ବା ଦଶହରା) ପରମ୍ପରାଠାରୁ ଭିନ୍ନ ଆବେଗରେ ପାଳିତ ହେଉଥିବା ପର୍ବର ନାଁ ହେଲା ରଣଜିତା, ଯେଉଁଥିରେ ମହାରାଜଠୁଁ ଆରମ୍ଭ କରି ଜମିଦାର, ସାମନ୍ତ ଏପରିକି ସାଧାରଣ ପ୍ରଜା ଏକ ଶୁଭଙ୍କର ଦିବସ ରୂପେ ବିବେଚନା କରି ଧୁମ୍‌ଧାମ୍‌ରେ ପାଳିତ ହେବାର ସ୍ମୃତି ରହି ଆସିଛି । ଏହି ସ୍ୱତନ୍ତ୍ର ପୂଜାବିଧି ପାଳନ ଅବସରରେ ଏକ ନାରିକେଳକୁ ଦୁର୍ଗାଙ୍କଠାରେ ପୂଜା କରାଯାଉଥିଲା । ସେହି ନଡ଼ିଆକୁ ରାଜ ଉଆସର କର୍ମଚାରୀ (ପ୍ରଜା) ରଣଜିତା ସ୍ଥଳୀରେ ଥିବା ଗୋଟିଏ ଗଛରେ ବାନ୍ଧି ଦିଆଯାଉଥିଲା । ଅପରାହ୍ନରେ ଜମିଦାର ରାଜକୀୟ ବେଶ ଧାରଣ କରି ଉଆସ ମଧ୍ୟରେ ଥିବା ପାଟଣେଶ୍ୱରୀଙ୍କୁ ମୁଣ୍ଡିଆ ମାରି ରଣଜିତାସ୍ଥଳୀକୁ ଆଗମନ କରୁଥିଲେ । ବିଭିନ୍ନ ବାଦ୍ୟ ଓ ଜୟଧ୍ୱନୀର ଆସର ଭିତରେ ଜମିଦାର ତଥା ରାଜ ଉଆସର ଅନ୍ୟାନ୍ୟ କର୍ମଚାରୀମାନେ ବନ୍ଧୁକ, ଧନୁଶର ଧରି ଯୋଦ୍ଧା ମନୋଭାବ ପୋଷଣ କରି ରଣଜିତାସ୍ଥଳୀରେ ପହଞ୍ଚି ଗଛରେ ପୂଜିତ ବନ୍ଧା ନଡ଼ିଆକୁ ଜଣଙ୍କ ପରେ ଜଣେ ଲକ୍ଷ୍ୟଭେଦ କରୁଥିଲେ । ଯଦି ନଡ଼ିଆଟି ଫାଟି ଯାଉଥିଲା, ସେହି ଲକ୍ଷ୍ୟଭେଦୀ ବ୍ୟକ୍ତିଙ୍କୁ ସମ୍ମାନର ସହ ପୁରସ୍କାର ଦିଆଯାଉଥିଲା । ଏହି ପର୍ବକୁ 'ଚାନ୍ଦଟିପା' ବୋଲି କୁହାଯାଉଥିଲା ।

ଏ ନିଆରା ପରମ୍ପରା ବୋଡ଼ାସମ୍ବର ଅଞ୍ଚଳର ଶାରଦୀୟ ମହୋତ୍ସବର ଭକ୍ତିପୂର୍ଣ୍ଣ ତଥା ବୀରତ୍ୱର ପ୍ରତିବେଦନ ।

ରାମଲୀଳା ବି ଏକ ନାଟକୀୟ ପର୍ବ ଯାହାକି ରାଜବାଟି ସମ୍ମୁଖରେ ଥିବା ସାଂସ୍କୃତିକ ମଞ୍ଚରେ ଅନୁଷ୍ଠିତ ହେଉଥିଲା । ବିଭିନ୍ନ ଅଞ୍ଚଳର ଗ୍ରାମୀଣ କଳାକାରଙ୍କ ଦ୍ୱାରା ସ୍ୱ ସ୍ୱ ଢଙ୍ଗରେ ପରିବେଷିତ ହେଉଥିବା ରାମଲୀଳା ବାସ୍ତବିକ ସମସ୍ତ ଆବାଳ–ବୃଦ୍ଧ–ବନିତାଙ୍କ ପାଇଁ ଆମୋଦ–ପ୍ରମୋଦ ବାଢ଼ି ଦେଉଥିଲା । ରାମାୟଣର ଅପୂର୍ବ ତଥା ରୋମାଞ୍ଚିତ ଦୃଶ୍ୟାବଳୀର ନାଟକୀୟ ଅବତାରଣା ଜୀବନ୍ତ ହେବା ସହ ପୁରାଣ (ରାମାୟଣ) ର ପୃଷ୍ଠଭୂମିକୁ ଫେରାଇ ନେବାର ଏକ ମଧୁର ଆକର୍ଷଣ ମନ ଭିତରେ ବସା ବାନ୍ଧୁଥିଲା । ଦଶହରା ଦିନ ରାମ–ରାବଣର ପଟୁଆର ଦୁଲ୍‌ଦୁଲି ବାଦ୍ୟ, ଘଣ୍ଟବାଦ୍ୟ, କଳଙ୍ଗି ନୃତ୍ୟ ଦଳ, ବ୍ୟାଣ୍ଡପାର୍ଟି ଓ ଅନ୍ୟାନ୍ୟ ସାଂସ୍କୃତିକ ଦଳ ସହ ସାମିଲ ହୋଇ ବୋଡ଼ାସମ୍ବରର ବାତାବରଣକୁ ମନ୍ତ୍ରମୁଗ୍ଧ କରିଦେଉଥିଲା । ରାବଣର ପ୍ରତିମୂର୍ତ୍ତିରେ ଅଗ୍ନି ସଂଯୋଗ ମନେ ପକାଇ ଦେଉଥିଲା ଅନ୍ୟାୟ ଉପରେ ନ୍ୟାୟର ବିଜୟ । ଏହା ହିଁ ବିଜୟା ଦଶମୀ । ଏ ପରମ୍ପରା ଏବେବି ମହାଡ଼ମ୍ବରରେ ପାଳିତ

ହେଉଛି । କଳା ଓ କଳାକାରର ମଧୁର ସମନ୍ୱୟ, ପ୍ରତ୍ୟେକ ମଣିଷ ଭିତରେ ଐକ୍ୟ ଭାବନା ଜାଗ୍ରତ ହେବା ସହ, ମାଙ୍ଗଳିକ ମୁହୂର୍ତ୍ତର ଭିନ୍ନ ଆକର୍ଷଣ ଜାବୁଡ଼ି ଧରିଛି ଏ ଅଞ୍ଚଳବାସୀଙ୍କୁ ।

ଦଶହରା ପର୍ବ ଓ ରାମଲୀଳା ପାଳନର ନିଆରା ଶୈଳୀ ବୋଡ଼ାସମ୍ବର (ଅଧୁନା ପଦମ୍ପୁର ଉପଖଣ୍ଡ) ଅଞ୍ଚଳରେ ଅପୂର୍ବ ପୁଲକ ପ୍ରଦାନ କରୁଥିବାରୁ, ଏହାକୁ ଉପଭୋଗ କରିବା ପାଇଁ ପଡ଼ୋଶୀ ରାଜ୍ୟର  ଜନତାଙ୍କ ବିପୁଳ ଭିଡ଼ ଜମେ । ମା' ଦୁର୍ଗାଙ୍କ ଆଶୀର୍ବାଦ ଲାଭ କରି ସମସ୍ତଙ୍କ ମନସ୍କାମନା ପୂର୍ଣ୍ଣ ହେଲା ପରି ଅନୁଭବ କରନ୍ତି ।

ବୋଡ଼ାସମ୍ବରର ଭୌଗୋଳିକ ଅବସ୍ଥିତି ଯାହା ହେଉନା କାହିଁକି, ଏହାର ରମଣୀୟ ଶୋଭାରାଜି, ନିଆରା କଳା, ସଂସ୍କୃତି ବିଭବ, ଧର୍ମଧାରା, ଶାନ୍ତ ସରଳ ମନୋଭାବ ବିଶେଷକରି ଭାଇଚାରାର ଅନୁଭବ ଆବହମାନ କାଳରୁ ରହି ଆସିଛି । ସେଥିପାଇଁ ବୋଧହୁଏ ଡକ୍ଟର ହରେକୃଷ୍ଣ ମହତାବ ଉଲ୍ଲେଖ କରିଥିଲେ–'ପଦମ୍ପୁରର ଏକ ସୁଦୀର୍ଘ ଇତିହାସ ରହିଛି, ଏକଦା ଏହା ସମଗ୍ର ପଶ୍ଚିମ ଓଡ଼ିଶାର କ୍ଷମତାର କେନ୍ଦ୍ର ଥିଲା ।' ଓଡ଼ିଆ ଭାଷା ସାହିତ୍ୟର ବିସ୍ତାରିତ ପରମ୍ପରାକୁ ଲୋକ ମୁଖରେ ରଖିବାକୁ ଯାଇ ସାରସ୍ୱତ ସାଧକ ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି କହିଥିଲେ – ନରସିଂହନାଥ (ନୃସିଂହନାଥ ମନ୍ଦିର) ଶିଳାଲିପି ଓଡ଼ିଆ ଭାଷା ଓ ଲିପିର ପ୍ରାଚୀନତମ ନିଦର୍ଶନ । ଏହା ସମଗ୍ର ଓଡ଼ିଶାର ଏକ ସାଂସ୍କୃତିକ ଐତିହ୍ୟ ଓ ସଂପଦ ରୂପେ ବିବେଚିତ । ସେହିପରି ଏ ଅଞ୍ଚଳର ମହାର୍ଘ ମହାନତାକୁ ଉର୍ଦ୍ଧ୍ୱରେ ରଖି ଐତିହାସିକ ସ୍ୱର୍ଗତ ଡକ୍ଟର ନବୀନ କୁମାର ସାହୁ କହିଥିଲେ – 'ବୋଡ଼ାସମ୍ବରର ପ୍ରାଣକେନ୍ଦ୍ର ପଦମ୍ପୁର ସଭ୍ୟତାର ଉଷା ଦେଖିଥିଲା ।'

ଐତିହ୍ୟ ଓ ସଂସ୍କୃତିର ଗନ୍ତାଘର–ବୋଡ଼ାସମ୍ବର' ସାମଗ୍ରିକ ଦୃଷ୍ଟିକୋଣରୁ ପ୍ରଜୁଜ୍ୟ । ଏହାର ଅକ୍ଷୁଣ୍ଣତାକୁ ବଜାୟ ରଖିବା ସମସ୍ତଙ୍କର କାମ୍ୟ ।

ପ୍ରକଳ୍ପ ନିର୍ଦ୍ଦେଶକ, ଜଳବିଭାଜିକା କାର୍ଯ୍ୟାଳୟ
ବରଗଡ଼– ୭୬୮୦୨୮

# ଦେବୀ ଦୁର୍ଗା

ସୁପ୍ରଭା ମିଶ୍ର

ବିଲପାଟ ନଳିତା କିଆରି ଡେଇଁ
ପଠାର କାଶତଣ୍ଡୀ ବଣ ସନ୍ଧିରୁ
ଏଡେ ତରତର ହୋଇ ପାଦ କାଢ଼ିଛୁ ଯେ
କେଉଁଠି ରଖିବୁ ତାକୁ ମା !

ମାଟି ଭିଜିଚି ରକ୍ତଛିଟାରେ, ପବନରେ କୋଳାହଳ
ପାଣି ତ ଲୁହରେ ଲୁଣିଆଁ, କେଉଁଠି ତୁ ଛିଡାହବୁ ମା !

ଶୁଣ୍– ଗଣଧର୍ଷଣର ଆର୍ତ୍ତନାଦ ଓ ଆତଙ୍କ
ଦେଖ– କେମିତି ଚକ୍‌ଚକ୍ ମାରୁଚି ଫାଶୀର ଫାଶ
ଛୁଁ– ପିତାମାତା ସାଥି ସହୋଦରଙ୍କ ଆଖିନିଆଁ
ଚାହାଁ– ଆକାଶରେ କେମିତି କଳାଧୂଆଁ
କେଉଁ ମହିଷାସୁରକୁ ତୁ ମାରିବୁ ମା' !

ଗଙ୍ଗାଜଳ ଅପବିତ୍ର କହି ମଥାକୋଡିଥିଲି ସେଦିନ
ଆଜି ତ ପାଦତଳ ମାଟି ମୁଠାକ ଅପବିତ୍ର
ନା ମାଟିରେ ସୀତା, ନା ଶିଖାରେ କୃଷ୍ଣା

ଏଇ କ'ଣ କଳିକାଳ ସତେ
ଯୌନବିକାର ଗ୍ରସ୍ତ ଅଭିଶପ୍ତ ସମୟ
କେଉଁଥିରେ ଗଢ଼ିବୁ ତୋ ମୃଣ୍ମୟ ଶରୀର
କେଉଁ ମାଟିରେ ମା !

ଗଙ୍ଗଶିଉଳି ଦିହରେ ଉକୁଟି ଉଠୁଚି ତୋ ମୁହଁ
ଅପରାଜିତା ପାଖୁଡାରେ ଅଳୁଳାୟିତ କେଶ
ସଜ ମନ୍ଦାରରେ ପାଦ ଆଖିର ବର୍ଷାବିନ୍ଦୁ ଘାସ ପତରରେ
ତ୍ରିଶୂଳ ହାତରେ ବିରାଜୁଥା ମା' !

ଗଳି କନ୍ଦି ଛକ ପୀଠ ଦାଣ୍ଡ ମଣ୍ଡପରେ
ତୋ ଆଗମନରେ ହଟିଯାଉ ଅମାଅନ୍ଧାର
ହସ ଚହଟୁ କୁନି ପିଲାଙ୍କ ଓଠରେ
ସଦା ଏଇ ପାର୍ବଣ ପକ୍ଷରେ ।

ପ୍ରାଧ୍ୟାପିକା, ବିଜେବି ସ୍ୱୟଂଶାସିତ
ମହାବିଦ୍ୟାଳୟ, ଭୁବନେଶ୍ୱର

# ଯାଜପୁରର ମା' ବିରଜା ଓ ଶାରଦୀୟ ରଥଯାତ୍ରା

ସୂର୍ଯ୍ୟମଣି ଖୁଣ୍ଟିଆ

ସମଗ୍ର ଭାରତବର୍ଷରେ ବିରଜାକ୍ଷେତ୍ର ଯାଜପୁରର ନାଁ ଜଣାଶୁଣା । ଓଡ଼ିଶାରେ ଯାଜପୁର ପୁରାତନ ସାଂସ୍କୃତିକ ପୀଠ । ଯାଜପୁର, ଯାଜନଗ୍ର, ଯଜ୍ଞପୁର ପ୍ରଭୃତି ନାମରେ ନାମିତ ଏହି ପୁରାତନ ନଗରୀର ଐତିହାସିକ ଭିତ୍ତିଭୂମି ଅତି ସୁଦୃଢ଼ । ବହୁ ପୁରାଣ ଶାସ୍ତ୍ରରେ ଯାଜପୁର ତଥା ଯାଜପୁରର ଅଧୀଶ୍ୱରୀ ବିରଜାଙ୍କ ନାମ ଉଲ୍ଲେଖ ରହିଛି ।

ଯାଜପୁର ଶବ୍ଦଟି ଯାଜିପୁର ଶବ୍ଦର ଅପଭ୍ରଂଶ ବୋଲି ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କ ଭାଷାକୋଷରେ କହିଛନ୍ତି । ଯାଜପୁର ଶବ୍ଦଟିର ଆକ୍ଷରିକ ଅର୍ଥ ହେଉଛି ଯାଜି– ଅର୍ଥାତ୍ ଯଜ୍ଞକାରୀ ବ୍ରାହ୍ମଣମାନଙ୍କର ନଗର ବା ପୁର । ଏଠାରେ ବହୁ ଶାସ୍ତ୍ରଦର୍ଶୀ– ସୋମଯାଜି ବା ବାଜପେୟୀ ଶ୍ରେଣୀର ବିଦ୍ୱାନ୍ ବ୍ରାହ୍ମଣମାନେ ବାସ କରୁଥିଲେ । ସେମାନଙ୍କର ସଂଖ୍ୟା ଦଶ ସହସ୍ର ଥିଲା ବୋଲି ପୁରାଣ ତଥା କିମ୍ବଦନ୍ତୀରୁ ପ୍ରମାଣ ମିଳେ । ସେହି ବ୍ରାହ୍ମଣମାନେ ସକାଳେ ଓ ସଂଧ୍ୟାରେ ଯଜ୍ଞକାର୍ଯ୍ୟରେ ନିଜନିଜକୁ ନିୟୋଜିତ କରୁଥିଲେ । ସେହି ବ୍ରାହ୍ମଣମାନଙ୍କ ସହାୟତାରେ ଏଠାରେ ଦଶଗୋଟି ଅଶ୍ୱମେଧ ଯଜ୍ଞ କରାଯାଇଥିଲା ।

'ବିରଜା ମହାତ୍ମ୍ୟ' ଗ୍ରନ୍ଥରୁ ଜଣାଯାଏ, ପିତାମହ ବ୍ରହ୍ମା ବୈତରଣୀ ନଦୀର ବାମ ତୀରରେ ଏକ ବିରାଟ ଯଜ୍ଞର ଆୟୋଜନ କରିଥିଲେ । ଏହି ବ୍ରହ୍ମଯଜ୍ଞରେ ଯୋଗଦେବା ପାଇଁ ବିଷ୍ଣୁଙ୍କ ସମେତ ଦେବତାଗଣ, ଋଷି, ଗନ୍ଧର୍ବ, କିନ୍ନରମାନେ ଯଜ୍ଞକ୍ଷେତ୍ରରେ ଉପସ୍ଥିତ ହୋଇଥିଲେ । ତେଣୁ ଏହା ଏକ ପ୍ରସିଦ୍ଧ ଯଜ୍ଞ କ୍ଷେତ୍ର ହୋଇଥିବାରୁ ଏହାର ନାମ ଯଜ୍ଞପୁର ହୋଇଥିଲା ଓ କାଳକ୍ରମେ ଏହା ଯାଜିପୁର ବା ଯାଜପୁରରେ ପରିଣତ ହେଲା ।

ଯାଜପୁର ବିଭିନ୍ନ ସମୟରେ ବିଭିନ୍ନ ରାଜାମାନଙ୍କର ରାଜଧାନୀ ଥିବା କଥା ଇତିହାସ କହେ । ବିଶେଷକରି ଭୌମକର ବଂଶ ଓ ସୋମବଂଶର ରାଜାମାନଙ୍କର ଶତାବ୍ଦୀ ଶତାବ୍ଦୀ ଧରି ଯାଜପୁର ଉତ୍କଳର ରାଜଧାନୀ ଥିଲା ବୋଲି ଇତିହାସରୁ ପ୍ରମାଣ ମିଳେ । ଭୌମକରମାନଙ୍କ ମଧ୍ୟରେ ରାଣୀ ତ୍ରିଭୁବନଦେବୀ ନିଜକୁ କାତ୍ୟାୟନୀ ବୋଲି ଅଭିହିତ କରାଇ ଶାସନ କରୁଥିଲେ । ସୋମବଂଶୀମାନଙ୍କ ମଧ୍ୟରେ ଯଯାତିକେଶରୀ ଯାଜପୁରକୁ ଅଭିନବ ଯଯାତି ନଗରୀ ନାମରେ ନାମିତ କରି ଏହିଠାରେ ତାଙ୍କର ରାଜଧାନୀ ସ୍ଥାପନ କରିଥିଲେ । ତେବେ ଦ୍ୱାଦଶ ଶତାବ୍ଦୀର ଅର୍ଦ୍ଧେକ ପର୍ଯ୍ୟନ୍ତ ସୋମବଂଶୀ ରାଜାମାନଙ୍କର ଶାସନ ଯାଜପୁରଠାରେ ହିଁ ଚାଲିଥିଲା । ଗଙ୍ଗବଂଶର ଶାସନକାଳଠାରୁ ଯାଜପୁରର ଗୌରବ କ୍ଷୁଣ୍ଣ ହେବାକୁ ଲାଗିଲା। ଶେଷକୁ କେବଳ ଏହି ଗୌରବର ଆଲୋକ ସ୍ତମ୍ଭଟିଏ ହୋଇ ରହିଗଲେ ଯାଜପୁରାଧୀଶ୍ୱରୀ ବିରଜା । ଯଦି ଯାଜପୁରରେ ବିରଜା ନଥାନ୍ତେ ବା ତାଙ୍କର ପୂଜା ଆରାଧନା ହେଉ ନଥାନ୍ତା, ତା'ହେଲେ ଯାଜପୁରର ନାଁ କାଳଗର୍ଭରେ ଲୀନ ହୋଇଯାଇ ଥାଆନ୍ତା, ବିରଜାଙ୍କ ବିହୁନେ ଯାଜପୁର ଏକ ଐତିହାସିକ ସମ୍ଭାବନା ବା ପରିକଳ୍ପନାର ଶବ୍ଦଟିଏ ମାତ୍ର ହୋଇ ରହିଯାଇ ଥାଆନ୍ତା ।

ବିରଜା ହିଁ ଯାଜପୁରର ଅଧୀଶ୍ୱରୀ, ସେ ହିଁ ଯାଜପୁରର ଭୈରବୀ । ଉଡ୍ଡୀୟମାନ ତନ୍ତ୍ରରେ କୁହାଗଲା–

ବିରଜା ନାଭିପୀଠସ୍ତୁ ବରାହ ଭୈରବାକୃତେ ।<br>
ବିମଳା ପାଦପୀଠଞ୍ଚ ଜଗନ୍ନାଥାଖ୍ୟଃ ଭୈରବଃ ।।

ଯାଜପୁରର ଭୈରବୀ ହେଉଛନ୍ତି ବିରଜା, ଭୈରବ ହେଉଛନ୍ତି ବରାହ । ପୁରୀର ଭୈରବୀ ହେଉଛନ୍ତି ବିମଳା ଓ ଭୈରବ ହେଉଛନ୍ତି ଜଗନ୍ନାଥ । ଯାଜପୁରର ଦୁର୍ଗା ହେଉଛନ୍ତି ବିରଜା । ଏ ବିରଜାଙ୍କର ବିଜେସ୍ଥଳୀ ଯାଜପୁର ନଗରୀର ସ୍ଥିତି ଏହିପରି, ଗୋଟିଏ ପଟରେ ଉତ୍ତର ଦିଗରେ ଯଜ୍ଞବରାହ ମନ୍ଦିର ଠିକ୍ ଆର ପଟରେ ଶେଷ ମୁଣ୍ଡରେ ମା' ବିରଜାଙ୍କ ମନ୍ଦିର । ଏ ଦୁଇ ମୁଖ୍ୟ ମନ୍ଦିରକୁ ଛାଡ଼ିଦେଲେ

ଗଳିରେ ଗଳିରେ ପୂରି ରହିଥିବା ଅସଂଖ୍ୟ ମନ୍ଦିର ଏବଂ ଶିବଲିଙ୍ଗ ଏ ନଗରକୁ ମନ୍ଦିରମାଳିନୀ କରି ତୋଳିଛି । କଥାରେ ଅଛି ଯାଜପୁରରେ କୋଟିଏ ଦେବ ପୀଠରୁ ମାତ୍ର ଗୋଟିଏ କମ୍ ହେଲା ବୋଲି ଯାଜପୁର କ୍ଷେତ୍ରରାଜ ହେବାର ଗୌରବ ଅର୍ଜନ କରିପାରିଲାନାହିଁ, ବରଂ ସେ ଗୌରବର ଅଧିକାର ହେଲା କ୍ଷେତ୍ରରାଜ ନୀଳାଚଳ । ତା' ନ ହେଲେ କୋଟିକରୁ ଗୋଟିଏ କମ୍ ଦେବତାଙ୍କ ପୀଠ ଏହି ପବିତ୍ରଭୂମି ବିରାଜାଙ୍କର ଭୂମି । ସପ୍ତନଦୀର ଶଯ୍ୟା ଉପରେ ଛିଡ଼ା ହୋଇଛି ଏଇ ଯାଜପୁର କଟକ। ଏହି ନଦୀଗୁଡ଼ିକର ଅବଶେଷ ଏବେ ମଧ୍ୟ ଦେଖାଯାଏ । ଏ ନଦୀଗୁଡ଼ିକ ହେଲା– ବୈତରଣୀ, ଗଂଗୋତ୍ରୀ, ହଂସରେଖା, ପଦ୍ମରେଖା, ମଦ୍‌ଗୁରେଖା, ବେଂଗବତୀ ଓ କୃପା । ଏ ପର୍ଯ୍ୟନ୍ତ ବେଂଗାକୂଳ, ହଂସୁଆକୂଳ ଓ ଗେଂଗୁଟିକୂଳ ବୋଲି କହି ଲୋକେ ନଦୀଗୁଡ଼ିକୁ ଚିହ୍ନଟ କରିଥାନ୍ତି । ଯାଜପୁରକୁ ପଞ୍ଚବକାରର ତୀର୍ଥସ୍ଥଳ ବୋଲି କୁହାଯାଏ । ଏ ପଞ୍ଚ 'ବ'କାର ହେଲା ବରାହ, ବିରଜା, ବେଦ, ବିପ୍ର ଓ ବୈତରଣୀ । ଏମାନେ ଅନ୍ୟତ୍ର ଏକାଠି ମିଳିବା ଦୁର୍ଲଭ ।

ଯାଜପୁରାଧୀଶ୍ୱରୀ ବିରଜା ଭାରତର ଅନ୍ୟତମା ପ୍ରାଚୀନ ଦେବୀମୂର୍ତ୍ତି । ବିରଜା ସିଂହବାହିନୀ, ଦ୍ୱିଭୁଜା, ଶୂଳଧାରିଣୀ । ବୋଧହୁଏ ସମଗ୍ର ଭାରତବର୍ଷରେ ଦ୍ୱିଭୁଜା ଦୁର୍ଗାଙ୍କର ବିଗ୍ରହ ଖୁବ୍ ବିରଳ। ତେବେ ଏହି ଦୁର୍ଗା ବିରଜାଙ୍କର ଆବିର୍ଭାବ କେବେ କିପରି ଯାଜପୁରଠାରେ ହେଲା, ତାହା ନିର୍ଦ୍ଦିଷ୍ଟ ଭାବରେ କୁହାଯାଇ ନପାରେ । କେବଳ ଶାସ୍ତ୍ରମାନଙ୍କୁ ଆଧାର କରି କିମ୍ବା ଇତିହାସ ଉକ୍ତିକୁ ସମ୍ବଳ କରି ତାଙ୍କର ଉତ୍ପତ୍ତି ସମ୍ବନ୍ଧରେ ଯାହାକିଛି କୁହାଯାଇପାରେ ।

ପୁରାଣ କହିବା ଅନୁଯାୟୀ ବୈତରଣୀ ତୀରରେ ବ୍ରହ୍ମା ଯେଉଁ ବିରାଟ ଯଜ୍ଞର ଆୟୋଜନ କରିଥିଲେ, ସେହି ଯଜ୍ଞର ଗାର୍ହପତ୍ୟ କୁଣ୍ଡରୁ ଜ୍ୟୋତିର୍ମୟୀ ମୂର୍ତ୍ତିର ଆବିର୍ଭାବ ହୋଇଥିଲା । ଦେବୀଙ୍କର ତେଜରେ ଚତୁର୍ଦ୍ଦିଗ ଆଲୋକରେ ଉଦ୍‌ଭାସିତ ହୋଇଥିଲା । ବ୍ରହ୍ମାଙ୍କର ଶ୍ରଦ୍ଧା ଏବଂ ଭକ୍ତିରେ ସନ୍ତୁଷ୍ଟା ହୋଇ ଦେବୀ ସେହି ତୀର୍ଥରେ ରହିବା ପାଇଁ ପ୍ରତିଶ୍ରୁତି ଦେଲେ । ପୁଣି ପୁରାଣ କହେ, ଯଜ୍ଞକୁଣ୍ଡରୁ ବିରଜା ଆବିର୍ଭୂତା ହେବା ସଂଗେସଂଗେ ତାଙ୍କ ମାନସରୁ ନବଦୁର୍ଗା, ଅଷ୍ଟଚଣ୍ଡୀ, ଚତୁଷଷ୍ଠୀ ଯୋଗିନୀ ଜାତ ହୋଇ ବିଭିନ୍ନ ସ୍ଥାନରେ ରହିଲେ । ଯଜ୍ଞସ୍ଥଳକୁ ଆସିଥିବା ସଦାଶିବଙ୍କ ଶରୀରରୁ ମଧ୍ୟ ଭୈରବ ଚତୁଷ୍ଟୟ ଜାତ ହୋଇ ଏଠାରେ କ୍ଷେତ୍ରପାଳ ରୂପେ ବିଦ୍ୟମାନ । ବାୟୁପୁରାଣ ଅନୁଯାୟୀ ବିରଜା ଦେବୀଙ୍କର ପରିଚୟ ଅନ୍ୟ ପ୍ରକାରର । କର୍ଦ୍ଦମ ପ୍ରଜାପତି ପୁଲହଙ୍କଠାରୁ ଉତ୍ପନ୍ନ ହୋଇଛନ୍ତି । ତାଙ୍କର ଅଜ୍ୟପା ବା ଆଜ୍ୟାପା ନାମଧେୟ ପିତୃଗଣ ଅଛନ୍ତି । ସେମାନେ ସର୍ବଲୋକରେ ବିହଙ୍ଗମ ସଦୃଶ ଅବସ୍ଥାନ କରନ୍ତି । ଏହି ପିତୃଗଣଙ୍କୁ ଫଳାକାଙ୍କ୍ଷୀ ବୈଶ୍ୟମାନେ ଶ୍ରାଦ୍ଧ ସମୟରେ ଆହ୍ୱାନ କରନ୍ତି । ଶ୍ରୀବିରଜା ହେଉଛନ୍ତି ଏହି ଆଜ୍ୟାପା ପିତୃଗଣଙ୍କର ମାନସୀ କନ୍ୟା । ସେ ହେଉଛନ୍ତି ପୁରାଣ ପ୍ରସିଦ୍ଧ ମହାରାଜ ଯଯାତିଙ୍କର ଜନନୀ ଓ ନହୁଷଙ୍କର ପତ୍ନୀ । ବିରଜା ପିତୃଗଣଙ୍କର ମାନସୀ କନ୍ୟା ହୋଇଥିବାରୁ ବିରଜା କ୍ଷେତ୍ରରେ ପିଣ୍ଡଦାନ କଲେ ପିତୃଗଣ ପାଆନ୍ତି ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି

କେବେଠାରୁ ବିରଜା ଯାଜପୁରର ଅଧୀଶ୍ୱରୀ ହେଲେ, ତାହା କହିବା କଠିନ ବ୍ୟାପାର ହୋଇଥିଲେ ମଧ୍ୟ ସେ ଯେ ମହାଭାରତ ରଚନାକାଳ ପୂର୍ବରୁ ଅଧିଷ୍ଠିତା ଏଥିରେ ସନ୍ଦେହ ନାହିଁ । କାରଣ ବ୍ୟାସ ବିରଚିତ ସଂସ୍କୃତ ମହାଭାରତ ଗ୍ରନ୍ଥରେ ବିରଜାଙ୍କ ସମ୍ବନ୍ଧରେ ଉଲ୍ଲେଖ ରହିଛି।

ଯଦି ମହାଭାରତ ରଚନା କାଳକୁ ଅତି କମ୍‌ରେ ଖ୍ରୀ.ପୂ. ୧୫୦୦ ବୋଲି ଧରି ନିଆଯାଏ ତେବେ ଆଜକୁ ସାଢ଼େ ତିନିହଜାର ବର୍ଷ ତଳେ ଯେ ବିରଜାଙ୍କର ପୂଜାର୍ଚ୍ଚନା ଯାଜପୁରଠାରେ ହେଉଥିଲା, ଏହି ସିଦ୍ଧାନ୍ତରେ ପହଂଚିବାକୁ ହୁଏ । ଭାରତବର୍ଷର ବହୁ ପ୍ରାଚୀନ ବିଗ୍ରହମାନଙ୍କ ମଧ୍ୟରେ ବିରଜା ଅନ୍ୟତମା ।

**ରଥଯାତ୍ରା :** ଏହି ଦେବୀଙ୍କର ନବଦିନବ୍ୟାପୀ ରଥଯାତ୍ରା ଏ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ବିଭବ । କେତେକ ମତ ଦିଅନ୍ତି ବୌଦ୍ଧମାନଙ୍କର ତାରା ହେଉଛନ୍ତି ବିରଜା । ବୌଦ୍ଧ ତନ୍ତ୍ରଯାନର ପ୍ରଭାବରେ ତନ୍ତ୍ର ପଦ୍ଧତିରେ ଦେବୀଙ୍କର ପୂଜା କରାଯାଏ । ବୌଦ୍ଧମାନଙ୍କର ରଥଯାତ୍ରାର ପ୍ରଭାବରେ ବିରଜାଙ୍କର ରଥଯାତ୍ରା ଅନୁଷ୍ଠିତ ହୁଏ ବୋଲି କେତେକ ବିଦ୍ୱାନ ମତ ଦିଅନ୍ତି ।

ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡରେ ଚାଲୁଥିବା ରଥର ନାମ ତାଳଧ୍ୱଜ, ଦର୍ପଦଳନ ବା ଦେବଦଳନ, ନନ୍ଦିଘୋଷ । ସେହିପରି ବିରଜାଙ୍କ ରଥଦାଣ୍ଡରେ ଚାଲୁଥିବା ରଥର ନାମ ସିଂହଧ୍ୱଜ । ଏ ରଥର ଅନ୍ୟ ନାମ 'ବିଜୟା' । ଏହାର ଉଚ୍ଚତା ପୂର୍ବେ ୪୫ ହାତ ବା ୬୭ଫୁଟ ଥିବାବେଳେ ଏବେ ପ୍ରାୟ ୬୨ଫୁଟ ରହିଛି । ଏହି ରଥର ଗଠନ ପ୍ରଣାଳୀ ଶ୍ରୀକ୍ଷେତ୍ରର ରଥର ଗଠନ ପ୍ରଣାଳୀ ସହିତ ସମାନ ନୁହେଁ । ଏ ରଥରେ ସରୁ ଏବଂ ଛୋଟ ଛୋଟ କାଠଖଣ୍ଡମାନଙ୍କର ବ୍ୟବହାର ହୋଇଥିବାର ଦେଖାଯାଏ । ରଥର ଚକସଂଖ୍ୟା ବାର । ରଥର ଆଗରେ ଓ ପଛରେ ଦୁଇଟି ରଜ୍ଜୁ ଲାଗିଥାଏ । ଏ ରଥର ସାରଥି ସ୍ୱୟଂ ବ୍ରହ୍ମା । ଦୁଇଟି ଘୋଡ଼ା, ଦୁଇଟି ହାତୀ ଏବଂ ଉପର ଥାକରେ ଦୁଇଟି ସିଂହଙ୍କୁ ସ୍ଥାପନ କରାଯାଇଥାଏ । ରଥର ଦେବତାମାନେ ହେଲେ– ତଳପଟାରେ ଚନ୍ଦ୍ର, ବୁଧ ଓ ଶୁକ୍ର ବାମ ଭାଗରେ ବୃହସ୍ପତି

ରଥର ପୃଷ୍ଠଭାଗରେ କେତୁ, ଶନି, ରାହୁ । ଡାହାଣ ପାଖରେ ମଙ୍ଗଳ, ସିଂହାସନ କୋଠରୀରେ ରବି ମହାଗ୍ରହ । ଉପର ପଟା ସାମ୍ନାରେ ଅଗ୍ନି, ଇନ୍ଦ୍ର, ଈଶାଣ । ଡାହାଣ ପଟରେ ଯମ, ପଛପଟରେ ନୈଋତ, କୁବେର, ବରୁଣ ଇତ୍ୟାଦି ଅଷ୍ଟଦିଗପାଳ । ସାମ୍ନାର ଉପର ଭାଗରେ ହଂସ ବାହନ ବ୍ରହ୍ମା, ଅନନ୍ତ ବାସୁଦେବ । ରଥର ଆଭରଣ ଶ୍ୱେତ, ନୀଳ, ଲୋହିତ ରଙ୍ଗର ବିଭିନ୍ନ ପ୍ରକାର ବସ୍ତ୍ର । ରଥର ଧ୍ୱଜାରେ ସିଂହ । ତେଣୁ ରଥର ନାମ ସିଂହଧ୍ୱଜ ।

ସୁନିଆ ଦିନ ରଥ ନିର୍ମାଣ କାର୍ଯ୍ୟ ଆରମ୍ଭ ହୁଏ । ସେଦିନ ବିଲ୍ୱ ବରଣ କରାଯାଏ । ଗଣକଙ୍କ ଗଣନା ଅନୁଯାୟୀ ଯେଉଁ ଦିଗକୁ ସୁଝେ, ସେହି ଦିଗକୁ ଯାଇ ବାରିକ ସେବକ ବେଲଗଛ ଖୋଜେ । ସେ ବେଲଗଛ ପୁଣି ଅଫଳନ୍ତି ବେଲଗଛ ହେବା ଆବଶ୍ୟକ । ବେଲ ଗଛକୁ ପୂଜାକରି ଖଣ୍ଡେ ବେଲଡାଳ ଆଣି ବିରଜାଙ୍କ ମନ୍ଦିରରେ ସ୍ଥାପନ କରାଯାଏ ଓ ସେଇ ଡାଳଟିକୁ ରଥରେ ସ୍ଥାପନ କରାଯାଏ । ରଥ ତିଆରି କରିବା ପାଇଁ ମହାରଣାମାନେ ପୁରୁଷାନୁକ୍ରମେ ନିଯୁକ୍ତ ଅଛନ୍ତି ।

ମହାଳୟା ଅମାବାସ୍ୟା ଦିନ ସିଂହଧ୍ୱଜ ବା ବିଜୟାରଥ ସଂପୂର୍ଣ୍ଣ ରୂପେ ପ୍ରସ୍ତୁତ ହୋଇ ମାଆଙ୍କର ସିଂହ ଦୁଆରକୁ ଆସେ । ସେହିଦିନ ବିଧିବିଧାନ ସହିତ ରଥ ଅଧିବାସ ସରିବା ପରେ ରଥର ସାରଥି ବ୍ରହ୍ମା ରଥକୁ ବିଜେ କରନ୍ତି । ପ୍ରତିପଦ ଦିନ ରଥ ପ୍ରତିଷ୍ଠା କରାଯାଏ । ରଥ ପ୍ରତିଷ୍ଠା ପାଇଁ ମାଆଙ୍କର ସିଂହ ଦରଜା ସାମ୍ନାରେ ବେଦୀଟିଏ ଅଛି । ସେହି ବେଦୀ ଉପରେ ଯଥାବିଧି ପୂଜାପାଠ ଓ ହୋମ ସରିବା ପରେ ଅପରାହ୍ଣ ସୁଦ୍ଧା ରଥ ପ୍ରତିଷ୍ଠା କାର୍ଯ୍ୟ ଶେଷ ହୋଇଯାଏ । ତା'ପରେ ମାଆଙ୍କର ରୂପା ନିର୍ମିତ ଆର୍‌ସା ବାଡ଼ିକୁ ପୂଜା କରି ମାଆଙ୍କର ସିଂହାସନ ପାଖରୁ ଶଂଖ ଘଣ୍ଟା, ତେଲିଙ୍ଗି ବାଦ୍ୟ ତଥା ଭକ୍ତମାନଙ୍କର ହୁଳହୁଳି ହରିବୋଲ ଧ୍ୱନି ମଧ୍ୟରେ ବିଜୟାରଥ ଉପରକୁ ଆଣନ୍ତି । ନବମୀଦିନ ପର୍ଯ୍ୟନ୍ତ ଏ ବାଡ଼ି ପ୍ରତିଦିନ ମଧ୍ୟାହ୍ନ ପରେ ରଥ ଉପରକୁ ଆସେ ଓ ରାତିରେ ପୁଣି ମନ୍ଦିରକୁ ଫେରିଯାଏ । ଆର୍‌ସାବାଡ଼ି ବିଜେ ହୋଇ ସାରିବା ପରେ ମାଆଙ୍କର ପିତଳ ନିର୍ମିତ ବିଜେ ପ୍ରତିମା ସିଂହାସନରୁ ଓହ୍ଲାଇ ଦୋଳାୟମାନ ବିମାନରେ ବିଜେକରି ରଥ ପର୍ଯ୍ୟନ୍ତ ଆସନ୍ତି । ଜଗନ୍ନାଥଙ୍କର ପହଣ୍ଡି ପରି ମାଆଙ୍କର ରଥବିଜେ ଦୃଶ୍ୟ ଅତ୍ୟନ୍ତ ମନୋହର । ଶଂଖଘଣ୍ଟା, ହରିବୋଲ ହୁଳହୁଳି, ମୃଦଂଗ, ଝାଂଜ କରତାଳ ଓ ଅନ୍ୟାନ୍ୟ ବାଦ୍ୟନାଦ ଭିତରେ ମାଆ ରଥ ଉପରକୁ ବିଜେ କରନ୍ତି । ତା'ପରେ ବିହିତ ପୂଜାର୍ଚ୍ଚନା ପରେ ମାଆଙ୍କ ରଥ ଚାଲିବା ଆରମ୍ଭ ହୁଏ । ରଥ ଦକ୍ଷିଣମୁହାଁ ହୋଇ ଚାଲିବା ଆରମ୍ଭ କରେ । ଭକ୍ତମାନେ ଭକ୍ତି ଗଦ୍‌ଗଦ ଚିତ୍ତରେ ରଥକୁ ଟାଣିବାକୁ ଆରମ୍ଭ କରନ୍ତି । ଜଗନ୍ନାଥଙ୍କ ରଥର ଡାହୁକଙ୍କ ପରି ଏଠି ମଧ୍ୟ ଡାହୁକ ଡାକନ୍ତି । ଏହାକୁ ପାର୍ବଣୀ ଡାକ କୁହାଯାଏ । ଏବେ ବୈଦ୍ୟରାଜପୁରର ଘଣ୍ଟ ବାଦକମାନେ ମନୋହର ତାଳରେ ଘଣ୍ଟା ବାଦନ କରୁଛନ୍ତି । ଏ ରଥ ବିରଜାଙ୍କ ମନ୍ଦିର ଚାରିପଟରେ ବୁଲେ । କେତେଥର ବୁଲିବ ସେପରି କିଛି ଧରାବାନ୍ଧା ନିୟମ ନାହିଁ । ଭକ୍ତମାନେ ଉତ୍ସାହର ସହିତ ସଂଧ୍ୟା ପର୍ଯ୍ୟନ୍ତ ଯେତେଥର ବୁଲାଇ ଆଣି ପାରନ୍ତି, ସେ ସ୍ୱାଧୀନତା ସେମାନଙ୍କୁ ଦିଆଯାଇଥାଏ । ଶେଷରେ ରଥ ମାଆଙ୍କ ସିଂହ ଦରଜାରେ ଅଟକେ । ଆର୍‌ସାବାଡ଼ି ମନ୍ଦିରକୁ ଆସେ । ମାତ୍ର ମାଆଙ୍କର ପ୍ରତିମା ନବମୀଦିନ ପର୍ଯ୍ୟନ୍ତ ସେହି ରଥ ଉପରେ ବିରାଜମାନ କରନ୍ତି । ରଥ ଉପରେ ପ୍ରତିଦିନ ଷୋଡ଼ଶ ଉପଚାରରେ ମାଆଙ୍କର ପୂଜା ହୁଏ । ସଂଧ୍ୟାରେ ଆରତି ହୁଏ । ଭକ୍ତମାନେ ମାଆଙ୍କର ଦର୍ଶନ କରିବା ସଂଗେସଂଗେ କେତେକ ମାନସିକ ଅନୁଯାୟୀ ମାଆଙ୍କ ସମ୍ମୁଖରେ ଚଣ୍ଡୀପାଠ କରାଇଥାଆନ୍ତି ।

ଆଶ୍ୱିନ ଶୁକ୍ଳ ନବମୀ ଅର୍ଥାତ୍ ଦଶହରାର ପୂର୍ବ ରାତିର ଅର୍ଦ୍ଧ ସମୟରେ ମାଆଙ୍କର ବିଜେ ପ୍ରତିମା ରଥରୁ ଓହ୍ଲାଇ ଲାଖବିନ୍ଧା ପଡ଼ିଆକୁ ଯାଆନ୍ତି । (ଲାଖବିନ୍ଧା ପାଇଁ ସ୍ୱତନ୍ତ୍ର ଆଲୋଚନା ଆବଶ୍ୟକ) । ଲାଖବିନ୍ଧା ପର୍ବ ଶେଷରେ ଦେବୀଙ୍କର ମୂର୍ତ୍ତି ମନ୍ଦିରକୁ ଫେରି ଆସିବା ପରେ ମହିଷବଳିର ଆୟୋଜନ ହୁଏ ।

ବସ୍ତୁତଃ ଆଶ୍ୱିନ ଶୁକ୍ଳ ପ୍ରତିପଦଠାରୁ ନବମୀର ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ରଥଯାତ୍ରା ଅନୁଷ୍ଠିତ ହୁଏ । ଏବେ ସ୍ଥାନୀୟ ବିଦ୍ୱାନ ତଥା ସାଂସ୍କୃତିକ ଅନୁଷ୍ଠାନମାନଙ୍କ ଦ୍ୱାରା ମହାସପ୍ତମୀ, ଅଷ୍ଟମୀ ଓ ନବମୀ ତିନି ଦିନ ଧରି ରଥଯାତ୍ରା ଅବସରରେ ଭଜନ ସଂଗୀତ ତଥା ରଥ ସଂପର୍କୀୟ ଆଲୋଚନାଚକ୍ରର ଆୟୋଜନ କରାଯାଉଛି । ମୋଟ ଉପରେ କୁହାଯାଇପାରେ ବିରଜାଙ୍କ ରଥଯାତ୍ରା ଜଗନ୍ନାଥଙ୍କ ରଥଯାତ୍ରାଠାରୁ ସଂପୂର୍ଣ୍ଣ ଅଲଗା । ଏହା ନିଜର ମୌଳିକତାରେ ଦ୍ୱରାନ୍ୱିତ ।

ବେଗନା, ପୋ–ଧନେଶ୍ୱର
କୋରାଇ, ଜିଲ୍ଲା– ଯାଜପୁର–୭୫୫୦୨୨

# କନ୍ଧମାଳରେ ଶକ୍ତିପୂଜା

ଅଧ୍ୟାପକ ଚିତ୍ତରଞ୍ଜନ ମିଶ୍ର

'ପୂଜା' ଶବ୍ଦର ଅର୍ଥ କୃତଜ୍ଞତା । ସୃଷ୍ଟିତତ୍ତ୍ୱକୁ ବୁଝି, ଜୀବନ ଧାରଣ ପାଇଁ ସହାୟକ ହେଉଥିବା ପ୍ରକୃତିର ସମସ୍ତ ଉପାଦାନକୁ ମନୁଷ୍ୟ ପୂଜା କରିବାକୁ ଲାଗିଲା ବା ନିଜର କୃତଜ୍ଞତା ଜ୍ଞାପନ କଲା । ମନୁଷ୍ୟ ବଞ୍ଚିବାରେ ଅତି ନିକଟରୁ ସହାୟକ ହେଉଥିବା ଉପାଦାନଟି ହେଉଛି 'ମାଟି' । ଏକଥା ଆର୍ଯ୍ୟ ଏବଂ ଅନାର୍ଯ୍ୟ ସମସ୍ତେ ଉପଲବ୍ଧି କଲେ ଏବଂ 'ମାଟିକୁ' 'ମାଆ' ରୂପେ ପୂଜା କରିବାକୁ ଲାଗିଲେ । ତେଣୁ 'ମାତୃପୂଜା' ବା 'ଶକ୍ତିପୂଜା' ହିଁ ସୃଷ୍ଟିର ଆଦ୍ୟ ପୂଜା ଭାବେ ସର୍ବଜନବିଦିତ । ପରବର୍ତ୍ତୀ ପର୍ଯ୍ୟାୟରେ ସୂର୍ଯ୍ୟ, ଚନ୍ଦ୍ର, ଆକାଶ, ବାୟୁ, ନଦୀ, ପର୍ବତ, ସମୁଦ୍ର, ବୃକ୍ଷ, ପଶୁ, ପକ୍ଷୀ ଇତ୍ୟାଦିଙ୍କ ସହାୟତାକୁ ଉପଲବ୍ଧି କରି ପ୍ରକୃତି ପୂଜାର ପରମ୍ପରା ସୃଷ୍ଟି ହେଲା ।

ଆର୍ଯ୍ୟ ସଂସ୍କୃତିର ପୂଜା ମୁଖ୍ୟତଃ ଦୁଇପ୍ରକାର । ଯଥା– (୧) ମନ୍ତ୍ରପୂଜା (୨) ତନ୍ତ୍ରପୂଜା । ମନ୍ତ୍ରପୂଜା ଦ୍ୱାରା ଦେବଦେବୀଙ୍କୁ ସନ୍ତୁଷ୍ଟ କରି ଆଶୀର୍ବାଦ ଭିକ୍ଷା କରାଯାଏ କିନ୍ତୁ ତନ୍ତ୍ରପୂଜା ଦ୍ୱାରା ବଳି, ମଦ, ମାଂସ ଅର୍ପଣ ପୂର୍ବକ ଦେବାଦେବୀଙ୍କୁ ବଶୀଭୁତ କରି ଆଶୀର୍ବାଦ ଆଦାୟ କରାଯାଏ । ଅନୁମାନ କରାଯାଏ ଯେ ଆର୍ଯ୍ୟ ସଂସ୍କୃତିର ଉଭୟ ପୂଜାର ପ୍ରଭାବ ଯଦିବା ଆଦିବାସୀ ସମାଜ ଉପରେ ପଡିନାହିଁ । ତଥାପି ସେମାନଙ୍କ ପୂଜାରେ ତନ୍ତ୍ର ପୂଜାର ଶୈଳୀ ପରିଲକ୍ଷିତ ହୁଏ । ସେମାନଙ୍କ ଅଧିକାଂଶ ପୂଜାରେ ବଳିଭୋଗ, ମଦ ଏବଂ ମାଂସ ସମର୍ପଣର ବିଧି ରହିଥିବା ନିମ୍ନଗୀତରୁ କିଛି ସୂଚନା ମିଳିଥାଏ ।

ଘରେ ଓ ବାହାରେ ପୂଜା ପାଇଁ ଅବା
ସାମାଜିକ ଭୋଜି ପାଇଁ
କନ୍ଧ ମଦ ଲୋଡେ ଘରେ ନଥିଲେ ଯେ
ବାହାରକୁ ଯାଏ ଧାଇଁ
ପୁଣି ଦଶା ଏଡିବାକୁ
ସିଦ୍ଧି ମାୟୀ ରକ୍ତ ଦେଲେ ପ୍ରଥମରେ
ମାଟି ମାଆ ଦେବତାଙ୍କୁ' ।

'ମାଟିପୂଜା' ବା 'ଧରଣୀପେନୁ' ପୂଜା ଆଦିବାସୀମାନଙ୍କର ଏକ ପ୍ରଧାନ ପର୍ବ । କାରଣ–

'ଯୁଗ ଯୁଗ ଧରି ଏହି କାନ୍ଧମାନେ
ମାଟିକୁ ଆଶ୍ରୟ କରି
ରହି ଆସିଛନ୍ତି ବଣ ପାହାଡରେ
ବାଘ ଭାଲୁଙ୍କୁ ନଡରି'

(ଅଧିଶ୍ୱର ମଲ୍ଲିକ ରଚିତ ଏବଂ ଜଳନ୍ଧର କହଁର, ଫିରିଙ୍ଗିଆଙ୍କଠାରୁ ସଂଗୃହୀତ ।)

ତେଣୁ 'ମାଟି' ବା 'ଧରଣୀପେନୁ' ପ୍ରତି ସେମାନଙ୍କର ଏକ ସ୍ୱତନ୍ତ୍ର ଭୟ ଏବଂ ଭକ୍ତି ରହିଛି । ପ୍ରତ୍ୟେକ କନ୍ଧ ଗ୍ରାମରେ 'ଧରଣୀପେନୁ' ପାଇଁ ପୂଜା ପୀଠଟିଏ ସେମାନେ ବନେଇଥାନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ଦାର୍ନିପେନୁ ବା ଗ୍ରାମଦେବତୀ ପୂଜା ପରମ୍ପରା ସୃଷ୍ଟି ହେଉଥିବା ଦେଖାଯାଏ । ସେମାନେ ବାସ କରୁଥିବା ଅଞ୍ଚଳର ସୁରକ୍ଷା ପାଇଁ ସଦା ପ୍ରସ୍ତୁତ ରହିଥାନ୍ତି । ନିଜକୁ ବଳଶାଳୀ ଏବଂ ଶକ୍ତିଶାଳୀ କରିବା ପାଇଁ ସେମାନେ ମଦ, ମାଂସ ଭକ୍ଷଣ କରିଥାନ୍ତି । କିନ୍ତୁ ଭକ୍ଷଣ ପୂର୍ବରୁ ସେମାନେ ମାଟିମାଆକୁ ସମର୍ପଣ କରି ପ୍ରସାଦ ରୂପେ ଗ୍ରହଣ କରିଥାନ୍ତି ।

'ବିଶ୍ୱାସ ଥିଲା ଯେ କନ୍ଧମାନଙ୍କର
ମଦମାଂସ ନଖାଇଲେ
ଅନ୍ୟ ମୁଠା ସଙ୍ଗେ ଲଢି ନପାରିବେ
ଯୁଦ୍ଧ ଡାକରା ପାଇଲେ ।'

(ଅଧିଶ୍ୱର ମଲ୍ଲିକ)

କ୍ରମେ କ୍ରମେ ଦେବୀଙ୍କ ପ୍ରତୀକ ରୂପେ ବିଭିନ୍ନ ଗ୍ରାମରେ ଶିଳାଖଣ୍ଡ ବା କାଷ୍ଠ ସ୍ତମ୍ଭ ସ୍ଥାପନ କରି ବିଭିନ୍ନ ନାମରେ ପୂଜାର୍ଚ୍ଚନା ଆରମ୍ଭ ହେଲା । ଏହି ସ୍ତମ୍ଭ ପୂଜାରୁ ସ୍ତମ୍ଭେଶ୍ୱରୀ ବା ଖମ୍ଭେଶ୍ୱରୀଙ୍କ ସୃଷ୍ଟି ହେଉଥିବା ଅନୁମାନ କରାଯାଏ । ଏତଦ୍‌ବ୍ୟତୀତ କନ୍ଧମାନେ ନିଜ ରାଜାଙ୍କୁ ଯଥେଷ୍ଟ ସମ୍ମାନ ଦେଇଥାନ୍ତି । ଏହାର ଏକ ବଳିଷ୍ଠ ପ୍ରମାଣ ହେଉଛି ମାଆ ବରାଳ ଦେବୀ ବା ବରାଳୀଙ୍କୁ କନ୍ଧମାଳର ଅଧିଷ୍ଠାତ୍ରୀ ଦେବୀ ଭାବେ ଗ୍ରହଣ କରିବା । ମାଆ 'ବରାଳଦେବୀ' ହେଉଛନ୍ତି ଖେମୁଣ୍ଡି ରାଜାଙ୍କର ପରମାରାଧ୍ୟା ମାଆ 'ବଡରାହୁଳ' ଦେବୀ । ସମୟକ୍ରମେ 'ବଡ ରାହୁଳ ଦେବୀ' ପଦଟି ଅପଭ୍ରଂଶ ହେଉ ବା ଉଚ୍ଚାରଣଗତ ଭ୍ରମହେଉ 'ବରାଳଦେବୀ' ହୋଇଥିବା ଅନୁମାନ କରାଯାଏ । ଖେମୁଣ୍ଡି ଗଙ୍ଗବଂଶ ଯେତେବେଳେ ସାମ୍ରାଜ୍ୟ ବିସ୍ତାର କରି କନ୍ଧମାଳର ମହାସିଙ୍ଗି ପର୍ଯ୍ୟନ୍ତ ଅଧିକାର କଲେ । ମହାସିଙ୍ଗିଠାରେ ମାଆ 'ବଡ ରାହୁଳ' ଇଷ୍ଟଦେବୀଙ୍କୁ ସୀମା ସୁରକ୍ଷାକାରିଣୀ ଭାବେ ସ୍ଥାପନା କରି ପୂଜା କରୁଥିଲେ । ବୌଦ୍ଧ ରାଜା ବାରମ୍ବାର ଆକ୍ରମଣ କରି ସୁଦ୍ଧା ଖେମୁଣ୍ଡିସୀମା ଅତିକ୍ରମ କରି କନ୍ଧମାଳର ଖେମୁଣ୍ଡି ଶାସିତ ଅଞ୍ଚଳରେ ପ୍ରବେଶ କରିପାରି ନଥିଲେ । କିମ୍ବଦନ୍ତୀ କହେ ମାଆ ବରାଳଦେବୀଙ୍କ ଶରଣାପନ୍ନ ହୋଇ ବୌଦ୍ଧରାଜା, ଖେମୁଣ୍ଡିରାଜାଙ୍କୁ ପରାସ୍ତ କରିବାକୁ ସକ୍ଷମ ହୋଇଥିଲେ । ମାଆଙ୍କ ଆଶୀର୍ବାଦରୁ ବିଜୟଲାଭ କରିଥିବାରୁ ସେ ବୌଦ୍ଧଗଡକୁ ମାଆଙ୍କୁ ନେଇଯିବାକୁ ଇଚ୍ଛାପ୍ରକାଶ କରିଥିଲେ । ସୁଦନ କହଁରଙ୍କ ଦ୍ୱାରା ରଚିତ ପୁସ୍ତକ 'କୁଇଦିନା କନ୍ଧରାଜ୍ୟ'ରେ ଏ ସମସ୍ତ ବିଷୟ ଗୀତ ଆକାରରେ ବର୍ଣ୍ଣିତ ହୋଇଥିବା ଦେଖାଯାଏ । ଯଥା–

ତୁମର ମହିମା ଜାଣି ବଉଦ ରାଜନ<br>
ନେବା ପାଇଁ ସ୍ଥିର କଲେ ତାଙ୍କର ଭୁବନ<br>
ସୈନ୍ୟବଳ ଧରିଆସି ତୁମ୍ଭଙ୍କୁ ଆଣିଲେ<br>
ତେଜମାହା ଗ୍ରାମଠାରେ ଆଶ୍ରୟ ଘେନିଲେ<br>
ତେଜମାହା ଗ୍ରାମଠାରୁ ବିଦାୟ ଘେନିଲେ<br>
ବଲସକୁମ୍ପା ଗ୍ରାମରେ ଆଶ୍ରିତ ବାନ୍ଧିଲେ ।<br>
ବଲସ୍କୁମ୍ପାରୁ ଯାଇ ପୁରୁଣା କଟକେ<br>
ଆଶ୍ରିତ ଘେନିଲେ ମା'ଗୋ ବଉଦ ନିକଟେ<br>
ବଉଦ ଗଡରେ ଯାଇ ସ୍ଥାପନା କରିଲେ<br>
ବରାଳ ଦେବୀ ନାମରେ ନାମ ଖ୍ୟାତ ହେଲେ ।

କନ୍ଧମାଳରୁ ବୌଦ୍ଧ ଯିବା ସମୟରେ ରାଜା ଯେଉଁ ଯେଉଁ ସ୍ଥାନମାନଙ୍କରେ ଆଶ୍ରୟ ନେଇଥିଲେ, ଯଥା ତେଜମାହା (ବନ୍ଧଗଡ) ବଲସ୍କୁମ୍ପା ଏବଂ ପୁରୁଣା କଟକ ଇତ୍ୟାଦି ସ୍ଥାନମାନଙ୍କରେ ମାଆଙ୍କର ନିତ୍ୟ ପୂଜା ସମାପନ କରିଥିଲେ । ତେଣୁ ସେ ସମସ୍ତ ସ୍ଥାନକୁ ଅଦ୍ୟାବଧି ବରାଳଦେବୀଙ୍କ ପୂଜାପୀଠଭାବେ ବିଶ୍ୱାସ କରି ମାଆଙ୍କ ପ୍ରତିମୂର୍ତ୍ତି ସ୍ଥାପନ କରାଯାଇଛି । ସବୁଠାରୁ ବଡକଥା ହେଲା କନ୍ଧମାଳର ଅଧିଷ୍ଠାତ୍ରୀ ଦେବୀଭାବେ ସମଗ୍ର କନ୍ଧମାଳବାସୀ ମାଆଙ୍କୁ ଗ୍ରହଣ କରିଛନ୍ତି । ଏହାକୁ 'ରାଜାନୁଗତ ଧର୍ମ' ବୋଲି ମଧ୍ୟ କୁହାଯାଏ । ରାଜାଙ୍କ ଦ୍ୱାରା ପୂଜିତା ମାଆ ବରାଳ ଦେବୀ ସମଗ୍ର କନ୍ଧମାଳବାସୀଙ୍କ ଦ୍ୱାରା ମଧ୍ୟ ପୂଜିତା ହେଲେ । ମହାସିଙ୍ଗି, ତେଜମାହା (ବନ୍ଧଗଡ) ଏବଂ ବଲସ୍କୁମ୍ପାରେ ସେ 'ବରାଳ ଦେବୀ' ନାମରେ, ପୁରୁଣା କଟକରେ ମାଆ 'ଭୈରବୀ' ନାମରେ, ବୌଦ୍ଧଗଡରେ ମାଆ 'ସୁରସୁରୀ' ଏବଂ 'ବରାଳଦେବୀ' ନାମରେ ତଥା ବନ୍ଧୁଲିଗ୍ରାମରେ 'ଅନ୍ଧାର ବାଉତୀ' ନାମରେ ଦେବୀ ପୂଜା ପାଇଁ ଆସୁଛନ୍ତି ।

'ଜେନାମୁଠା କନ୍ଧମାନେ ପ୍ରତିମୂର୍ତ୍ତି ନେଲେ<br>
ବନ୍ଧୁଲି ଗ୍ରାମରେ ସ୍ଥାପି ପୂଜା ଆରମ୍ଭିଲେ<br>
ବନ୍ଧୁଲି ଗ୍ରାମରୁ ମାଗୋ ଗୋଛାପଡା ଆଣି<br>
ସ୍ଥାପନ କରିଣ ମାଗୋ ପୂଜନ୍ତି ଅକ୍ଷଣୀ'

(କୁଇଦିନା କନ୍ଧରାଜ୍ୟ–ସୁଦନ କହଁର)

ଏ ସମସ୍ତ ପୀଠରେ ଭିନ୍ନ ଭିନ୍ନ ଦିନରେ ମାଆଙ୍କର ଯାତ୍ରା ଏବଂ ପୂଜାର ବିଧାନ କରାଯାଇଛି । ବିଶେଷ କରି ମହାନବମୀ ତିଥିରେ ଏବଂ ଦଶହରା ଦିନ ମହାସିଙ୍ଗି ଏବଂ ବଲସ୍କୁମ୍ପାଠାରେ ମାଆଙ୍କର ପୂଜାପର୍ବ ପାଳନ କରାଯାଇଥାଏ । କିମ୍ବଦନ୍ତୀ ଅନୁଯାୟୀ ଅତୀତରେ କୁଆଡେ ମଣିଷ ବଳି ଦେବୀଙ୍କୁ ପୂଜା କରାଗଲା । ବର୍ତ୍ତମାନ ପ୍ରଶାସନ ତରଫରୁ ଏସବୁ ବଳି ନଦେବା ପାଇଁ ଲୋକଙ୍କୁ ସଚେତନ କରାଯାଉଛି ।

ଏତଦ୍‌ବ୍ୟତୀତ କନ୍ଧମାଳ ଜିଲ୍ଲାର ଅନ୍ୟାନ୍ୟ ସ୍ଥାନରେ ଭିନ୍ନ ଭିନ୍ନ ଦେବୀଙ୍କର ପୂଜା ପରମ୍ପରାକ୍ରମେ ଚାଲିଆସିଛି । ଯେପରି ଖଜୁରିପଡାରେ ମା' ସୁରାଦେଈ, ଶଙ୍କରାଖୋଲ ଏବଂ ଫିରିଙ୍ଗିଆରେ ମାଆ ପିତାବଳୀ, ତୁମୁଡିବନ୍ଧରେ ମାଆ ଭୀମାଭୈରବୀ, ମିଣିଆଠାରେ ମାଆ ପାଟଖଣ୍ଡା, ବାଲିଗୁଡା ଏବଂ ଦାରିଙ୍ଗିବାଡିଠାରେ ମଧ୍ୟ ମାଆ ପାଟଖଣ୍ଡା, ଫୁଲବାଣୀଠାରେ ମାଆ ନାରାୟଣୀ, ବ୍ରାହ୍ମଣୀଦେବୀ, ବ୍ୟାଘ୍ରଦେବୀ ଏବଂ ଗ୍ରାମଦେବତୀ, ନୂଆଗାଁରେ ଧୁଙ୍ଗିଆଦେବୀ, ବନ୍ଧୁଲିଗ୍ରାମରେ ମାଆ ଅନ୍ଧାରବାଉତୀ ଏବଂ ଗୋଛାପଡାରେ ମାଆ ବରାଳଦେବୀ ନାମରେ ଶକ୍ତି ପୂଜାର ବିଧାନ ରହି ଆସିଛି । ବିଭିନ୍ନ ସ୍ଥାନରେ ଶାରଦୀୟ ଦୁର୍ଗା ପୂଜା

ସହିତ ବାଗ୍‌ଦେବୀ, ଦକ୍ଷିଣକାଳୀ, ବେଡିକାଳୀ, ରୁଦ୍ରକାଳୀ, ପଶ୍ଚିମାକାଳୀ, ନରଘଣ୍ଟା ଇତ୍ୟାଦି ଦେବୀଙ୍କ ବିଭିନ୍ନ ସମୟରେ ପୂଜା କରାଯାଇଥାଏ ।

ଆଦିବାସୀ ଦେବୀଙ୍କ ପୂଜା ସମୟରେ ମନ୍ତ୍ର, ତନ୍ତ୍ର ବା ଯନ୍ତ୍ରର ଆବଶ୍ୟକ ନଥାଏ । ଅତି ଆପଣାର ଘର ଲୋକଙ୍କ ନିକଟରେ ବସି ଖାଇବାକୁ ଦେଲା ଭଳି, ସେମାନଙ୍କ କଥିତ ଭାଷାରେ କନ୍ଧମାନେ ମାଆଙ୍କୁ କହିଥାନ୍ତି– 'ମାଆ ପଣାପାଣି ଭୋଗରାଗ ଖାଇ ସନ୍ତୁଷ୍ଟ ହୋଇ ଥାଅ ଏବଂ ଆମ ଗାଁର ସମସ୍ତ ପିଲାଛୁଆ, ଗାଈବଳଦ, କୁକୁଡା, ଛେଳି ଏବଂ ଫସଲ ପ୍ରତି ଶୁଭଦୃଷ୍ଟି ରଖିଥା ।

ଏ ସମସ୍ତ ପରମ୍ପରାକୁ ଲକ୍ଷ୍ୟ କଲେ ଜଣାଯାଏ ଯେ କନ୍ଧମାଳ ଜିଲ୍ଲା ମଧ୍ୟ ଶକ୍ତି ପୂଜାର ଏକ ପ୍ରାଚୀନ କ୍ଷେତ୍ର ଅଟେ ।

ପଞ୍ଚାୟତ ମହାବିଦ୍ୟାଳୟ, ଫିରିଙ୍ଗିଆ,
କନ୍ଧମାଳ–୭୬୨୦୧୧

# ଅନନ୍ତ ଅସ୍ତିତ୍ୱ

**ଡକ୍ଟର କନକ ମଞ୍ଜରୀ ପଟ୍ଟନାୟକ**

ବିଛେଇ ଦେବି ବୈଶାଖରେ
ସବୁ ଧନ ରାଶି
ଭୋକିଲା ଦୁଃଖୀଙ୍କ
ଶୁଖିଲା ପଣତ ପରେ
ଯାବତୀୟ ପାପତୃଷ୍ଣାକୁ
ଉଜେଇଁ ଦେବି, ଏ ସନ
ଆଷାଢ ଆସିଲେ ।

ଶ୍ରାବଣରେ ଯେତେ ଲୁହ
ଝରିବ ଆଖିରୁ
ଧୋଉଥିବି ଅଦେଖା ପାଦକୁ
ଆକାଶରୁ ଝରୁଥିବା
ମେଘକୁ ଆଡେଇ ।

ଆଶ୍ୱିନର ଭସାଣିରେ
ଭସାଇ ଦେବି ମୋହ ମାୟା
ପାର୍ଥିବ ବନ୍ଧନ ।

ମାର୍ଗଶିର ମାସ ସାରା
ଆବାହନ କରୁଥିବି
ହେ କମଳାକାନ୍ତ !
ଗତି ମୁକ୍ତି ଦିହୁଡିରେ
ଆଲୋକିତ କର ମୋର
ଧୂସରିତ ଚଲାପଥ ।

ମାଘ ମାସ ଶୀତାର୍ତ୍ତ ବେଳାରେ
ଆର୍ତ୍ତ କଣ୍ଠ ଗାଉଥିବ
କୈବଲ୍ୟ କୈବଲ୍ୟ
ଫାଲ୍‌ଗୁନରେ ମନ ପକ୍ଷୀ
ଉଡୁଥିବ ଫଗୁ ପରି
ଶୂନ୍ୟରେ ବର୍ଣ୍ଣାଳି ଲେଖି ।

କାୟ–ମନ–ବଚନରେ ସାରା ବର୍ଷ
ଖୋଜୁଥିବି ତୁମ ପଥ,
ଯେଉଁଠି ରଖିଲେ ପାଦ
ଦିଶିପାରେ ତମ ଅନନ୍ତ ଅସ୍ତିତ୍ୱ ।

ପ୍ଲଟ୍ ନଂ– ୩୬୦୨/୫୭୩୧(୭)
୨ୟ ଫ୍ଲୋର, ଗଙ୍ଗା ଯମୁନା ରୋଡ୍
ପୁରୁଣା ଭୁବନେଶ୍ୱର–୭୫୧୦୦୨

❖ ❖ ❖

# ଢେଙ୍କାନାଳର ଗଜଲକ୍ଷ୍ମୀ ପୂଜା

ମନୋରଞ୍ଜନ ନନ୍ଦ

ସେହି ସର୍ବଶକ୍ତିମାନ ଶକ୍ତି ସ୍ୱରୂପିଣୀ ମା'ଙ୍କୁ ଲକ୍ଷ୍ମୀ ରୂପରେ ଗ୍ରହଣ କରି ଭକ୍ତମାନେ ମାତୃ ପୂଜାର ଗୁରୁତ୍ୱ ଦେଇ ଆସିଛନ୍ତି । ଓଡ଼ିଶାର ପୁରପଲ୍ଲୀରେ ମହାଲକ୍ଷ୍ମୀଙ୍କୁ ଧନଲକ୍ଷ୍ମୀ, ଗଜଲକ୍ଷ୍ମୀ, ଅଧିଲକ୍ଷ୍ମୀ, ବିଜୟଲକ୍ଷ୍ମୀ, ଧାନ୍ୟଲକ୍ଷ୍ମୀ, ଐଶ୍ୱର୍ଯ୍ୟ ଲକ୍ଷ୍ମୀ, ବୀରଲକ୍ଷ୍ମୀ, ସନ୍ତାନଲକ୍ଷ୍ମୀ ରୂପରେ ପୂଜା କରି ଆସିଛନ୍ତି । ଯେତେବେଳେ ଶରତ ସୁନ୍ଦରୀ କାଶତଣ୍ଡୀ ଫୁଲର ଗଜରା ପିନ୍ଧି ଧରାପୃଷ୍ଠକୁ ଆସେ, ସେତେବେଳେ ଯୁଆଡେ ଦେଖ ଧାନଫୁଲର ଖିଲିଖିଲି ହସ । ଶରତରାଣୀ ବିଦାୟ ଅବସରରେ ଅର୍ଥାତ୍ ହେମନ୍ତର ଆଗମନ ସମୟଠାରୁ ଶାରଦୀୟ ମହୋତ୍ସବ ଆରମ୍ଭ ହୁଏ । ଭକ୍ତଜନମାନେ ଗଜଲକ୍ଷ୍ମୀଙ୍କୁ ମର୍ତ୍ତ୍ୟପୃଷ୍ଠକୁ ଆବାହନ କରିବା ସହ ମା' ଗଜଲକ୍ଷ୍ମୀ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥାନ୍ତି ।

ଧରାପୃଷ୍ଠରେ ଆଶ୍ୱିନ ମାସର କୁମାର ପୂର୍ଣ୍ଣମୀର ସଂଧ୍ୟା ଏକ ନିଆରା ସଂଧ୍ୟା । ଏହି ଶାରଦୀୟ ସଂଧ୍ୟାରେ ଗାଁ ଦାଣ୍ଡ ଉତ୍ସବ ମୁଖର ହୋଇପଡେ । କୁଆଁରୀମାନଙ୍କ କୁମାର ଉତ୍ସବରେ ଚାରିଆଡେ ଶୁଭେ ହୁଳହୁଳି, ଶଙ୍ଖ, ଘଣ୍ଟଧ୍ୱନି । କୁମାରୀମାନଙ୍କ କଣ୍ଠରୁ ଭାସିଆସେ–

କୁଆଁର ପୁନେଇଁ ଜହ୍ନଲୋ ଫୁଲବଉଳ ବେଣୀ
କୃଷ୍ଣ ଯେତେବେଳେ ମଥୁରାକୁ ଗଲେ
କାନ୍ଦିଲେ ଯଶୋଦା ରାଣୀ ଗୋ
ଫୁଲ ବଉଳ ବେଣୀ ।'

କୁଆଁରୀ ଜହ୍ନର ଉଭାଳରେ, ନାନା ରକମର ପିଠାପଣା ଭିତରେ ଚାନ୍ଦପୂଜା କରି କୁମାରୀମାନେ ଭାସିଯାନ୍ତି ନାଚ, ଗୀତ ଓ ଖେଳକୁଦରେ । ପୁଚି ଖେଳି ଖେଳି କୁମାରୀମାନେ ଗାଇ ଉଠନ୍ତି–

ପୁଚିଲୋ ଯା ଯା ତୁ ଘୁଞ୍ଚିଲୋ
ଗହୀରି ବିଲରେ ମଇଁଷି

'ଯାଦେବୀ ସର୍ବଭୂତେଷୁ
ଶକ୍ତି ରୂପେଣ ସଂସ୍ଥିତା
ନମସ୍ତସୈ, ନମସ୍ତସୈ, ନମସ୍ତସୈ
ନମୋ ନମଃ ।'

ଆଦ୍ୟାଶକ୍ତି ମା'ଙ୍କ ପୂଜାର ପ୍ରାଚୀନତା ସମ୍ପର୍କରେ ପ୍ରମାଣ ନଥିଲେ ବି ସିନ୍ଧୁ ସଭ୍ୟତା କାଳରୁ ଏହା ପ୍ରଚଳିତ ବୋଲି ଅନେକ ମତ ପ୍ରଦାନ କରିଥାନ୍ତି । ସ୍ୱୟଂ ରାମଚନ୍ଦ୍ର ରାବଣକୁ ନିପାତ କରିବା ପାଇଁ ଶକ୍ତିପୂଜା କରିଥିବା ପ୍ରମାଣ ରହିଛି । ପୃଥିବୀର ପ୍ରତ୍ୟେକ ବସ୍ତୁରେ ଦୈବୀଶକ୍ତି ରହିଥିବା ଆମର ବିଶ୍ୱାସ । ଶକ୍ତି ହିଁ ବିଶ୍ୱ ପ୍ରସବିନୀ ଓ ବିଶ୍ୱ ସଂହାରିଣୀ । କାଳୀ, ଦୁର୍ଗା, ବିଶ୍ୱମୋହିନୀ, ଭୁବନେଶ୍ୱରୀ ଓ ମା' ଲକ୍ଷ୍ମୀ ରୂପରେ ଆଦ୍ୟାଶକ୍ତି ବିଦ୍ୟମାନ ହୋଇ ଭକ୍ତଜନଙ୍କୁ ସହାୟ ହୁଅନ୍ତି । ତନ୍ତ୍ର ସାହିତ୍ୟରେ ଶକ୍ତିର ମହାଶକ୍ତିକୁ ଦଶବିଦ୍ୟା ମାଧ୍ୟମରେ ଗୁରୁତ୍ୱ ଦେଇ ଆଲୋଚନା କରାଯାଇଛି । ଯଥାକ୍ରମେ କାଳୀ, ତାରା, ଷୋଡଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳାମୁଖୀ, ମାତଙ୍ଗୀ ଓ କମଳା । ଶାକ୍ତ ମତରେ ଶକ୍ତି ହିଁ ଜୀବଜଗତର ମୂଳ ଉତ୍ସ । ଶକ୍ତି ହିଁ ସୃଷ୍ଟିର କାରଣ । ଶକ୍ତିଯୁକ୍ତ ହୋଇ ଶିବ ନିଜର ସାମର୍ଥ୍ୟ ଦେଖାଇ ପାରନ୍ତି, ନଚେତ୍ ଶିବ ଶବରେ ପରିଣତ ହୋଇଥାନ୍ତି । ଶଙ୍କରାଚାର୍ଯ୍ୟ ଆନନ୍ଦ ଲହରୀରେ ପରିପ୍ରକାଶ କରି କହିଛନ୍ତି–

'ଶବଃ ଶକ୍ତ୍ୟାଯୁକ୍ତ ଯଦିଭବତି ଶକ୍ତି ପ୍ରଭବିତୁଂ
ନଚ ଦେବ ଦେବଃ ଖଳୁ କୁଶଳ ସ୍ପନ୍ଦିତୁମପି ।'

କଥିତ ଅଛି ଶକ୍ତିମୟୀଙ୍କ ଶକ୍ତି ଦେଖି ଶୁମ୍ଭାଶୁର ଆକ୍ଷେପ କରିବାରୁ ଦେବୀ ତଥା ମହାଶକ୍ତି ନିଜେ ଉତ୍ତର ଦେଇ କହିଛନ୍ତି–

'ଏକେବାହଂ ଜ୍ଗତ୍ୟତ୍ର ଦ୍ୱିତୀୟ କାମମାପରା ।'

ଧାନ କେଣ୍ଡି କେଣ୍ଡି ଖାଉଛି
ଉଡାଇ ଦେରେ ଭାଇ ବେହେରା
ବୋହୂ ବାପ ଘର ଯାଇଛି... ।

ଗାଁଗଣ୍ଡା, ବାଡି ଅଗଣା ସବୁଠି ଆନନ୍ଦର ଲହରୀ ଉଠୁଥିଲା ବେଳେ କୁମାରପୂର୍ଣ୍ଣମୀ ରାତ୍ରୀରେ ଗଜଲକ୍ଷ୍ମୀ ତଥା ମହାଲକ୍ଷ୍ମୀ ଭକ୍ତ ଦୁଆରେ ଉପସ୍ଥିତ ହୋଇ ଭକ୍ତଜନକୁ ଦର୍ଶନ ଦେଇଥାନ୍ତି । ତେଣୁ କୁହାଯାଇଛି–

'ନିଶୀଥେ ବରଦା ଲକ୍ଷ୍ମୀ କୋଜାଗର୍ତ୍ତୀତିଭାଷିନୀ
ତସ୍ମୈବିତ୍ତଂ ପ୍ରୟଛାମି ଅକ୍ଷୈଃ
କ୍ରୀଡାଂ କରୋତି ଯଃ ।'

ମହାଲକ୍ଷ୍ମୀଙ୍କ ସାନିଧ୍ୟ ପାଇଁ ଭକ୍ତଜନ ଚୁଡା ଓ ନଡିଆରେ ନୈବେଦ୍ୟ ଢାଳି ଐଶ୍ୱର୍ଯ୍ୟ ପ୍ରାପ୍ତିର କାମନା କରିଥାନ୍ତି । ତେଣୁ କୁହାଯାଇଛି–

'ନାରୀକେଳଦକମ୍ ପୀତ୍ୱା ଅକ୍ଷେ ଜାଗରଣ ନିଶି
ତସ୍ମୈବିତ୍ତଂ ପ୍ରୟଛାମି କୋଜାଗର୍ତ୍ତ ମହୀତଳେ ।'

ଦୟା, କ୍ଷମା, ଶାନ୍ତି, ଲଜ୍ଜା, ବୁଦ୍ଧି ଓ ବିଦ୍ୟା ପ୍ରଦାୟିନୀ ଶକ୍ତିସ୍ୱରୂପିଣୀ ମହାଲକ୍ଷ୍ମୀଙ୍କୁ ମାର୍ଗଶିର ମାସ ଗୁରୁବାର ତିଥିରେ ପୂଜା କରାଯାଉଥିବା ବେଳେ ବୈଶ୍ୟମାନେ କୁମାରପୂର୍ଣ୍ଣମୀ ତିଥିରୁ ମା'ଙ୍କୁ ଅଭିମନ୍ତ୍ରିତ କରି ପୂଜା କରିଥାନ୍ତି । ସେତେବେଳେ ସବୁରିଙ୍କଠାରେ ଭକ୍ତି ଭରା ଆକୁଳ ନିବେଦନର ସ୍ୱର ।

'ଲକ୍ଷ୍ମୀ ପଦ୍ମାଳୟା–ପଦ୍ମା କମଳା– ଶ୍ରୀ ହରପ୍ରିୟା
ଇନ୍ଦିରା ଲୋକମାତା– ମା' କ୍ଷୀରବ୍ଧା ତନୟା ରମା ।'

ପ୍ରଥମେ ଢେଙ୍କାନାଳରୁ ଗଜଲକ୍ଷ୍ମୀ ପୂଜା ପାଳନ କରାଯାଇଥିଲା ୧୯୨୮ ମସିହାରେ । ପରେ ପରେ ଅନୁଗୁଳ, କେନ୍ଦ୍ରାପଡା, ଚୌଦ୍ୱାର ପ୍ରଭୃତି ସ୍ଥାନରେ ପାଳନ କରାଗଲା । ପାଳିତ ହୋଇ ଆସିଥିବା ମୃଣ୍ମୟୀ ଦେବୀପୂଜା ୭ଦିନ ବଦଳରେ ଏବେ ୧୦ଦିନ ଧରି ଢେଙ୍କାନାଳଠାରେ ପାଳନ କରାଯାଉଛି । ଢେଙ୍କାନାଳ ସହର କୋଳାହଳମୟ ହେବା ସହ ୩୮ଟି ମୃଣ୍ମୟୀ ମେଢ ତିଆରି ହେଉଛି । ସହରରେ ଉଚ୍ଚକୋଟୀର ମୃଣ୍ମୟୀ ମୂର୍ତ୍ତି କରାଯିବା ସହ ତୋରଣ ଓ ଆଲୋକ ବ୍ୟବସ୍ଥା ମଧ୍ୟ ବେଶ୍ ଚିତ୍ତାକର୍ଷକ । ଚାରିଆଡେ ମେଲୋଡି, ସର୍କସ, ଚିଡିଆଖାନା ଓ ନାନା ଜାତିର ଦୋକାନ ବଜାର, ଚାର୍ଟ ଓ ଦହିବରାର ଚାହିଦା ବି ପ୍ରବଳ । ଭକ୍ତମାନେ ଜାକଜମକରେ ଶୃଙ୍ଖଳାର ସହ ବୁଲି ପୂଜା ଦେଖିବା ସହ ନିଜ ଚାହିଦା ଜିନିଷ ନୂଆଭାବେ ପଡିଥିବା ଖୋଲା ଦୋକାନମାନଙ୍କରୁ କିଣିଥା'ନ୍ତି । ଗ୍ରାମାଞ୍ଚଳରେ ଓ ଜିଲ୍ଲା ଭିତରେ ଲକ୍ଷ ଲକ୍ଷ ଭକ୍ତବୃନ୍ଦ । ଢେଙ୍କାନାଳରେ ହେଉଥିବା ଗଜଲକ୍ଷ୍ମୀ ପୂଜା ଦେଖିଲେ ଭକ୍ତିଭାବ ଆସିବା ସହ ପ୍ରମାଣ କରିଦେଇଥାଏ ଯେ ମା' ଲକ୍ଷ୍ମୀ ସଦାସର୍ବଦା ଶକ୍ତିଶାଳୀ । ତାଙ୍କର ସ୍ୱରୂପ ନାରୀ ଯେ ସଦାସର୍ବଦା ଶକ୍ତିମୟୀ ସମସ୍ତ ସୃଷ୍ଟିର ଆଧାର ବୋଲି ପ୍ରମାଣ କରି ଢେଙ୍କାନାଳବାସୀ ଏକ ନିଆରା ପରମ୍ପରା ସୃଷ୍ଟି କରିଛନ୍ତି । ଢେଙ୍କାନାଳ ଗଜଲକ୍ଷ୍ମୀ ପୂଜା ସଂପ୍ରତି ଏକ ଗଣପୂଜାରେ ପରିଣତ ହେବା ସହ ନିଜର କଳା, ସାହିତ୍ୟ, ସଂସ୍କୃତି ପରମ୍ପରାକୁ ଉଦ୍‌ଜୀବିତ କରି ସମଗ୍ର ପୃଥିବୀର ମାନଚିତ୍ରରେ ଏକ ମାଇଲଖୁଣ୍ଟ ସ୍ଥାପନ କରିବାରେ ସମର୍ଥ ହୋଇ ପାରିଛି । ତେଣୁ ଆସନ୍ତୁ, ସମସ୍ତେ ମିଶି ସମାଜର କଲ୍ୟାଣ ପାଇଁ ମା'ଙ୍କ ପାଖରେ ନିବେଦନ କରିବା ।

'ଶ୍ୱେତାମ୍ବର ଧରେ ଦେବୀ
ନାନାଳଙ୍କାର ଭୂଷିତେ
ଜଗଦ୍‌ସ୍ଥିତେ ମହାମାୟ
ମହାଲକ୍ଷ୍ମୀ ନମୋସ୍ତୁତେ ।'

ସମ୍ପାଦକ–'ବିଭାବନା'
ଜୟ ଗୋପାଳସାହି, ଢେଙ୍କାନାଳ

❖ ❖ ❖

# କେନ୍ଦୁଝରର ଘଟଗାଁ ଓ ମା’ ତାରିଣୀ

**ଶ୍ରୀନିବାସ ଆଚାର୍ଯ୍ୟ**

‘‘ଯେଉଁ ସ୍ଥାନେ ବିରାଜିତ ଶକ୍ତିଙ୍କ ଆସ୍ଥାନ,
ସେହି ସ୍ଥାନ ଶୋଭାପାଏ ଅତ୍ୟନ୍ତ ମହାନ୍ ।
ଜୟ ଶକ୍ତି ଧନ୍ୟ ତୋର ଗୁଣ ଓ ଗାରିମା
ସୁଶୋଭିତ କରିଥାଉ ସେହି ପୀଠ ମହିମା’’

ଶକ୍ତି (ଦେବୀ) ଯେଉଁ ସବୁ ସ୍ଥାନରେ ବିମଣ୍ଡିତା ହୋଇଥାନ୍ତି, ସେହି ସବୁ ପୀଠର ନାମ ମଧ୍ଯ ବିଶ୍ୱ ଦରବାରରେ ପ୍ରସିଦ୍ଧି ଲାଭ କରିଥାଏ । ତେଣୁ ଭକ୍ତ ଓ ଭଗବାନ ପରି ଦେବୀ ଓ ପୀଠର ନାମ ପରମ ଭକ୍ତମାନଙ୍କର ଭକ୍ତିଭାବକୁ ଦ୍ୱିଗୁଣିତ କରିପାରିଛି । ଏହାର ଦୃଷ୍ଟାନ୍ତ ବିଭିନ୍ନ ପୁରାଣ ଶାସ୍ତ୍ରରେ ବହୁଳ ରୂପେ ଉଲ୍ଲେଖ ଅଛି । ସାଧାରଣତଃ ଲୋକାଚାରରେ କୁହାଯାଏ କାକଟପୁରର ମା’ ମଙ୍ଗଳା, ଝଙ୍କଡର ମା’ ଶାରଳା, ତାଳଚେରର ମା’ ହିଙ୍ଗୁଳା । ସେଥିମଧ୍ୟରୁ କେନ୍ଦୁଝରର ମା’ ତାରିଣୀ ଅନ୍ୟତମ ।

୧୧୨୮ ଖ୍ରୀ.ଅ.ର ପୂର୍ବରୁ କେନ୍ଦୁଝର ବିଭିନ୍ନ ନାମରେ ନାମିତ ହୋଇଥିବାର ଇତିହାସ କୁହେ । କ୍ରମାନୁସାରେ ଏହି ଅଞ୍ଚଳର ନାମ ଅଟବୀ, ବିନ୍ଧ୍ୟାଟବୀ ଓ ଜେହୋର ନାମରେ ସୁପରିଚିତ ଥିଲା । କେତେକଙ୍କ ମତରେ ଏହି ରାଜ୍ୟର ରାଜାଙ୍କ ଉଆସରେ ଏକ କେନ୍ଦୁଗଛ ମୂଳରୁ ଝରଣା ଝରି ଆସିଥିବାରୁ ଏହାର ନାମ କେନ୍ଦୁଝର ହୋଇଅଛି । ପୌରାଣିକ ମତବାଦରୁ ଜଣାଯାଏ, ଏହି ସ୍ଥାନ ଏକ ଶୈବପୀଠ । ଏହି ସ୍ଥାନର ସନ୍ନିକଟରେ ପୁଣ୍ୟତୋୟା ବୈତରଣୀ ନଦୀ ପ୍ରବାହିତ । ଖ୍ରୀ.ପୂ. ସପ୍ତମ ଓ ଅଷ୍ଟମ ଶତାବ୍ଦୀରେ କେଶରୀ ଉପାଧିଧାରୀ ରାଜାମାନେ ୧୦୮ଟି ଶିବଲିଙ୍ଗ ସ୍ଥାପନ କରିଥିବାର କିମ୍ବଦନ୍ତୀ ପ୍ରଣିଧାନଯୋଗ୍ୟ । କେନ୍ଦୁଝର ନାମର ଯଥାର୍ଥତା ପ୍ରତିପାଦନ କଲେ ଜଣାଯାଏ ‘କ’ ଅର୍ଥ ମସ୍ତକ, ‘ଇନ୍ଦୁ’ ଅର୍ଥ ଚନ୍ଦ୍ର ଓ ‘ଝର’ ଅର୍ଥ ଗଙ୍ଗା (ମସ୍ତକ+ଚନ୍ଦ୍ର+ଗଙ୍ଗା)। ଏହି ଶବ୍ଦକୁ ସମନ୍ୱିତ କଲେ ଜଣାଯାଏ, ଯାହାର ମସ୍ତକରେ ଚନ୍ଦ୍ର ଓ ଗଙ୍ଗା ବିରାଜିତ, ସେ ହେଉଛି ଶିବ । ତେଣୁ ଏହି ଶବ୍ଦରୁ କେନ୍ଦୁଝର ଅଭିହିତ ହୋଇଅଛି । ମା’ ତାରିଣୀ ବିମଣ୍ଡିତା ଘଟ ଗାଁ ନାମର ଯଥାର୍ଥତା ପ୍ରତିପାଦନ କଲେ ଜଣାଯାଏ, ଏହି ସ୍ଥାନରେ ମା’ ଦେବୀ ତାରିଣୀଙ୍କର ଘଟ (ଶରୀର) ରହିଥିବାରୁ ଏହାର ନାମ ଘଟଗାଁ ହୋଇଅଛି । ଅତୀତରେ ଏହାର ନାମ ଅଟବୀ ରାଜ୍ୟ ଥିଲା । କାରଣ ଆଜି ସେଠାରେ ଅଟେଇ ନାମକ ଏକ ଜଙ୍ଗଲ ଅବସ୍ଥିତ । କାଳକ୍ରମେ ଅଟେଇ ଶବ୍ଦଟି ଅପଭ୍ରଂଶ ହୋଇ ଘଟଗାଁ ରୂପେ ରୂପାନ୍ତରିତ ହୋଇଅଛି ବୋଲି କେହି କେହି କୁହନ୍ତି । ଅନ୍ୟ ଏକ ମତରେ ଦେବୀଙ୍କର ଗଠନ ଶୈଳୀ ଘଟଗାଁ ହୋଇଅଛି ।

ଯୁଗ ଯୁଗ ଧରି ଦେବଦେବୀମାନେ ଦୁଷ୍ଟ ଦଳନ ଓ ସନ୍ଥ ପାଳନ ନିମନ୍ତେ ଆବିର୍ଭାବ ହୋଇଥିବାର କିମ୍ବଦନ୍ତୀ ବିଭିନ୍ନ ପୁରାଣ ଶାସ୍ତ୍ର ଓ ବେଦ ବେଦାନ୍ତରେ ବର୍ଣ୍ଣିତ ହୋଇଅଛି । ଆମ ଓଡ଼ିଶାରେ ଶାକ୍ତ ଧର୍ମ ତଥା ଶକ୍ତି ଉପାସନା ପ୍ରଚାର ଓ ପ୍ରସାର ଅନ୍ୟ ଧର୍ମଠାରୁ ବହୁଳ ଅଟେ । ଦେବୀମାନଙ୍କର ଆଶୀର୍ବାଦ, ଦୟା, କରୁଣା, ବିନା ଜୀବଜଗତ ବଞ୍ଚିବା ସମ୍ପୂର୍ଣ୍ଣ ଅସମ୍ଭବ । ତେଣୁ ଓଡ଼ିଶାରେ ଶକ୍ତି ଉପାସନାର ପରମ୍ପରା ଅତି ପ୍ରାଚୀନ । ସେଥିପାଇଁ ଓଡ଼ିଶାର ପ୍ରତ୍ୟେକ ଗ୍ରାମ, ସହର, ନଗର ତଥା ଗଳିକନ୍ଦିରେ ଶକ୍ତିମାନଙ୍କର ମନ୍ଦିର ଦୃଷ୍ଟିଗୋଚର ହୋଇଥାଏ । ସେହିସବୁ ଶକ୍ତିମାନଙ୍କ ମଧ୍ୟରେ କେନ୍ଦୁଝର ଘଟଗାଁ ମା’ ତାରିଣୀ ପୀଠ ଅନ୍ୟତମ । ଭକ୍ତ ଡାକିଲେ ଯେଉଁ ଦେବୀ ଉତ୍ତର ଦିଅନ୍ତି, ସେ ହେଉଛନ୍ତି ଘଟଗାଁ ସ୍ଥିତ ମା’ ତାରିଣୀ ଦେବୀ ।

ମା’ ତାରିଣୀ ଏକାଧାରରେ ଅସୀମ ଆଧ୍ୟାତ୍ମିକ ଶକ୍ତିର ଅଧିକାରୀ । ସେ ଚଣ୍ଡି, କାଳୀ, ଯୋଗମାୟା, ସାବିତ୍ରୀ, ଗାୟତ୍ରୀ, ଲକ୍ଷ୍ମୀ, ସରସ୍ୱତୀ, ଦୁର୍ଗା, ପାର୍ବତୀ, ମଙ୍ଗଳା, ବିମଳା ଇତ୍ୟାଦି । କାରଣ ସେ ଶକ୍ତି ଅନୁରୂପା କାର୍ଯ୍ୟ କରୁଥିବାରୁ ତାଙ୍କର ଅନେକ

ନାମ । ନିଜ ନାମର ସାର୍ଥକତା ଅନୁଯାଇ ସେ ବିଭିନ୍ନ ରୂପ, ନାମ, ବର୍ଣ୍ଣ, କଳା ଇତ୍ୟାଦିରେ ବିଭୂଷିତା ।

ଦେବୀ ଅନେକ ସଂକଟରୁ ରକ୍ଷା କରନ୍ତି ବୋଲି ତାଙ୍କ ନାମ ତାରିଣୀ ହୋଇଅଛି। ସେ ଚତୁର୍ଭୁଜା । ଉପର ବାମ ହସ୍ତରେ ଚକ୍ର, ତଳବାମ ହସ୍ତରେ ତ୍ରିଶୂଳ, ଉପର ଦକ୍ଷିଣ ହସ୍ତରେ ଖଡ଼୍‌ଗ ଓ ତଳ ଦକ୍ଷିଣ ହସ୍ତରେ ବରଦା ମୁଦ୍ରାରେ ପୂଜିତ । ପୂଜା ସମୟରେ ଓଁ ମା' ତାରିଣୀ ନମଃ, ବାସୁକୀ ଦେବୀ ନମଃ, ଚଣ୍ଡୀ ଚାମୁଣ୍ଡା ନମଃ, ନବକୋଟି କାତ୍ତାନୀ ନମଃ ଓ ଚୌଷଠୀ ଯୋଗିନୀ ନମଃ ।

ଜନତାର ଦୁଃଖ ମୋଚିନୀ, ବିଶ୍ୱବାସୀଙ୍କର ମଙ୍ଗଳ ଦାୟିନୀ ମା ଦେବୀ ତାରିଣୀ ଘଟଗାଁଠାରେ ଆବିର୍ଭାବର କିମ୍ବଦନ୍ତୀ ଆଜି ପର୍ଯ୍ୟନ୍ତ ଏକ ପ୍ରଶ୍ନବାଚୀ ରୂପେ ରହିଥିଲେ ମଧ୍ୟ କିନ୍ତୁ ବିଭିନ୍ନ ମତବାଦ ଆଜିର ଆଧ୍ୟାତ୍ମିକ ଇତିହାସ ପୃଷ୍ଠା ମଣ୍ଡନ କରିଅଛି । ମା' ତାରିଣୀ ଘଟଗାଁଠାରୁ ଆବିର୍ଭାବର ଅବ୍ୟବହିତ ପୂର୍ବରୁ କାଞ୍ଚି ରାଜ୍ୟର ଏକ ଘଞ୍ଚ ଅରଣ୍ୟରେ ଆସ୍ଥାନ ବିମଣ୍ଡିତ କରିଥିଲେ । ରାମାୟଣରେ ବର୍ଣ୍ଣିତ ପରମପୁରୁଷ ଶ୍ରୀରାମଙ୍କର ବନବାସ ସମୟରେ ଲଙ୍କାପୁରୀର ପ୍ରବଳ ପ୍ରତାପୀ ରାଜା ରାବଣ ଶ୍ରୀରାମଙ୍କ ପତ୍ନୀ ସୀତାଙ୍କୁ ଅପହରଣ କରିନେଇଥିଲେ । ପତ୍ନୀହରା ଶ୍ରୀରାମ ସୀତାଙ୍କ ଅନୁପସ୍ଥିତିରେ ଅତ୍ୟନ୍ତ ମ୍ରିୟମାଣ ହୋଇପଡ଼ିଥିଲେ । ରାବଣର ଏତାଦୃଶ୍ୟ କାର୍ଯ୍ୟରେ ପ୍ରଭୁ ଶ୍ରୀରାମ ଯୁଦ୍ଧର ଡାକରା ଦେଇଥିଲେ । ରାବଣର ନିପାତ ଓ ସୀତାଙ୍କୁ ଉଦ୍ଧାର କରିବା ପାଇଁ ପ୍ରଭୁ ପାଦରେ ଭ୍ରମଣ କରି ବହୁ କଷ୍ଟ ସ୍ୱୀକାର କରିଥିଲେ । ପଥ ହରା ପଥିକ ପରି ଶ୍ରୀରାମ ଯୁଦ୍ଧ କରିବା ପୂର୍ବରୁ ମା' ଦୁର୍ଗାଙ୍କୁ ପ୍ରାର୍ଥନା କରିଥିଲେ । ମା' ଦୁର୍ଗା ତାଙ୍କ ସମ୍ମୁଖରେ ଉଭାହେବା ସମୟରେ ପ୍ରଭୁ ଚକ୍ଷୁ ଦୁଇଟି ଉନ୍ମୁକ୍ତ କରିଦେଲେ । ଫଳରେ ମା' ଦୁର୍ଗା ଅନ୍ତର୍ଦ୍ଧାନ ହୋଇ ଗୋଟିଏ ଶିଳାରେ ରୂପାନ୍ତରିତ ହୋଇଯାଇଥିଲେ । ଶ୍ରୀରାମଙ୍କ ଦୁଃଖ ମା' ତାରଣ କରିଥିବାରୁ ସେହିଦିନଠାରୁ ମା' ତାରିଣୀ ନାମରେ ଅଭିହିତ ।

୧୪୮୦ ଖ୍ରୀ.ପୂ.ରେ ଶ୍ରୀକ୍ଷେତ୍ରର ଗଜପତି ମହାରାଜା ପୁରୁଷୋତ୍ତମଦେବ କାଞ୍ଚି ରାଜାଙ୍କ ଅପମାନର ପ୍ରତିଶୋଧ ନେବା ପାଇଁ ଯୁଦ୍ଧର ଡାକରା ଦେଇ ପ୍ରଥମ ଯୁଦ୍ଧରେ ପରାସ୍ତ ହୋଇଥିଲେ । କେନ୍ଦୁଝରର ରାଜା ତ୍ରିଲୋଚନ ଭଞ୍ଜଙ୍କର ସୁପୁତ୍ର ଗୋବିନ୍ଦ ଭଞ୍ଜ ଗଜପତିଙ୍କର ପରମ ବିଶ୍ୱାସୀ ଓ ଯୁଦ୍ଧର ସେନାପତି ମଧ୍ୟ ଥିଲେ । ପୁନରାୟ ଯୁଦ୍ଧ ପୂର୍ବରୁ ଶ୍ରୀଜଗନ୍ନାଥ ଓ ବଡ଼ଭାଇ ବଳଭଦ୍ରଙ୍କର ଆଶୀର୍ବାଦ ଓ ଗୋବିନ୍ଦ ଭଞ୍ଜଙ୍କର ବଳିଷ୍ଠ ରଣ କୌଶଳ ବଳରେ ଗଜପତି ଗୋବିନ୍ଦଙ୍କ ଉପରେ ଅତ୍ୟନ୍ତ ପ୍ରୀତ ହୋଇ କାଞ୍ଚି ରାଜ୍ୟର ଦାୟିତ୍ୱ ଅର୍ପଣ କରିଥିଲେ । ଗୋବିନ୍ଦ ଭଞ୍ଜ ଶକ୍ତି ପୂଜାର ପରମ ଭକ୍ତ ଥିଲେ ଓ ସେଠାରେ ତାରିଣୀଙ୍କୁ ଆରାଧନା କରୁଥିଲେ । ତାରିଣୀଙ୍କୁ କେନ୍ଦୁଝର ଆଣିବା ପାଇଁ ମନ ବଳାଇଥିଲେ । ପିତା ତ୍ରିଲୋଚନଙ୍କ ମୃତ୍ୟୁ ପରେ ଗୋବିନ୍ଦ ଭଞ୍ଜ କେନ୍ଦୁଝର ପ୍ରତ୍ୟାବର୍ତ୍ତନ କରିଥିଲେ । ଏକ ସ୍ୱପ୍ନାଦେଶ ମାଧ୍ୟମରେ ଯୁବରାଜଙ୍କ ସହିତ ମା' ତାରିଣୀ କେନ୍ଦୁଝର ଯିବା ପାଇଁ ଏକ ସର୍ତ୍ତ ଆରୋପ କରିଥିଲେ । ସର୍ତ୍ତଟି ଥିଲା, ଗୋବିନ୍ଦ ଭଞ୍ଜ ଅଶ୍ୱାରୋହଣ କରି କେନ୍ଦୁଝରକୁ ଫେରିବା ଅବସରରେ ମା' ଅଶ୍ୱ ପଛେପଛେ ତାଙ୍କ ଗୋଡ଼ର ନୁପୂର ରୁଣୁଝୁଣୁ କରି ଯିବେ । ସେହି ସ୍ଥାନରେ ଦେବୀ ବିରାଜିତ ହୋଇ ପୂଜା ଅର୍ଚ୍ଚନା ହେବେ । ସ୍ୱପ୍ନାଦେଶ ଅନୁସାରେ ଯୁବରାଜ ଅଶ୍ୱ ଆରୋହଣ କରି ଆସିବା ବାଟରେ ଘଟଗାଁଠାରେ ଅତ୍ୟନ୍ତ କ୍ଳାନ୍ତ ଅନୁଭବ କରି ଅଶ୍ୱରୁ ଓହ୍ଲାଇ ପଛକୁ ଚାହିଁଦେଲେ । ତେଣୁ ଦେବୀ ସେଠାରେ ଘଟ ପରିବର୍ତ୍ତନ କରି ଶିଳା ଖଣ୍ଡରେ ରୂପାନ୍ତରିତ ହୋଇଗଲେ । ଅନ୍ୟ କେତେକଙ୍କ ମତରେ ଦେବୀ ସେଠାକାର ନୈସର୍ଗିକ ଶୋଭାରେ ମୁଗ୍ଧ ହୋଇ ରହିବାକୁ ଚାହୁଁ ଥିବାରୁ ଯୁବରାଜଙ୍କୁ ଦେବୀଙ୍କର ରୁଣୁଝୁଣୁ ଶବ୍ଦ ଶୁଣାଯାଇନଥିଲା । ଯୁବରାଜ ସେହିଦିନଠାରୁ ସେଠାରେ ଦେବୀଙ୍କ ପୂଜାଅର୍ଚ୍ଚନା କରିଥିଲେ, ଯାହାକି ଆଜି ମଧ୍ୟ ହେଉଅଛି ।

ଅନ୍ୟଏକ କିମ୍ବଦନ୍ତୀରୁ ଜଣାଯାଏ ଯେ, ଆଜକୁ ପ୍ରାୟ ଶହ ଶହ ବର୍ଷ ତଳେ ଘଟଗାଁଠାରେ ଗୋଟିଏ କୋଳି ଗଛରୁ କୋଳି ଖାଇବା ପାଇଁ ଏକ ଶବର ଗଛରେ ଚଢ଼ି ଥିଲା ଓ ତାର ଦୁଇ ପୁଅ ଗଛର ତଳେ ଥିଲେ । ଶବରଟି କୋଳିଖାଇ ଅଇଁଠା ମଞ୍ଜି ତଳକୁ ପକାଉଥିଲା ଓ ତଳେ ମଧ୍ୟ ତାର ଦୁଇପୁଅ କୋଳି ଖାଉଥିଲେ । ଗଛ ତଳେ ଲୁକାୟିତ ଅବସ୍ଥାରେ ଥିବା ମା' ଶକ୍ତିଙ୍କ ଉପରେ ସେହି ଅଇଁଠା କୋଳି ପଡୁଥିଲା । ଫଳରେ ମା' କ୍ରୋଧାନ୍ୱିତ ହୋଇ ଏକ ସର୍ପରୂପ ଧାରଣ କରି ଶବରର ଦୁଇପୁଅକୁ ଗିଳି ପକାଇବା ଅବସରରେ ସେ ଗଛରୁ ଓହ୍ଲାଇ ଏକ ଖଡ଼୍‌ଗରେ ସର୍ପର ମୁଣ୍ଡକୁ ଆଘାତ ଦେଇ ପୁଅମାନଙ୍କୁ ରକ୍ଷା କରିଥିଲେ । ସର୍ପଟି ସେଠାରୁ ଅନ୍ତର୍ଦ୍ଧାନ ପୂର୍ବକ ସ୍ୱପ୍ନାଦେଶ ମାଧ୍ୟମରେ ତାରିଣୀ ଦେବୀଙ୍କୁ ସେଠାରେ ପୂଜା କରିବା ପାଇଁ ସୂଚନା ଦେଇଥିଲେ । ଆଉ ମଧ୍ୟ ମା' ଏକ ଶିଳାଖଣ୍ଡରେ ରୂପାନ୍ତରିତ ହୋଇଯାଇଥିଲେ । ଶବରଟି ସର୍ପକୁ ଆଘାତ ଦେଇଥିବାରୁ ବହୁତ ଅନୁତାପ କରି ଦେବୀଙ୍କର ଜଣେ ପରମଭକ୍ତ ରୂପେ ପୂଜାଅର୍ଚ୍ଚନା କରିଥିଲେ । ଏହାର ନିଦର୍ଶନ ସ୍ୱରୂପ ଆଜିବି ମା'ଙ୍କ ନିକଟରେ ପଥରରେ ନିର୍ମିତ ଶବର ଓ ତା'ର ଦୁଇପୁଅ ବିରାଜିତ । ଶବରର ଖଣ୍ଡା ଚୋଟର ଆଘାତର ଏକ ପଥରରେ ନିର୍ମିତ ମା' ଦେବୀଙ୍କର ଆସ୍ଥାନ ପଛପଟେ ବିଦ୍ୟମାନ ।

ବର୍ତ୍ତମାନ ଓ ଅତୀତର ମନ୍ଦିରର ଗଠନଶୈଳୀ, ପୀଠର ପରିବେଶ, ପୂଜାପଦ୍ଧତି ଓ ଦେବୀଙ୍କର ମହିମା ସମ୍ପର୍କରେ ଆଲୋଚନା

କଲେ ଏହା ଆକାଶ ପାତାଳ ପରି ପୃଥକ ଅଟେ । ଦୀର୍ଘ ଦୁଇ ଶତାବ୍ଦୀ ତଳେ ଏହି ପୀଠଟି ଥିଲା ଘଞ୍ଚଜଙ୍ଗଲରେ ଆବୃତ । ଶିଆଳୀ ଲତା ତଳେ ମା'ଙ୍କ ପୀଠଟି ଆଚ୍ଛନ୍ନ । ତେଣୁ ତାଙ୍କ ପାଖକୁ ଯିବା ଭକ୍ତମାନଙ୍କ ପାଇଁ ଥିଲା ବିପଦଶଙ୍କୁଳ । ତେଣୁ ଭକ୍ତମାନେ ଏହାର ଅନତିଦୂରରେ ଥିବା ଦ୍ୱାରଶୁଣୀଙ୍କ ନିକଟରେ ଭୋଗ ଅର୍ପଣ କରୁଥିଲେ । ସର୍ପ ଓ ହିଂସ୍ରଜନ୍ତୁଙ୍କ ଭୟରେ ପୂଜକ ଦିନକୁ ଥରେ ପୂଜା କରି ସନ୍ଧ୍ୟା ପୂର୍ବରୁ ସେଠାରୁ ପଳାଇ ଯାଉଥିଲେ । କିନ୍ତୁ ଆଜି ଏହି ପୀଠର କଳେବର ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇ ଅପରୂପା ସୌନ୍ଦର୍ଯ୍ୟରେ ବିମୋହିତ ହେଉଅଛି । ଏହି ପୀଠଟି କେନ୍ଦୁଝରଠାରୁ ଦକ୍ଷିଣକୁ ୪୫ କି.ମି. ଦୂରରେ ଜାତୀୟ ରାଜପଥ ପାର୍ଶ୍ୱରେ ଅବସ୍ଥିତ। ଏହି ମନ୍ଦିରର ଗଠନ ଶୈଳୀ ଓଡ଼ିଶାର ଅନ୍ୟାନ୍ୟ ମନ୍ଦିରଠାରୁ ସ୍ୱତନ୍ତ୍ର ଅଟେ । ମନ୍ଦିରର ଶୀର୍ଷ ଅଂଶଟି ମନ୍ଦିର ପରି ହୋଇଥିଲେ ମଧ୍ୟ ଗର୍ଭଗୃହଟି ସମ୍ପୂର୍ଣ୍ଣ ଖୋଲା । ଏହା ପ୍ରଥମେ ପିତ୍ତଳ ରେଲିଂଦ୍ୱାରା ଆବୃତ ହୋଇଅଛି । ଏହା ଚାରୋଟି ପରିସରରେ ବିଭକ୍ତ ହୋଇଅଛି । ସେହି ପିତ୍ତଳ ରେଲିଂକୁ ସଂଲଗ୍ନ କରି ଭିତରକୁ ଅଳ୍ପ ଉଚ୍ଚରେ ମାର୍ବଲ ଖଚିତ କାନ୍ଥ ଓ ଏହାର ଉପରେ ପିତ୍ତଳଖୁମ୍ବ ଦ୍ୱାରା ଆଚ୍ଛନ୍ନ । ପ୍ରଥମ ପରିସରଠାରୁ ଭିତରକୁ ୪ଫୁଟ ବ୍ୟବଧାନରେ ସେପରି ବାଡ ଦ୍ୱାରା ଆବୃତ ଦ୍ୱିତୀୟ ପରିସର । ଦ୍ୱିତୀୟ ପରିସରଠାରୁ ପ୍ରାୟ ୧୦ଫୁଟ ବ୍ୟବଧାନରେ ୩ୟ ପରିସରଟି ଅବସ୍ଥିତ । ଏହାର ଚଟାଣ ଶଙ୍ଖ ମଲ୍ ମଲ୍ ପଥରରେ ଖଚିତ । ତତ୍‌ପରେ ୪ର୍ଥ ପରିସରଟି ଅଳ୍ପ ଉଚ୍ଚରେ ଓ ପ୍ରସ୍ଥ ପ୍ରାୟ ୧୨ଫୁଟ । ଏହାର ପ୍ରାୟ ୨୦ଫୁଟ ଉଚ୍ଚରେ ଏକ ସିମେଣ୍ଟ କଂକ୍ରିଟ ଛାତ । ଏହି ଛାତରେ ଫିକା ଲାଲରଙ୍ଗର ଟାଇଲିମାନ ଖଞ୍ଜା ଯାଇଅଛି । ଛାତର ୪ଟି ଦିଗରେ ଖଞ୍ଜାଯାଇଅଛି ଅମଳକ, ଖପୁରୀ, କଳସ ଓ ବେକୀ ଅର୍ଦ୍ଧଶତକ ମସ୍ତକ, ଯାହାକି ସୃଷ୍ଟି କରିଅଛି ଏକ ଆଧାତ୍ମିକ ପରିବେଶ । କିନ୍ତୁ ଚାରିପଟ ଖୋଲା । ଏହାର ଉତ୍ତର ଦିଗରେ ପ୍ରାୟ ୮ଫୁଟରେ ଅବସ୍ଥିତ ଏକ ବର୍ଗାକାର କ୍ଷେତ୍ରରେ ମା'ଙ୍କ ପୂଜାମଣ୍ଡପ ଥିବାବେଳେ, ସମ୍ମୁଖରେ ଭକ୍ତମାନଙ୍କର ସମାବେଶର ସ୍ଥାନ । ଦକ୍ଷିଣ ଦିଗକୁ ମୁହଁ କରି ଆସ୍ଥାନ ମଣ୍ଡିତ ହୋଇଛନ୍ତି ଅରଣ୍ୟବାସିନୀ ଓ ସର୍ବକଲ୍ୟାଣ ଦାୟିନୀ ମା' ତାରିଣୀ ଠାକୁରାଣୀ । ମା'ଙ୍କ ସନ୍ନିକଟ ଖୋଲା ସ୍ଥାନରେ ମାର୍ବଲ ପଥରର ସ୍ଥାନେ ସ୍ଥାନେ କୁସୁମ, ମନ୍ଦାର, ଅସାରୁଆ, ମଧୁମାଳତୀ,ସାହାଡା ଇତ୍ୟାଦି ଗଛମାନେ ଶୋଭା ପାଉଅଛି ।

ଆରାଧ୍ୟ ଦେବୀ ଠାକୁରାଣୀ ତାରିଣୀଙ୍କ ମୂର୍ତ୍ତି କୌଣସି ଶିଳ୍ପୀ ଧାତୁ ପଥରରେ ଗଢି ନାହାନ୍ତି । ପ୍ରାୟ ୨୦ ଇଞ୍ଚ ଉଚ୍ଚତାର ଶିଳାଖଣ୍ଡରେ ଫୁଟି ଉଠିଛି ଦେବୀଙ୍କର ଅଙ୍ଗପ୍ରତ୍ୟଙ୍ଗ ଓ ଭାସ୍କର୍ଯ୍ୟ କୌଶଳ । କେବଳ ଏହି ଶିଳା ଦେହରେ ଲଗାଯାଇଛି, ଦୁଇଟି ଚକ୍ଷୁ ଓ ଭୂଲତା । ଏତଦ୍‌ବ୍ୟତୀତ ରଙ୍ଗଦ୍ୱାରା ଚିତ୍ରିତ ହୋଇଅଛି ଜିଭ ଓ ମସ୍ତକରେ ଶୋଭା ପାଉଅଛି ଏକ ରୂପାର ସୁନ୍ଦର କିରୀଟ । ମା'ଙ୍କ ସମ୍ମୁଖରେ ୮ଇଞ୍ଚ ଉଚ୍ଚତାର ଦୁଇଟି ପାଷାଣରେ ନିର୍ମିତ ସିଂହ ମୂର୍ତ୍ତି ଓ ପାଶ୍ଚ୍ୟାତରେ ପିତ୍ତଳ ରେଲିଂ ଘେରା କଳାମୁଗୁନି ପଥରର ସିଂହ ମୂର୍ତ୍ତି ଶୋଭା ପାଉଛନ୍ତି । ଦେବୀଙ୍କ ପାଖରେ ଥିବା ଡମ୍ବୁଗୁଡୁ ଗଛ ନିକଟରେ ଥୁଆ ହୋଇଅଛି ତ୍ରିଶୂଳ, ବାନା, ଛୋଟଛୋଟ ପଥର ଓ ପିତ୍ତଳର ଘୋଡା । ମା'ଙ୍କଠାରୁ ପ୍ରାୟ ୩୦୦ଫୁଟ ଦୂରରେ ମା' ଦ୍ୱାରଶୁଣୀ ଦେବୀଙ୍କ ଆସ୍ଥାନ । ଅତୀତରେ ତାରିଣୀଙ୍କ ପୂଜାଅର୍ଚ୍ଚନା ଏହି ପୀଠରେ ହେଉଥିଲା । ବର୍ତ୍ତମାନ ଭକ୍ତମାନେ ଓଡ଼ିଶା କାହିଁକି ପଡୋଶୀ ରାଜ୍ୟରୁ ବସ୍ତା ବସ୍ତା ହୋଇ ହଜାର ହଜାର ନଡିଆ ବସ, ଟ୍ରକ୍, କାର, ଅଟୋ ଚାଳକମାନଙ୍କ ଦ୍ୱାରା ଆସୁଅଛି, ଯାହାକି ଏହି ପୀଠରେ ଭଙ୍ଗା ଯାଉଅଛି ।

ତାରିଣୀ ପୀଠର ଏକ ମୁଖ୍ୟ ବୈଶିଷ୍ଟ୍ୟ ହେଉଛି, ଏଠାକାର ପୂଜକ ଆଦିବାସୀ ଓ କନ୍ଧ ସମ୍ପ୍ରଦାୟର । ଏମାନଙ୍କୁ ଦେହୁରୀ କୁହାଯାଏ । ଦେବୀ ଶାବର ମତରେ ପୂଜିତା । ବ୍ରାହ୍ମଣମାନଙ୍କ ପରି ଦେହୁରୀ ପୂଜକମାନେ ପଇତା ଉପନୟନ କରିଥାନ୍ତି । ସେମାନେ ନୈବେଦ୍ୟରେ ଚକୁ ଧରିଥାନ୍ତି । ସେହି ପ୍ରସାଦକୁ ବ୍ରାହ୍ମଣମାନେ ସେବନ କରିଥାନ୍ତି । ଏହି ପୀଠଟିକୁ ମହାମିଳନର ପୀଠ ବୋଲି କୁହାଯାଇଥାଏ । କାରଣ ବ୍ରାହ୍ମଣଧର୍ମ ଓ ଶାବର ଧର୍ମର ମିଳନ ଏଠାରେ ହୋଇଥାଏ । ତେଣୁ ଜାତି, ବର୍ଣ୍ଣ, ସାନ, ବଡର ବାଛବିଚାର ଦୂର ହୋଇ ଏଠାରେ ଏକ ଭାଇଚାରା ପରମ୍ପରା ସୃଷ୍ଟି ହୋଇଅଛି । କେନ୍ଦୁଝର ରାଜାଙ୍କ ଦ୍ୱାରା ଦେହୁରୀମାନଙ୍କୁ ୧୦ଏକର ୪୪ଡିସିମିଲ ଭୂ ସମ୍ପତ୍ତି ଜାଗିରୀ ରୂପେ ଖଞ୍ଜା ଯାଇଅଛି । ତାରିଣୀ ଦେବୀଙ୍କର ଜଣେ ପରମ ଭକ୍ତ ତତ୍କାଳୀନ କେନ୍ଦୁଝରର ଅତିରିକ୍ତ ଜିଲ୍ଲାପାଳ ଶ୍ରୀଯୁକ୍ତ ଜୟନ୍ତ ନାରାୟଣ ପଣ୍ଡା ମା'ଙ୍କ ନାମରେ ୭ଏକର ଜମି ବନ୍ଦୋବସ୍ତ କରିଥିଲେ ମଧ୍ୟ ଆଜି ମାତ୍ର ୮୪ ଡିସିମିଲ୍ ଜମି ଅଛି । ପ୍ରଥମ ଅବସ୍ଥାରେ ସ୍ଥାନୀୟ ବାସିନ୍ଦା ସ୍ୱର୍ଗତ ଭୀମସେନ ରାଉତଙ୍କ ନେତୃତ୍ୱରେ ପୀଠର ଜଙ୍ଗଲକୁ ସଫା କରାଯାଇ ମନ୍ଦିରର ପୂଜାଅର୍ଚ୍ଚନା କାର୍ଯ୍ୟ ଦୈନ୍ୟଦିନ ସମ୍ପାଦନ ହୋଇଥିଲା । ଦିନକୁ ଥରେ ମାତ୍ର ଭୋଗ ଅର୍ପଣ ହେଉଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ଦିନକୁ ଦୁଇଥର ପୂଜାଅର୍ଚ୍ଚନା ହେଉଅଛି । ତତ୍‌ପରେ ନିକଟସ୍ଥ ୭/୮ ଖଣ୍ଡ ଗ୍ରାମଅଧିବାସୀ ଓ ସରକାରୀ କର୍ମଚାରୀମାନଙ୍କର ସହାୟତାରେ ଠାକୁରାଣୀଙ୍କର ଉନ୍ନୟନମୂଳକ କାର୍ଯ୍ୟ ହୋଇଥିଲା । ଦେବୀଙ୍କର ଅଲୌକିକ ଶକ୍ତି ଓ ମହିମା ଓଡ଼ିଶାର କୋଣ ଅନୁକୋଣରେ ତଥା ରାଜ୍ୟବାହାରେ ପ୍ରଚାର ଓ ପ୍ରସାର ହୋଇ ମନ୍ଦିରର କଳେବରକୁ

ସମ୍ପୂର୍ଣ୍ଣ ପରିବର୍ତ୍ତନ କରାଇପାରିଛି । ଦେବୀଙ୍କ ପୀଠରେ ପଶୁବଳୀ ପ୍ରଥା ପ୍ରଚଳନ ଥିଲେ ମଧ୍ୟ କିନ୍ତୁ ୧୯୭୫ ମସିହାଠାରୁ ଏହି ପ୍ରଥା ବନ୍ଦ ହୋଇଯାଇଛି । ୧୯୭୯ ମସିହାଠାରୁ ବହୁଳ ସଂଖ୍ୟାର ଭକ୍ତ ସମାବେଶ ହେତୁ ଅନ୍ନ ଭୋଗର ବ୍ୟବସ୍ଥା ଖଞ୍ଜା ଯାଇଅଛି ।

ବାର ମାସରେ ତେର ପର୍ବ ପରି ଏଠାରେ ବାର୍ଷିକ ପର୍ବଗୁଡ଼ିକ ବିଧିବିଧାନ ଅନୁସାରେ ବୈଦିକ ନୀତିରେ ପାଳନ କରାଯାଇଥାଏ । ଦୈନିକ ହଜାର ହଜାର ଭକ୍ତମାନଙ୍କର ମାନସିକ ପୂଜା ସମ୍ପାଦନା ହୋଇଥାଏ । ଆଷାଢ଼ ମାସରେ ଶେଷ ଗୁରୁବାର ପାଳନ କରାଯାଇଥାଏ । ଏହିଦିନ ମନ୍ଦିରଟି ଦିନସାରା ବନ୍ଦ ରହିଥାଏ । ସନ୍ଧ୍ୟା ସମୟରେ ପହଡ ଖୋଲି ସକାଳ ଧୂପ ହୋଇଥାଏ । ରାତିର ଶେଷଅର୍ଦ୍ଧକ ପର୍ଯ୍ୟନ୍ତ ବୈଦିକ ନୀତିରେ ହୋଇଥାଏ । କେବଳ ମୁଖ୍ୟ ପୂଜକ ଦ୍ୱାରା ଏହି ପୂଜା ହୋଇଥିବାର ବିଧି ସ୍ୱତନ୍ତ୍ର ଅଟେ । ଏତଦ୍‌ବ୍ୟତୀତ ମହାବିଷୁବ ସଂକ୍ରାନ୍ତି ଦିନଟି ମଧ୍ୟ ଦେବୀଙ୍କର ଅନ୍ୟ ଏକ ବଡପର୍ବ ଅଟେ । ଦୀର୍ଘ ସାତଦିନ ଧରି ଲକ୍ଷ ଲକ୍ଷ ଭକ୍ତମାନଙ୍କର ଗହଣରେ ମହାଆଡମ୍ବର ପୂର୍ଣ୍ଣ ଓ ଯାକଯମକରେ ପାଳିତ ହେବାର ବିଧିବିଧାନ ମୁଖ୍ୟ ଆକର୍ଷଣ ଅଟେ। ସାତଦିନ ଧରି ଏଠାରେ ହୋମଯଜ୍ଞ, ଚଣ୍ଡୀପାଠ, ଭାଗବତ ପାଠ, ସଂକୀର୍ତ୍ତନ ଓ ବାଦିପାଲା ଇତ୍ୟାଦି ହୋଇଥାଏ । ଲୋକେ କୁହନ୍ତି ଏହି ସାତଦିନ ମା'ଙ୍କ ପୀଠରେ ଦିନ ଓ ରାତି କିଛି ଜଣାପଡେ ନାହିଁ । କାରଣ ବାଘଗର୍ଜନ ପରି ଲକ୍ଷ ଲକ୍ଷ ଭକ୍ତଙ୍କର ସମାବେଶର ଘୁଘୁ ଶବ୍ଦ ସଙ୍ଗକୁ ଶତ ଶତ ଦୋକାନ ବଜାରର ବିଜୁଳି ଆଲୁଅ, ମନ୍ଦିର ତରଫରୁ ମନ୍ଦିରଠାରୁ ପ୍ରାୟ ୧ କି.ମି ବ୍ୟାସାର୍ଦ୍ଧର ସୁସଜ୍ଜିତ ଆଲୋକ ସଜା ଓ ବାଦ୍ୟଯନ୍ତ୍ରଗୁଡ଼ିକର ଶବ୍ଦ ଏହି ଅଞ୍ଚଳକୁ ଚଳଚଞ୍ଚଳ କରିପକାଉ ଥାଏ । ଦେବୀଙ୍କର ଦୈନିକ ଭୋଗରେ ସେପରି କିଛି ଆଡମ୍ବର ନଥାଏ । ସକାଳ ଭୋଗରେ ଉଖୁଡା, ଛେନା, ଦହି, ନଡିଆ, କଦଳୀ, ମଧ୍ୟାହ୍ନ ସମୟରେ ଖେଚିଡି, ଡାଲମା ଓ ଖିରି ଓ ସନ୍ଧ୍ୟା ସମୟରେ ଖିର ଓ ଚକୁଳୀ ପିଠା ଅର୍ପଣ ହୋଇଥାଏ । ସର୍ବୋପରି ପ୍ରତ୍ୟହ ହଜାର ହଜାର ଭକ୍ତମାନଙ୍କର ସମାବେଶ ଫଳରେ ସେମାନଙ୍କର ମାନସିକ ପୂଜା ଅର୍ଚ୍ଚନା ଓ ପ୍ରସାଦ ସେବନ ପାଇଁ ମନ୍ଦିର ତରଫରୁ ରୋଷେଇ ବ୍ୟବସ୍ଥାର କଳରବ ମନ୍ଦିର ପରିବେଶକୁ ଆନନ୍ଦ ମୁଖରିତ କରିଥାଏ ।

୧୯୬୯ ମସିହାରୁ ଦେବୋତ୍ତର ବିଭାଗ ଏହି ମନ୍ଦିରର ପରିଚାଳନା ଦାୟିତ୍ୱ ହାତକୁ ନେଇଥିଲେ ମଧ୍ୟ କିନ୍ତୁ ୧୯୮୧ ମସିହାରୁ ଦେବୀ ପୀଠର ଚତୁଃପାର୍ଶ୍ୱକୁ ନୂତନ କଳେବରରେ ପରିଣତ କରିଛନ୍ତି । ମନ୍ଦିର ବେଢା ଭିତରେ ଯଜ୍ଞ ମଣ୍ଡପ, ଭୋଗମଣ୍ଡପ, ବିବାହ ଓ ବ୍ରତଘର, ଭଣ୍ଡାରଘର, ଯାତ୍ରୀନିବାସ, କାର୍ଯ୍ୟାଳୟ, ବିଶ୍ରାମଘର ସମେତ ରୋଷଘର ଓ ଭୋଜନାଳୟ ପାଇଁ ବଡ ବଡ ଘରମାନ ନିର୍ମାଣ ହୋଇଅଛି । ମନ୍ଦିର ବାହାରେ ପାନ୍ଥନିବାସ, ହୋଟେଲ୍‌ଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର ଦୋକାନ ବଜାର ଗଢିଉଠି ଏକ ଛୋଟ ସହରର ରୂପ ନେଇଅଛି । ଏହା ଫଳରେ ଶତ ଶତ ବେକାର ଯୁବକ ଓ ପୀଠର ଚାରି ଦିଗରେ ଥିବା ଗ୍ରାମବାସୀମାନେ ବ୍ୟବସାୟ କରି ସେମାନଙ୍କର କର୍ମଯୋଗାଣ ସମସ୍ୟା ସମାଧାନ କରିବା ସଙ୍ଗେ ସଙ୍ଗେ ଆର୍ଥିକ ମାନଦଣ୍ଡ ସ୍ୱଚ୍ଛଳ ହୋଇପାରିଛି । ଏତଦ୍‌ବ୍ୟତୀତ ମା'ଙ୍କ ପୂଜା ପାଇଁ ଆସୁଥିବା ଲକ୍ଷ ଲକ୍ଷ ନଡିଆରେ କୋରା, ଲଡୁ ଓ ତେଲ ତିଆରି କରି ଶହ ଶହ ଯୁବକ କର୍ମନିଯୁକ୍ତ ହୋଇପାରିବା ସଙ୍ଗେ ସଙ୍ଗେ ମନ୍ଦିରର ବିପୁଳ ଅର୍ଥ ରୋଜଗାର ହୋଇପାରୁଛି । ଘୋଡା ଦେବୀଙ୍କର ପ୍ରିୟ । ତେଣୁ ଏକ ଟନ ଓଜନର ପିତ୍ତଳ ଘୋଡା ସ୍ଥାପନ ହେବା ସହ ମୁଖଶାଳାରେ ୫୦୦ କିଲୋଗ୍ରାମର ଓଜନର କବାଟ ଲାଗି ପାରିଛି । ଟ୍ରଷ୍ଟ ତରଫରୁ ଦେବୀଙ୍କର ଦୈନିକ ୨୩ଜଣ ସ୍ଥାୟୀ ଓ ୧୭ଜଣ ଅସ୍ଥାୟୀ କର୍ମଚାରୀ କାର୍ଯ୍ୟରତ ଅଛନ୍ତି । ଦେବୀଙ୍କ ଆୟରୁ ଶିକ୍ଷାନୁଷ୍ଠାନ ଓ ଦୁସ୍ଥ ବିକଳାଙ୍ଗ ଲୋକଙ୍କୁ ଚିକିତ୍ସା ନିମନ୍ତେ ସାହାଯ୍ୟ ଦିଆଯାଉଅଛି । ମନ୍ଦିରର ବ୍ୟୟଠାରୁ ଆୟ ଅଧିକ ହେଉଥିବାରୁ ବର୍ଷକୁ ଲକ୍ଷ ଲକ୍ଷ ଟଙ୍କା ବ୍ୟାଙ୍କରେ ଜମା ରଖାଯାଇଛି ।

କିନ୍ତୁ ବଡ ଦୁଃଖର ବିଷୟ ଏହିଭଳି ଅତୀତର ମନ୍ଦିରର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ନୈସର୍ଗିକ ଶୋଭା ଆଜି ଆଉ ନାହିଁ । ଅରଣ୍ୟବାସିନୀ ମା' ତାରିଣୀ ଆଜି ସହରବାସିନୀ ହୋଇଯାଇଛନ୍ତି । ମା'ଙ୍କର ମାଟିରେ ନିର୍ମିତ ଘୋଡା ମନ୍ଦିରରେ ଦେଖିବା ବିରଳମାତ୍ର । ଏହା ସତ୍ତ୍ୱେ ମଧ୍ୟ ମା'ଙ୍କର ମହିମା, ଗୁଣଗାରିମା ଓ ଶକ୍ତି ସୁଦୂର ପ୍ରସାରୀ ହେବା ସଙ୍ଗେ ସଙ୍ଗେ ବାତ୍ସଲ୍ୟମୟୀ ସ୍ନେହ, ମମତା ତଥା ଆଶୀର୍ବାଦ ରୂପକ ଆଧ୍ୟାତ୍ମିକ ରଜ୍ଜୁରେ କୋଟି କୋଟି ଭକ୍ତଙ୍କୁ ବାନ୍ଧି ରଖିଛନ୍ତି। ସର୍ବୋପରି ମା' ରାଜା–ପ୍ରଜା, ଜ୍ଞାନୀ–ଅଜ୍ଞାନୀ, ଜାତି–ଅଜାତି, ପଶୁପକ୍ଷୀ, କୀଟପତଙ୍ଗ ସମସ୍ତଙ୍କର ମଙ୍ଗଳ ଦାୟିନୀ ଓ ସଙ୍କଟ ତାରିଣୀ ହୋଇ ପାରିଛନ୍ତି ।

ଦୁର୍ଗାମାଧବ ନଗର, ଭରତପୁର
ଭୁବନେଶ୍ୱର

# ଉପମାମୟ ଚଣ୍ଡୀ ଯୁଦ୍ଧ ପୁରାଣ

**ସନ୍ଧ୍ୟା ମହାନ୍ତି**

ଶ୍ରୀ ସାରଳା ଦାସ ଦେବୀ ଦୁର୍ଗା ନକହି ଚଣ୍ଡୀ ନାମ ଦେଇଛନ୍ତି ଚଣ୍ଡୀଦେବୀ । ଦୁର୍ଗା ଦେବୀଙ୍କର ହିଁ ଅନ୍ୟନାମ । ସାଧାରଣରେ ପୁରୁଷଙ୍କୁ ପରାଜିତ କରି ବା ବଧ କରି ଏପରିକି ସମସ୍ତ ଅଧିକାର ତା'ର ସାବ୍ୟସ୍ତ କରୁଥିବା ନାରୀକୁ ହିଁ ଓଡ଼ିଆରେ ଚଣ୍ଡୀ ବୋଲି ସମ୍ବୋଧନ କରାଯାଇଥାଏ । ତେବେ ସାରଳା ଦାସ ଚଣ୍ଡୀ ମୂର୍ତ୍ତିର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗରେ ସ୍ପଷ୍ଟ ଦେଖି ପାରିଛନ୍ତି ଅପୂର୍ବ ଜ୍ୟୋତିର ସମାବେଶ ।

ସତେବା ଦୁର୍ଦ୍ଧର୍ଷ ପୁରୁଷ କୁଳକୁ ପରାଭୂତ କରିବା ପାଇଁ ତାଙ୍କର ସୃଷ୍ଟି ହୋଇଥାଏ । ସେ ଅପୂର୍ବ ରୂପ ସମନ୍ୱିତା ଏକ ଭୀଷଣ ନାରୀମୂର୍ତ୍ତି । ଏହିପରି ଏକ ଚଣ୍ଡୀ, ଦେବୀ ଦୁର୍ଗା ହେଲେ ଚଣ୍ଡୀ ପୁରାଣର ପ୍ରକୃତ ନାୟିକା । ଏହି ଚଣ୍ଡୀ ଦେବୀଙ୍କର ପ୍ରତିଦ୍ୱନ୍ଦ୍ୱୀ ଅନ୍ୟ କେହି ନଥିଲେ, ସେ ଥିଲେ ଅସୁରାଧିପତି ପ୍ରବଳ ପରାକ୍ରମୀ ମହିଷାସୁର । ଗୋଟିଏ ପରେ ଅନ୍ୟ ଗୋଟିଏ ପରାକ୍ରମୀ, ଦୁର୍ଦ୍ଧର୍ଷ, ବଳଶାଳୀ ଅସୁରକୁ ପରାଜିତ କରି ରାଜ୍ୟ ଜୟ କରି ହୋଇଛନ୍ତି 'ତ୍ରୈଲୋକ୍ୟ ଠାକୁର' । ଦେବତାମାନଙ୍କୁ ମଧ୍ୟ ପରାସ୍ତ କରି ସେ ଦେବାଧି ଦେବଙ୍କର ମଉଡମଣି ଭାବେ ଅଧିଷ୍ଠିତ ହେଲେ । ଯମ ବାହନ ମହିଷର ଔରସରୁ ଜନ୍ମ ଲାଭ କରିଥିବା ହେତୁ ନରତ୍ୱ ଓ ପଶୁତ୍ୱର ଏକ ସମିଶ୍ରଣ ତାଙ୍କଠାରେ । ବ୍ରହ୍ମାଙ୍କ ବରରେ ବଳୀୟାନ୍ ହୋଇ ଅମର ପଦ ପାଇ ଏକ ଅପରାଜେୟ ବ୍ୟକ୍ତିଭାବେ ନିଜକୁ ବିଶ୍ୱାସ କରି ସେ ବିଶ୍ୱନିୟନ୍ତା ଭଗବାନଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଦିଏ ।

ଏହି ଦୁଇ ମହାଶକ୍ତିର ସଂଘର୍ଷ ବର୍ଣ୍ଣନା ପାଇଁ ଚଣ୍ଡୀ ପୁରାଣ । ସାରଳା ଦାସ ଏହି ମହାଯୁଦ୍ଧର ଭୟଙ୍କରିତା ସମ୍ପର୍କରେ ସୂଚନା ଦେଇ ଉଲ୍ଲେଖ କରିଛନ୍ତି ।

ଶୁଣହୋ ପରୀକ୍ଷ ବଦନ୍ତି ଶୁକବ୍ରହ୍ମା
ଚଣ୍ଡୀର ଯୁଦ୍ଧ ହାବେ ଏସନେକ ମହିମା
ଅସଂଖ୍ୟ ଅଗୋଚର ଅପୂର୍ବ ଚରିତ
ଦେବଙ୍କୁ ଦୁର୍ଲଭ ଏ ସମର ଅପ୍ରମିତ ।

ଏଇ ପୃଥିବୀ ପୃଷ୍ଠରେ କେତେ ରାମାୟଣ, ମହାଭାରତ ଯୁଦ୍ଧ ସଂଘଟିତ ହୋଇଛି ସତ ମାତ୍ର ଏ ସମସ୍ତ ଯୁଦ୍ଧ ଚଣ୍ଡୀ ଯୁଦ୍ଧ ତୁଳନାରେ ବହୁତ ତଳେ । ସେ ଚଣ୍ଡୀ ପୁରାଣକୁ କଥା କହିଲା ପରି ସହଜ, ସ୍ୱାଭାବକ ରୀତିରେ ବର୍ଣ୍ଣନା କରିଛନ୍ତି ସତ ମାତ୍ର ସେ ମଝିରେ ମଝିରେ କଥା ମାଧ୍ୟମରେ ସେ କେତେ ଉପମାର ସଂଯୋଜନା ମଧ୍ୟ କରିଛନ୍ତି । ତେବେ ଏସବୁ କେବଳ ରୂପ ବା ଯୁଦ୍ଧ ବର୍ଣ୍ଣନା ପାଇଁ ଅଭିପ୍ରେତ ନୁହେଁ । ରୂପ ଏବଂ ବୁଦ୍ଧି ବର୍ଣ୍ଣନା ସଙ୍ଗେ ସଙ୍ଗେ ଏମାନେ ସ୍ୱତନ୍ତ୍ର ଭାବେ ଏକ ପ୍ରଳୟାନ୍ତକାଳୀନ ପରିବେଶ ମଧ୍ୟ ସୃଷ୍ଟି କରିଛନ୍ତି । ଏହି ଚଣ୍ଡୀ ଏବଂ ମହିଷାସୁର ଯୁଦ୍ଧ ସହ ଏମାନଙ୍କର ମଧ୍ୟ ଅହରହ ସଂଗ୍ରାମ ଚାଲିଛି ।

ଏହି ପୁରାଣରେ ଥିବା ଧର୍ମରେଖା, ଶକୁନ୍ତଳା, ଚନ୍ଦ୍ରାବତୀ, ଅରୁନ୍ଧତୀ, ଚଣ୍ଡୀ ଏବଂ ଚଣ୍ଡୀଙ୍କ ସୃଷ୍ଟ ବିଭିନ୍ନ ଦେବୀଙ୍କୁ ଗଣନା କରାଯାଇପାରେ । ତେବେ ମହାଭାରତ ପରି ଚଣ୍ଡୀ ପୁରାଣରେ କବି କେବଳ ମୁଖ୍ୟନାୟିକାର ରୂପ ବର୍ଣ୍ଣନା କରିବାରେ ବହୁ ଆଗ୍ରହଶୀଳ ହୋଇପଡିଛନ୍ତି ।

ମହିଷାସୁରର ପତ୍ନୀ ଚନ୍ଦ୍ରାବତୀର ରୂପ, ଗୁଣ ମଧ୍ୟ ବର୍ଣ୍ଣନା କରିବାକୁ କବି ଭୁଲି ନାହାଁନ୍ତି । ପିତା ମଧ୍ୟରେ କନ୍ୟାର ରୂପ ବର୍ଣ୍ଣନା ଏହିପରି–

ଏ ମୋହର ଦୁହିତା ଯେ ଅଟଇ ଚନ୍ଦ୍ରାବତୀ
ତଇଲୋକ ମୋହିନୀ ସେ ମଦନ ମୂରତୀ ।

ଏଥିରେ ଥିବା ତଇଲୋକ ମୋହିନୀ ଏବଂ ମଦନ ମୂରତି ପ୍ରୟୋଗ କରିବା ତାଙ୍କର ଏକ ସାଧାରଣ କଥା । କିନ୍ତୁ ସେ ପ୍ରାୟ ସମସ୍ତ ନାରୀଙ୍କୁ ଏହିପରି ପ୍ରାୟ ସମ୍ବୋଧନ କରିଥାନ୍ତି ।

ପୁଣି ସ୍ୱୟମ୍ବର ସଭାରେ ଉପସ୍ଥିତ ଥିବା ରାଜାମାନଙ୍କ ମୁଖରେ ମୁଖ୍ୟ କନ୍ୟାର ବର୍ଣ୍ଣନା । କନ୍ୟାର ଅପୂର୍ବ ରୂପରେ ବିମୋହିତ ହୋଇ ରାଜାମାନେ କହିଛନ୍ତି–

ରାଜାମାନେ ବୋଇଲେ ଏତ କନ୍ୟାରତ୍ନମଣି
ରୂପ ନିରୋପନ୍ତେ ଏ ପାର୍ବତୀ ତୁଲ ଜାଣି ।

ଏପରିକି ରୂପ, ଗୁଣ ନେଇ କନ୍ୟା ତାଙ୍କୁ ଲକ୍ଷ୍ମୀ ପରି ପ୍ରତିଭାତ ହୋଇଛନ୍ତି । ସେମାନେ କହିଛନ୍ତି–

ବିଚାର ଯୁଗତେ ନୋହିଲୁ ଆମ୍ଭେ କିଛି
କି ଅବା ବିଜେ କଲା ଏଥି ପରମ ଲକ୍ଷ୍ମୀ ।

ପୁନଶ୍ଚ ଚନ୍ଦ୍ର ସହ ତୁଳନା କରି କହିଛନ୍ତି–

ଏହାର ମୁଖ ଚନ୍ଦ୍ରମାକୁ ପଟାନ୍ତରି ନପାରି
ଚନ୍ଦ୍ରମା ତନୁ ତ ଦେଖିଣ ଖିନ୍ନ କରି ।

ଏତେପରେ ବି ରତ୍ନକୁ ନେଇ–

ରତ୍ନକୁ ପଟାନ୍ତର କରନ୍ତୁ ଅବା କାଏ
ସେହି ମଳିଣ ଦିଶଇ ଏହାର ତେଜ ମଏ ।

କବି ଏକ ପକ୍ଷରେ ରାଜାମାନଙ୍କୁ ରଖି ଅନ୍ୟ ପକ୍ଷରେ କନ୍ୟା ରୂପକୁ ରଖି ତୁଳନା କରିଛନ୍ତି ।

ଏ ପ୍ରକାର ତୁଳନାରୁ ଜଣାଯାଏ– ରାଜାମାନେ ତାରା ପରି ଶୋଭା ପାଉଥିବା ସ୍ଥଳେ କନ୍ୟା ହେଉଛି ଚନ୍ଦ୍ର । ସାରଳା ଦାସ କହନ୍ତି, ଏହା ଏକ ବିଡମ୍ବନା କଥା । ତାରାମାନଙ୍କର ପତି ଭାବେ ଚନ୍ଦ୍ରର ପ୍ରସିଦ୍ଧି ମାତ୍ର ଏ ସ୍ଥାନରେ ପତି ହେବାକୁ ଆସିଥିବା ରାଜାମାନେ ହେଲେ ପତ୍ନୀ ଏବଂ କନ୍ୟା ହେଲା ପତି । ଏହିପରି ବିଭିନ୍ନ ଭାବେ ଯେପରି ଶ୍ରେଷ୍ଠତା, ନ୍ୟୂନତା ଓ ବୈଚିତ୍ର୍ୟ ଭାବ ମଧ୍ୟଦେଇ ନାରୀଙ୍କ ରୂପ ବର୍ଣ୍ଣନା ସରି ନାହିଁ । କବି ସ୍ୱାଭାବିକ୍ ରୀତିରେ ନାରୀ ରୂପକୁ କଳନା କରି ଦେଖି କହିଲେ–

ଦିନ ନ ଅଣ୍ଟିବ ଏହା ସ୍ୱରୂପ ବର୍ଣ୍ଣିବାକୁ
ନଥିଲା ଉପରେ ନଥିଲା ତଳକୁ ।

ରୂପ ବର୍ଣ୍ଣନାର ଏପରି ସୀମାହୀନ ଭାବନା ହିଁ ନାରୀ ରୂପର ପ୍ରକୃତ ପରିମାପ । କୌଣସି ବସ୍ତୁ ମଧ୍ୟରେ ଏହାକୁ ସୀମିତ କରିନେବା ଏତେ ସହଜ ନୁହେଁ ।

ଚଣ୍ଡୀ ପୁରାଣରେ ଚନ୍ଦ୍ରାବତୀ ହେଉଛି କେବଳ ଜଣେ ରୂପସୀ ରାଜକନ୍ୟା, ମହିଷାସୁରର ଅନୁଗତା ପତ୍ନୀ । ଏହାର ରୂପ ନିକଟରେ ଚନ୍ଦ୍ର, ରତ୍ନ ନିଷ୍ପ୍ରଭ ହେଲେ ହେଁ ପାର୍ବତୀ ଓ ଲକ୍ଷ୍ମୀଙ୍କର ସ୍ୱର୍ଗୀୟ ସୁଷମା ନିହିତ ଅଛି । ଚଣ୍ଡୀ କିନ୍ତୁ କାହାରି ଅନୁଗତା ପତ୍ନୀ ହେବା ପାଇଁ ସୃଷ୍ଟ ନୁହଁନ୍ତି । ସେ କେବଳ ପୁରାଣର ମୁଖ୍ୟ ନାୟିକା ନୁହଁନ୍ତି । ସେ ହେଉଛନ୍ତି କବିଙ୍କର ଆରାଧ୍ୟା ଦେବୀ । ମହିଷାସୁର ପରି ଦୁର୍ଦ୍ଧର୍ଷ ବା ଦୁର୍ଦ୍ଧର୍ଷ ଅସୁରର ଦଳନ ପାଇଁ ତାଙ୍କର ଜନ୍ମ । ତାଙ୍କର ଶରୀରରେ ସମସ୍ତ ଦେବତାଙ୍କର ତେଜ ପୁଞ୍ଜିଭୂତ । ସେଥିପାଇଁ କବି ଚଣ୍ଡୀଦେବୀଙ୍କର ରୂପ ବର୍ଣ୍ଣନା କରିବାକୁ ଯାଇ ଯେଉଁସବୁ ଉପମାମାନ ଗ୍ରହଣ କରିଛନ୍ତି, ସେଥିରେ ଚଣ୍ଡୀଦେବୀଙ୍କ ପ୍ରକୃତିର ସମସ୍ତ ବୈଚିତ୍ର୍ୟ ସମନ୍ୱିତ ହୋଇଥିବା ଜଣାଯାଏ ଅବା !

ଦେବୀଙ୍କର ରୂପ ବର୍ଣ୍ଣନା ପୁରାଣର ବହୁ ସ୍ଥଳରେ ବନ୍ଦନା ରୂପେ ଦେଖିବାକୁ ମିଳୁଥିଲେ ମଧ୍ୟ ଚଣ୍ଡ ମୁଖରେ ଥିବା ବର୍ଣ୍ଣନା ହିଁ ସବୁଠାରୁ ଦୀର୍ଘ ହୋଇଛି ।

ଯେତେବେଳେ ରତ୍ନଗିରି ଉପରେ ଅବସ୍ଥିତା ଦୁର୍ଗାଙ୍କୁ ଦେଖିଲେ ଚଣ୍ଡ, ମୁଣ୍ଡ ପ୍ରଥମେ ଭାବିଲେ ସେ ଜଣେ ସାଧାରଣ ରୂପସୀ ନାରୀ ନିଶ୍ଚୟ । ସେଥିପାଇଁ ସେମାନେ ତାଙ୍କୁ ନିଜର ପତ୍ନୀ ରୂପେ ପାଇବା ପାଇଁ ଲାଳାୟିତ ହୋଇ ପଡିଥିଲେ । ସାଧାରଣ ନାରୀଟିକୁ ଚାଟୁକଲା ପରି କହିଥିଲେ–

ଅନେକ ଧନ ରତ୍ନ ଅଳଙ୍କାର ଦେବୁ
ପ୍ରାଣୁ ଅଧିକା କରି ପ୍ରତି ପାଳିଥିବୁ
ସ୍ୱାମୀପଣ ଛାଡି ତୋତେ ଭୃତ୍ୟରେ ଭୃତ୍ୟ
ବିନୟଭାବ କରି ତୋତେ ହୋଇବୁ ଶୀରାଗ୍ରତ ।

ସେମାନେ ଚଣ୍ଡୀଙ୍କର ଦ୍ରହିତ ବଦନ, ମାନିନୀ ରୂପ ଦେଖି ହୁଏତ ମୁଗ୍ଧ ହୋଇ ଏ ପ୍ରକାର ଅନୁରୋଧ କରିଥିଲେ କିନ୍ତୁ ଯେତେବେଳେ ସେମାନେ ଶୁଣିଲେ ଯେ ସେ ମହିଷାସୁରର ଆଶାରେ ସେଠାରେ ଉପସ୍ଥିତ, ସେତେବେଳେ ସେମାନେ ଭୟରେ କାକୁସ୍ଥ ହୋଇ ଦେବୀଙ୍କର ଶରଣାପନ୍ନ ହେଲେ । ସେମାନଙ୍କର ଦୁର୍ଦ୍ଦଶାର ଚିତ୍ରଣ କରି କବି ଉଲ୍ଲେଖ କରିଛନ୍ତି–

ଏସନକ ବାକ୍ୟ ଶୁଣିଲେ ଯହୁଁ ବାଣୀ
ଶ୍ରବଣେ ହସ୍ତ ଦେଇ କାତରେ ରହିଲେ ଧରଣୀ ।
ତୁ ଆମ୍ଭର ଠାକୁରାଣୀ ହୋଇବୁ ଆଗୋ ମାଏ
ଦଶ ଦୋଷ କ୍ଷମା କର ଫିଟୁ ଆମ୍ଭର ଇଏ
ଶିବ ଶିବ ସୁମରି ଚଳନ୍ତି ଚଣ୍ଡ ମୁଣ୍ଡେ
ପବନୁ ବେଗେ ଚଳି ନରହନ୍ତି ଦଣ୍ଡେ ।

ଚଣ୍ଡମୁଣ୍ଡ ହେଉଛନ୍ତି ମହିଷାସୁରର ମୁଖ୍ୟ ସେନାପତି । ରାଜ୍ୟରେ ସୁନ୍ଦରୀ ସ୍ତ୍ରୀର ସନ୍ଧାନ ପାଇଲେ ସେମାନେ ରାଜାଙ୍କୁ

ଏ ବିଷୟ ଅବଗତ କରାଇଥାନ୍ତି । ପୁଣି ସୁଯୋଗ ପଡିଲେ ନିଜେ ମଧ୍ୟ ଏପରି ନାରୀଙ୍କୁ କରାୟତ୍ତ କରି ନିଜର କାମ–ବାସନା ତୃପ୍ତ କରନ୍ତି । ମୁସଲମାନ ଶାସନର ଏହି ଚିତ୍ର ଉପସ୍ଥାପିତ କରିବା ସଙ୍ଗେ ସଙ୍ଗେ କବି ଚଣ୍ଡମୁଣ୍ଡଙ୍କ ମୁଗ୍ଧ ଓ ଶଙ୍କିତ ମନ ମଧ୍ୟରୁ ନିଜର ଆରାଧ୍ୟ ଦେବୀଙ୍କର ରୂପ ବର୍ଣ୍ଣନା ଆରମ୍ଭ କଲେ ।

ଉପମା ପ୍ରୟୋଗର ପରମ୍ପରାନୁସାରେ ଦେବୀଙ୍କର ରୂପ ବର୍ଣ୍ଣନା ଚରଣରୁ ଆରମ୍ଭ କରି ମସ୍ତକ ପର୍ଯ୍ୟନ୍ତ ବର୍ଣ୍ଣନାରେ ଶେଷ ହେବାର କଥା । କିନ୍ତୁ ଗ୍ରନ୍ଥର ପ୍ରସଙ୍ଗ ଅନୁସାରେ ଚଣ୍ଡମୁଣ୍ଡଙ୍କ ମଧ୍ୟରେ ରୂପ ବର୍ଣ୍ଣନା ହୋଇଥିବାରୁ ଏ ସ୍ଥାନରେ ଦେବୀ ଭାବନା ନାହିଁ । ସାଧାରଣ ନାରୀ ପରି ବର୍ଣ୍ଣନା ଆରମ୍ଭ ହୋଇଛି । ରୂପ ବର୍ଣ୍ଣନା ପାଇଁ ପ୍ରଯୁକ୍ତ ଉପମାମାନ ସବୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇପାରେ ।

୧– ଜ୍ୟୋତି ପ୍ରକାଶକ ଉପମାମାନ

୨– କାନ୍ତି ପ୍ରକାଶକ ଉପମାମାନ

୧– ଜ୍ୟୋତି ପ୍ରକାଶକ ଉପମାମାନ–

କ) ଲଲାଟ ପାଟି– ରସାଣ କତୀୟ ପ୍ରାୟକ

ଖ) ନାସା– ସୁସଞ୍ଚ କଣୟ ଘଟଣ

ଗ) ଦନ୍ତ– ହୀରା ବା ଶଶାଙ୍କ

ଘ) କଣ୍ଠ– କୁନ୍ଦ ଘଟଣ ଜାଣି

ଙ) ଅଙ୍ଗୁଷ୍ଠି– ରୂପିଲା ରତ୍ନ ପାଏକ

ଚ) କୁଚ– କୁଳ, ଘଟଣ କଣୟ

ଛ) ଅଞ୍ଚଳ ଉଡିବା ଫଳରେ– ଶରୀର କି ସୂର୍ଯ୍ୟ ଶଶି ଘେନି

ଜ) ମଝା– ବେନି କଣୟ ଧରର ସଙ୍କଟ

ଝ) ତେଜ– ଚନ୍ଦ୍ରମା ଉଦିଏ ।

ଞ) ନାଭି ଓ ସ୍ତନ ମଧ୍ୟସ୍ଥ ରୋମାବଳୀ– ରତ୍ନ ପନ୍ତୀ ମଧ୍ୟେ ନୀଳା ରେଖାବଳୀ ।

୨–କାନ୍ତି ପ୍ରକାଶକ ଉପମାମାନ–

କ) ଚିକୁର– ଜମ୍ବୁଧର ମେଘପ୍ରାଏ

ଖ) ତରଳିତ ଲୋଚନ– ସଂଗହୀନ ବାଳ କୁରଙ୍ଗୀର ବିଭଙ୍ଗ ଚାହାଣୀ

ଗ) ଅଧର– ବଞ୍ଜୁଳ ପୁଷ୍ପ ପ୍ରାଏକ

ଘ) ବାଣୀ– ବସନ୍ତ ଋତୁରେ ଶତଗଳର ସ୍ୱନ

ଙ) ଉରୁ– କୁମୋଦ ନା ପ୍ରାଏକ

ଚ) ବକ୍ଷ– ସୁରଭିର ତେଜପ୍ରାଏ

ଛ) ନଖ– ପୁଷ୍ପ ପାଖୁଡା କାନ୍ତି

ଜ) ପେଟ– ଜାଳେ ଯେସନେକ ଶିଆଳି ପତ୍ରତଟ

ଝ) ଜାନୁ– ଓଲଟ ରାମ କଦଳୀ

ଞ) ଚାଲିବା ଠାଣି– ଜଳେ ହଂସ ଗବନୀ

ଜ୍ୟୋତି ଓ କାନ୍ତି ପ୍ରକାଶକ ଉପମା ସବୁକୁ ପ୍ରାୟ ଗୋଟିଏ ପରେ ଗୋଟିଏ ରଖି ପାଦ ପର୍ଯ୍ୟନ୍ତ ଆସିବା ପରେ କବି ଦାସଙ୍କ ଦୃଷ୍ଟିଭଙ୍ଗୀ ବଦଳି ଯାଇଛି । ଚଣ୍ଡ ମୁଖରେ ଦେବୀଙ୍କର ପାଦ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବା ପାଇଁ ସେ ବୋଧହୁଏ ଚାହିଁ ନାହାଁନ୍ତି । ପାଦର ତିନୋଟି ଭାଗ । ପାଦତଳି, ଲଖପନ୍ତି ଓ ଅଙ୍ଗୁଳି, କବି ପାଦତଳି ପାଇଁ ଅଶୋକ, ଲଖପନ୍ତି ପାଇଁ ତରାଟ ଓ ଅଙ୍ଗୁଳି ପାଇଁ କନକ ପୁଷ୍ପ ବାଛୁଛନ୍ତି ଏବଂ ଶେଷରେ ଦେବୀଙ୍କ ପାଦ କବିଙ୍କୁ ପଦ୍ମ ସଦୃଶ ଦୃଷ୍ଟି ହୋଇଛି । ଏ ସମସ୍ତ ଉପମାମାନଙ୍କୁ ଦେଖିଲେ ମନେହୁଏ ସତେ ଯେପରି ଦେବୀ ଭକ୍ତ ସାରଳା ଦାସ, ବିଭିନ୍ନ ପୁଷ୍ପ ଖଚିତ ପୁଷ୍ପଗୁଚ୍ଛ ଦେବୀଙ୍କ ପାଦପଦ୍ମରେ ଅର୍ପଣ କରି ନିଜର ଭକ୍ତି ପ୍ରବଣ ଭାବନା ପ୍ରକାଶ କରିଛନ୍ତି ।

ଚଣ୍ଡୀଙ୍କର ରୂପ ବର୍ଣ୍ଣନାରେ ପ୍ରଯୁକ୍ତ ହୋଇଥିବା ଉପମା ସବୁରେ ନୂତନତା ନାହିଁ । କିନ୍ତୁ ଏସବୁକୁ ଯେଉଁ ମହାଭାବରେ ସେ ଉପସ୍ଥାପିତ କରିଛନ୍ତି । ତାହାହିଁ ତାଙ୍କର ବୈଶିଷ୍ଟ୍ୟ । ଦେବତାମାନଙ୍କର ତେଜପୁଞ୍ଜକୁ ସୃଷ୍ଟ ଦେବୀଙ୍କୁ ପ୍ରକାଶ କରିବା ପାଇଁ ସେ ଗ୍ରହଣ କରିଛନ୍ତି ହୀରା, ରତ୍ନ ଓ ମଣି ପୁଣି ସୁବର୍ଣ୍ଣକୁ । ଦେବୀଙ୍କର ବିଭିନ୍ନ ଅଙ୍ଗ ପ୍ରତ୍ୟଙ୍ଗଙ୍କୁ ବର୍ଣ୍ଣନା କରିସାରି କବି ଯେତେବେଳେ ଦେବୀଙ୍କର ସମୂହ ରୂପ ପ୍ରତି ଦୃଷ୍ଟି ନିକ୍ଷେପ କରିଛନ୍ତି । ସେତେବେଳେ ଚଣ୍ଡୀଙ୍କର ବଦନ ସୌନ୍ଦର୍ଯ୍ୟ ନିକଟରେ ଚନ୍ଦ୍ରର ପ୍ରଭା ମଳିନ ହୋଇଯାଇଛି । ରମ୍ଭା ପରି ସ୍ୱର୍ଗ ଅପ୍ସରୀ ସୁନ୍ଦରୀ ମଧ୍ୟ ନିଷ୍ପ୍ରଭ । ସେତେବେଳେ କବିଙ୍କ ଦୃଷ୍ଟିରେ ଚଣ୍ଡୀ ହୋଇଛନ୍ତି ଅମୂଲ୍ୟ କାନ୍ତି ।'

ଚନ୍ଦ୍ରାବତୀ ରୂପ ବର୍ଣ୍ଣନା ସହ ଚଣ୍ଡୀଙ୍କର ରୂପ ବର୍ଣ୍ଣନାକୁ ତୁଳନା କରି ଦେଖିଲେ କବିଙ୍କର ଦୃଷ୍ଟିକୋଣ କେତେକ ପରିମାଣରେ ସ୍ପଷ୍ଟ ହେଉଥିଲେ ହେଁ ରୂପ ବର୍ଣ୍ଣନା ପାଇଁ କବିଙ୍କର କେତେକ ପ୍ରିୟ ଶବ୍ଦ ଥିଲା । ତେଣୁ ସେ ସମସ୍ତ ନାରୀଙ୍କର ରୂପ ବର୍ଣ୍ଣନା ପାଇଁ ସେହି କଥାକୁ କହୁଥିଲେ । ଏହା ସତ୍ତ୍ୱେ ଚଣ୍ଡୀଙ୍କର

ରୂପ ବର୍ଣ୍ଣନାରୁ ତାଙ୍କର ଏକ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣ ପ୍ରକାଶ ପାଇଛି । ଯାହାକି କେବଳ ପ୍ରସଙ୍ଗୋଚିତ ନୁହେଁ । ମହିଷମର୍ଦ୍ଦିନୀ ଦୁର୍ଗାଙ୍କର ରୂପ ବିଭାକୁ ବିଶେଷ ଭାବରେ ଗୁରୁତ୍ୱ ଦେଇ ପ୍ରକାଶ କରିଥାଏ ।

ଚନ୍ଦ୍ରାବତୀଙ୍କ ରୂପ ବର୍ଣ୍ଣନା ପରିପଂକ୍ତି ସବୁ ଦେବୀଙ୍କର ରୂପ ବର୍ଣ୍ଣନାକୁ ବିଶେଷ ଭାବରେ ତେଜୋଦୀପ୍ତ କରିଛି ଏବଂ ଏହିସବୁ ପଂକ୍ତିରେ କବି କେବଳ ଅଙ୍ଗ ସୌନ୍ଦର୍ଯ୍ୟ ଉପରେ ଗୁରୁତ୍ୱ ନଦେଇ, ତାଙ୍କର ବହୁବିଧ ଗୁଣରାଜି ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରନ୍ତି । ସେହି ସମସ୍ତ ଉକ୍ତିରୁ ସ୍ପଷ୍ଟ ହୋଇଥାଏ, କିପରି ସେସମୟରେ ଏକ ମର୍ଯ୍ୟାଦାବନ୍ତ ନାରୀ ପ୍ରତି ସାଧାରଣ ଲୋକମାନଙ୍କର ଧାରଣା ଯାହାକି କବି ଚଣ୍ଡୀଙ୍କର ଗୁଣାବଳୀର ସୂଚନା ଦେଇ ଉଲ୍ଲେଖ କରିଛନ୍ତି–

ନୁହଁଇ ଚିରକୋପୀ କୃପା ଉଦ୍ଦେଶ୍ୟ ।
କୁଳୀନ ଚାରୁହଂସୀ ଧର୍ମ ଶାହାସ୍ରବାଦୀ
ଦ୍ରସନେ ପ୍ରସନେ ସେ ଚଞ୍ଚଳା ସର୍ବସାଧି
ସ୍ୱାମୀ କିଞ୍ଚିତ ଚଞ୍ଚଳ ସେ ପରମ ବୈଷ୍ଣବୀ
ଗୁଣନିଧି ସେ କ୍ଷେମାଶୀଳ ସାଧବୀ ।

ଅନ୍ୟସ୍ଥାନରେ କବିଙ୍କ ଲେଖାରେ–

ସ୍ତିରୀ କର୍ମ ଉତ୍ତମୀ ସେ ସଦୟେ ବାରାନିଧି ।

ଏ ସମସ୍ତ ଗୁଣ ଥିବା ହେତୁ ସେ, ତ୍ରୈଲୋକ୍ୟ ମୋହିନୀ । ଏହାର ବ୍ୟାଖ୍ୟା କରି କବି ଉଲ୍ଲେଖ କରନ୍ତି–

ଅଶୋଭନ୍ତେ ଶୋଭାକର ହସନ୍ତେ ଶୋଭାବନ ।
ସ୍ୱାମି ! ଚାଲନ୍ତେ ଶୋଭାକର ତ୍ରୈଲୋକ୍ୟ ମୋହିନୀ ।

ଏ ସମସ୍ତ କଥା କହି ମଧ କବି ସନ୍ତୁଷ୍ଟ ହୋଇ ରହିପାରି ନାହାଁନ୍ତି । ଶେଷରେ ସେ କହନ୍ତି– ପ୍ରଜାପତି ଯୁଗଯୁଗ ଧରି ଏହି ରୂପ ନିର୍ମାଣ ପାଇଁ ଚେଷ୍ଟା କରିଥିଲେ ହେଁ ଏବଂ ବାରମ୍ବାର ଭାଙ୍ଗି ପୁଣି ଗଢିବାକୁ ଇଛା କରିଥିଲେ ହେଁ ରୂପରେ ପୂର୍ଣ୍ଣତା ଆଣିପାରି ନାହାଁନ୍ତି । ସ୍ରଷ୍ଟାଙ୍କର ଏହିପ୍ରକାର ନିରାଶଭାବର ସନ୍ଧାନ ପାଇ ଦେବୀ ସ୍ରଷ୍ଟାଙ୍କୁ ଆଉ ହଇରାଣ ନକରିବା ପାଇଁ ସ୍ଥିର କଲେ ।

ଭାଙ୍ଗି କେତେକାଳ ସେ ଗଢିବ ପ୍ରଜାପତି
ତେଣୁକରି ବଡମତେ ନଚାଲେ ପାଦଗତି ।

ରୂପ ବର୍ଣ୍ଣନା ଚଣ୍ଡୀଙ୍କର ସମୂହ ବର୍ଣ୍ଣନାର କେବଳ ଏକ ଅଂଶମାତ୍ର । ଏହାହିଁ ହେଉଛି କେବଳ ଚଣ୍ଡୀଙ୍କର ମାନିନୀ ରୂପର ବର୍ଣ୍ଣନା । ଅସ୍ତ୍ର, ଆୟୁଧ ଏବଂ ବାହନରେ ସୁସଜ୍ଜିତ ହେବା ପରେ ହିଁ ତାଙ୍କର ପ୍ରକୃତ ରୂପ ପ୍ରକାଶ ପାଏ ଏବଂ ତାହାହିଁ ତାଙ୍କୁ ମହିଷମର୍ଦ୍ଦିନୀ ଦୁର୍ଗାଭାବେ ପ୍ରତିଷ୍ଠିତ କରିଥାଏ । ଚଣ୍ଡୀ ପୁରାଣ ବିଶେଷ କରି ଚଣ୍ଡୀ–ଯୁଦ୍ଧ ବର୍ଣ୍ଣନା ପାଇଁ ଅଭିପ୍ରେତ । ଏହାର ବର୍ଣ୍ଣନା ପାଇଁ ଯେଉଁସବୁ ଉପମାମାନଙ୍କର ନିର୍ବାଚନ କରିଛନ୍ତି, ତାହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ଚଣ୍ଡୀ ଓ ମହିଷାସୁର ଯୁଦ୍ଧର ଭୀଷଣତା ଦର୍ଶାଇବା ହିଁ କବିଙ୍କର ମୁଖ୍ୟ ଉଦ୍ଦେଶ୍ୟ । ଏହା ହେଉଛି ପ୍ରଳୟାନ୍ତକାଳର ସମୟ । ସେତେବେଳେ ବିଶ୍ୱର ଶକ୍ତିଯୁକ୍ତ ସମସ୍ତ ବସ୍ତୁ ପରସ୍ପର ମଧରେ ସଂଘର୍ଷ କରିଥାନ୍ତି । ଏ ସମସ୍ତ ମଧରେ ପର୍ବତ, ସାଗର, ବଜ୍ର, ମେଘ, ଅଗ୍ନି, ସୂର୍ଯ୍ୟ, ଚନ୍ଦ୍ର, ମଣ୍ଡନାଗ, ରାହୁ, କାଳସର୍ପ, ଶ୍ରୋଣେହା, ଗରୁଡ, ସିଂହ ପ୍ରଭୃତି ବିଶେଷ ଭାବେ ଉଲ୍ଲେଖଯୋଗ୍ୟ । ଏ ସମସ୍ତ ବସ୍ତୁର ଉତ୍ପାତ ମଧରେ ହିଁ ପ୍ରଳୟ ସଂଘଟିତ ହୋଇଥାଏ ।

କବି ଚଣ୍ଡୀ ଯୁଦ୍ଧକୁ ଏକ ଯୁଗସନ୍ଧି ସମୟ ବା ପ୍ରଳୟାନ୍ତକାଳ ରୂପେ ଗ୍ରହଣ କରିଥିବାରୁ ତାଙ୍କର ଉପମାମାନଙ୍କ ମଧ୍ୟରେ ଏ ସମସ୍ତ ବସ୍ତୁ ବିଶେଷ ପ୍ରମୁଖତା ଲାଭ କରିଛନ୍ତି । ମହିଷାସୁରର ସେନାବାହିନୀ ଓ ଅଭିଯାନ ପ୍ରଭୃତିର ବର୍ଣ୍ଣନା କଲାବେଳେ କବିଙ୍କର ଦୃଷ୍ଟି ବିଶେଷଭାବେ ସାଗରଠାରେ ନିବଦ୍ଧ । ମହିଷାସୁରର ସେନା ଦ୍ୱିତୀୟ ସାଗର ସଦୃଶ ଆଗକୁ ଆଗକୁ ମାଡିଚାଲିଛି । ସେମାନଙ୍କର ରୂପ ନୀଳବର୍ଣ୍ଣ ସମୁଦ୍ର ପରି ମୁଖଘୋଷ ସମୁଦ୍ରର ଘୋଷ ବା ଗର୍ଜନ ପରି । ମହିଷାସୁରର ଅଗଣିତ ସେନା କବିଙ୍କ ଅକଳିତ, ଅପାର ଓ ଅଗାଧ ସମୁଦ୍ର ପରି ଦେଖାଦେଇଛି । ରାଜ୍ୟ ପରେ ରାଜ୍ୟ ଜୟ କରିବା ଭିତରେ କବି ଦେଖିପାରିଛନ୍ତି କୂଳ ଲଂଘନ କରୁଥିବା ସମୁଦ୍ରର ଦୃଶ୍ୟ । ମହିଷାସୁରର ଉତ୍ଫୁଲ୍ଲ ତଥା ବିଜୟୀ ସେନାବାହିନୀ ଦର୍ଶନରେ କବି ସାଗରର ଉଲ୍ଲୋଳ ବା ପରିପୂର୍ଣ୍ଣ ସମୁଦ୍ରକୁ ଦେଖିପାରିଛନ୍ତି । ସେନାବାହିନୀର ବିସ୍ତାରରେ କବି ଦେଖିପାରିଛନ୍ତି ପୂର୍ବଦିଗରେ ବିସ୍ତାରିତ ହୋଇ ରହିଥିବା ସମୁଦ୍ରକୁ ଅସୁରସେନା କଥା କହିବା ବେଳେ ସତେ ଯେପରି କବି ସମୁଦ୍ରର ବହୁବିଧ ଦୃଶ୍ୟ ବ୍ୟତୀତ ଅନ୍ୟ କିଛି ଦେଖିବାକୁ ପାଇ ନାହାଁନ୍ତି । ପ୍ରଳୟ କାଳରେ ସମୁଦ୍ର ହିଁ ସମଗ୍ର ବିଶ୍ୱକୁ ଗ୍ରାସ କରିଥାଏ । ଚଣ୍ଡୀ– ଯୁଦ୍ଧରେ ମହିଷାସୁରର ସେନା ସାଗରହିଁ ସମଗ୍ର ବିଶ୍ୱପ୍ରତି ବିରାଟ ସଂକଟ ସୃଷ୍ଟି କରିବ ନିଶ୍ଚୟ ।

ସେନାବାହିନୀ ପାଇଁ କବି ଯେପରି ସାଗରକୁ ଦେଖିଥିଲେ, ଯୁଦ୍ଧର ବର୍ଣ୍ଣନା କଲାବେଳେ ସେ ସେହିପରି ପର୍ବତକୁ ଦେଖିଥିଲେ । ଏହି ଦୁଇ ପ୍ରତିଦ୍ୱନ୍ଦ୍ୱୀଙ୍କର ସମର ପ୍ରାୟ ତାଙ୍କୁ ସବୁବେଳେ ମେରୁମନ୍ଦରର ସଂଘର୍ଷ ପରି ଦେଖାଯାଉଥିଲା । ଅସ୍ତ୍ରଶସ୍ତ୍ରହୀନ

ଅସୁର ରୂପରେ ସେ ଦେଖି ପାରିଲେ ପୋଡିଲା ପର୍ବତର ଦୃଶ୍ୟ । ଅସୁରର ରଡିରେ ସେ ଶୁଣିପାରିଲେ ଆକାଶରୁ ଖସିପଡୁଥିବା ପର୍ବତର ଗର୍ଜନର ପ୍ରତିଧ୍ୱନୀ । ସୈନ୍ୟମାନଙ୍କ ଦ୍ୱାରା ଅବରୋଧ ସ୍ଥାନ ତାଙ୍କୁ ଜଳକୁ ଆବୋରି ରଖିଥିବା ପର୍ବତ ପରି ଦେଖାଦେଲା । କୌଣସି ବିଶିଷ୍ଟ ଅସୁର ସେନାପତି ଚଣ୍ଡୀ ତାଙ୍କୁ ଏକ ପର୍ବତ ପରି ଦେଖାଯାଉଥିଲେ । ପର୍ବତ ଓ ପର୍ବତ ମଧ୍ୟରେ ସଂଘର୍ଷ, ପୁଣି ସମୁଦ୍ର ଜଳର ମହାପ୍ଲାବନ ସହିତ ବିଶ୍ୱର ଅନ୍ୟ ସମସ୍ତ ଶକ୍ତିଶାଳୀ ଜୀବଜନ୍ତୁ ଏବଂ ପଦାର୍ଥ ମଧ୍ୟ ବିଶ୍ୱରେ ପ୍ରଳୟ ସୃଷ୍ଟି କରିବା ପାଇଁ ସକ୍ରିୟ ହୋଇ ଉଠୁଥିଲେ । ସେଥିରେ ସହଯୋଗ କଲେ ପ୍ରଚଣ୍ଡ ବହ୍ନି । ନିଧୂମ ଅଗ୍ନି, ବଜ୍ର, ବଜ୍ରଦଣ୍ଡ, ବଜ୍ରଶିଳା, ମଉନାଗ, ସେଣା ଓ ଖଗବର ପକ୍ଷୀ, ଶ୍ରୋଣେହା, କାଳସର୍ପ, ବିସ୍ତାରିତ ରାହୁଗର୍ଭ, କକଡା ମାସର ମୂଷଳ ଧାର ବୃଷ୍ଟି, ସୂର୍ଯ୍ୟଙ୍କର ପ୍ରଚୁର ଜ୍ୟୋତି ପ୍ରଭୃତି ଉପମାମାନ । ଏ ସମସ୍ତ ମିଶି ସତେବା ବିଶ୍ୱରେ ପ୍ରଳୟ ସୃଷ୍ଟି କରିଥିଲେ ।

ଚଣ୍ଡୀ ପୁରାଣରେ ଯୁଦ୍ଧ ବର୍ଣ୍ଣନା ପାଇଁ ପ୍ରଯୁକ୍ତ ଏହିସବୁ ଉପମାମାନଙ୍କ ମଧ୍ୟରେ ଆଉ କେତେକ ଉପମାମାନ ପ୍ରୟୋଗ ଦେଖିବାକୁ ମିଳେ । ସେହିସବୁ ପରମ୍ପରାରୁ ଗୃହୀତ ନୁହେଁ । କବି ନିଜର ସମାଜରେ ସତେବା ସେସବୁ ଦେଖିପାରୁଥିଲେ । ଅସ୍ତ୍ରଶସ୍ତ୍ର ବିହୀନ ଯୋଦ୍ଧାକୁ ଦେଖି କବିଙ୍କର ମନରେ ମୁଣ୍ଡାବୃକ୍ଷର ଦୃଶ୍ୟ ପ୍ରତିଭାତ ହୋଇଥିଲା । ସେନାର ପଳାୟନ ଦୃଶ୍ୟରେ କବି ଦେଖିଲେ ବାସଭଗ୍ନ ପକ୍ଷୀର ଦୁର୍ଦ୍ଦଶା । ଏକ ଶକ୍ତିଶାଳୀ ସେନାବାହିନୀ ନିକଟରେ କାକୁସ୍ଥ ହୋଇ ରହିଥିବା ଏକ ଦୁର୍ବଳ ସେନାବାହିନୀକୁ ଦେଖିପାରି କବି ବ୍ୟାଘ୍ର ସମ୍ମୁଖରେ ଥିବା ଛାଗଳ ପଲର ବିବଶତାକୁ ସ୍ମରଣ କରିଛନ୍ତି । କୌଣସି ସମର୍ଥବୀର ସୈନ୍ୟବାହିନୀକୁ ମନ୍ଥନ ବା ଗଣସଂହାର କରୁଥିବା ବେଳେ କବି କଦଳୀ ବନ ମଧ୍ୟରେ ମତ୍ତଗଜ ଏବଂ କୃପାଣ ଦ୍ୱାରା କଦଳୀବନର ବିକାଶ କଥା ଉଲ୍ଲେଖ କରିଛନ୍ତି । ମହିଷାସୁରର ଗିରି ଉତ୍ପାଟନ ଦୃଶ୍ୟରେ କବି ଦେଖି ପାରିଛନ୍ତି କୌଣସି ବଳଶାଳୀ ବୃଷଭ ଦ୍ୱାରା ମୃତ୍ତିକା ଖନନର ଦୃଶ୍ୟ । ମହିଷର ଶୃଙ୍ଗ ଉପରେ ଗିରିର ଅବସ୍ଥିତ ଷଣ୍ଢ ସିଙ୍ଗରେ ଲାଗିଥିବା ମାଟିପରି । ଗିରିକୁ ମାଟି ସହ ତୁଳନା କରିବା ଫଳରେ ମହିଷାସୁରର ବିଶାଳ ରୂପ ହିଁ ପାଠକକୁ ଚମତ୍କୃତ କରିଥାଏ । ଯାହାକି କବି ଉଲ୍ଲେଖ କରିଛନ୍ତି–

କେଞ୍ଚକରି ମହିଷାସୁର ସେ ପର୍ବତ ଉପାଡଇ
ତିଳ ମନ୍ଦାପ୍ରାଏ କରି ସଙ୍ଗେଣ ଘୋଟଇ

X X X

ଦେଖ ହୋ ବଳବନ୍ତା ସେ ଦାନବ କୁଳରାଏ
ପର୍ବତ ସିଙ୍ଗର ମୂଳେ ଧରିଅଛି ମୃତ୍ତିକା ଖଣ୍ଡ ପ୍ରାଏ ।

ଭୂମିରେ ହାଣିଲେ ଯେହ୍ନେ ସିଙ୍ଗରେ ଲାଗଇ ମାଟି
ସେହିମତି ପ୍ରାଏ ହୋଇଲା ରତ୍ନଗିରି ପର୍ବତ ଗୋଟି ।

ବିରହୀ ପୁରୁଷମାନେ କାମ ଭାବନାରେ ପ୍ରପୀଡିତ ହେଲାବେଳେ ସେମାନଙ୍କର ହିତାହିତ ଜ୍ଞାନ ଲୋପପାଇ ଯାଇଥାଏ । ନାରୀକୁ ଲାଭ କରିବା ଲୋଭରେ ସେମାନେ ଏପରି ବଶୀଭୂତ ହୋଇଥାନ୍ତି ଯେ ନାରୀର ଇଂଗିତରେ ନୃତ୍ୟ କରିବା ବ୍ୟତୀତ ତାଙ୍କର ଆଉ ଗତି ନଥାଏ । କବି ସାରଳା ଦାସ ଚଣ୍ଡୀ ପୁରାଣରେ ଏହି ଦୃଶ୍ୟକୁ ବାରମ୍ବାର ଉପସ୍ଥାପିତ କରିଥିଲେ ହେଁ ନାରାୟଣୀ ଓ କାନ୍ତିମାଳା ପ୍ରସଙ୍ଗରେ ସେ ଯେଉଁ ଉପମାମାନ ପ୍ରୟୋଗ କରିଛନ୍ତି, ତାହା ପୁରୁଷର ଏହି ପ୍ରକାର ଭାବଦଶାକୁ ଅତି ଜୀବନ୍ତ ଭାବରେ ପ୍ରକାଶ କରିପାରିଛି । କବି ଉଲ୍ଲେଖ କରିଛନ୍ତି–

ହେ ପଣ୍ଡିତ ଜନମାନେ ବିଚାର କର ଏହା
ପୁରୁଷ ବିରହୀତା ନ କରଇ କାହା ।
ଯେତେ ପ୍ରାକର୍ମ ଥିଲେ ବୁଡଇ ମଦନ ଜାଲେ ପଡିଲେ ।
ଦଉଡି ଲାଗି ଯେହ୍ନେ ଗମଇ ବଇଲେ ।

ଏହି ଚଣ୍ଡୀ ଯୁଦ୍ଧ ମହାପୁରାଣରେ ବିଷୟବସ୍ତୁ ଚଣ୍ଡୀଙ୍କ ଦ୍ୱାରା ମହିଷାସୁର ବଧ । ଯଦିଓ ଚଣ୍ଡୀ ପୁରାଣର ପଦ ସଂଖ୍ୟା ଦୃଷ୍ଟିରୁ ସେଥିରେ ଥିବା ଉପମାମାନଙ୍କର ସଂଖ୍ୟା ବହୁତ କମ୍ । ତଥାପି କବି ସାରଳା ଦାସଙ୍କ ବର୍ଣ୍ଣନା ସଦୃଶ ଉପମାମାନଙ୍କର ପ୍ରୟୋଗ ମାଧ୍ୟମରେ ପ୍ରଳୟାନ୍ତକାଳର ଏକ ସଫଳ ଚିତ୍ର ଅଙ୍କିତ ହୋଇଛି ଏବଂ ଏହି ଉପମା ପ୍ରୟୋଗ ମଧ୍ୟ କବି ସାରଳା ଦାସଙ୍କ ମହାନ୍ ପ୍ରତିଭାର ସ୍ୱଷ୍ଟ ପରିଚୟ ମିଳି ପାରିଥାଏ, ଏହି ଚଣ୍ଡୀ ମହାଯୁଦ୍ଧ–ମହାପୁରାଣ ଗ୍ରନ୍ଥରେ ଏଥିରେ ଦ୍ୱିମତ ହେବାର ନୁହେଁ ।

ସମ୍ପାଦିକା
ନବରବି, ଭୁବନେଶ୍ୱର

❖ ❖ ❖

# ଶକ୍ତି ସ୍ୱରୂପିଣୀ ମା’ ଦୁର୍ଗା

ଅଧ୍ୟାପକ ରବୀନ୍ଦ୍ର କୁମାର ବେହୁରିଆ

ଭାରତୀୟ ଶକ୍ତି ଉପାସନାର ପରମ୍ପରାରେ ବିଭିନ୍ନ ଦେବୀପୂଜା ସ୍ୱୀକୃତ ହୋଇଥିଲେ ହେଁ ସର୍ବତୋଭାବେ ଦୁର୍ଗା ପୂଜାର ସ୍ୱାତନ୍ତ୍ର୍ୟ ଅନୁଭୂତ ହୁଏ । ତୈତ୍ତିରୀୟ ଆରଣ୍ୟକରେ ବର୍ଣ୍ଣିତ ଦୁର୍ଗା ଗାୟତ୍ରୀରୁ ଦୁର୍ଗା ନାମରେ ସର୍ବପ୍ରଥମ ଉଲ୍ଲେଖ ଦୃଷ୍ଟିଗତ ହୁଏ । ଅଧିକନ୍ତୁ ସେଥିରେ ଦୁର୍ଗାଙ୍କୁ ତପଃ ପ୍ରଜ୍ୱଳିତ ରୁପାଶକ୍ତି ରୂପେ ବର୍ଣ୍ଣନା କରାଯାଇ କୁହାଯାଇଛି–

‘ତା ମଗ୍ନିବର୍ଣ୍ଣାଂ ତପସା ଜ୍ୱଳନ୍ତାଂ
ବୈରୋଚନାଂ କର୍ମଫଳେଷୁ ଜୁଷ୍ଟାମ୍ ।
ଦୁର୍ଗାଦେବୀଂ ଶରଣମହଂ ପ୍ରପଦ୍ୟେ
ସୁତରସି ତରସେ ନମଃ ।’

ଦୁର୍ଗା ଶବ୍ଦର ବ୍ୟୁତ୍ପତ୍ତି ପୁରାଣ ଶାସ୍ତ୍ରମାନଙ୍କରେ ବିଭିନ୍ନ ଅର୍ଥରେ ଅବତାରଣା କରାଯାଇଛି । ଶକ୍ତି ସ୍ୱରୂପିଣୀ ତଥା ଶକ୍ତିର ଅଧିଷ୍ଠାତ୍ରୀ ଦେବୀ ମା’ ଦୁର୍ଗାଙ୍କ ଉଦ୍ଦେଶ୍ୟରେ କୁହାଯାଇଛି ଯେ, ‘ଯା ଦେବୀ ସର୍ବଭୁତେଷୁ ଶକ୍ତି ରୂପେଣ ସଂସ୍ଥିତା’ ମହାଭାରତର ବିରାଟ ପର୍ବରେ ଦେବୀଙ୍କୁ ଦୁର୍ଗତିନାଶିନୀ ରୂପେ ଅବତାରଣା କରାଯାଇଛି । ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି ଯେ ଦୁର୍ଗାସୁରର ନିଧନ ପରେ ଦେବୀ ନିଜର ଦୁର୍ଗା ନାମକରଣର ତାତ୍ପର୍ଯ୍ୟ ବ୍ୟାଖ୍ୟାନ କରି କହିଛନ୍ତି–

‘ଅଦ୍ୟ ପ୍ରଭୃତିମେ ନାମ ଦୁର୍ଗେତି ଖ୍ୟାତିମେଷତି
ଦୁର୍ଗ ଦୈତସ୍ୟ ସମରେ ପାତନାବତି ଦୁର୍ଗମାତ୍
ଯେ ମାଂ ଦୁର୍ଗାଂ ଶରଣାଃ ନତେଷାଂ ଦୁର୍ଗତି କ୍ୱଚିତ୍ ।’

ମାର୍କଣ୍ଡେୟ ପୁରାଣରେ ଦେବୀ ଚଣ୍ଡିକା ଭବିଷ୍ୟତରେ ଦୁର୍ଗାମାସୁରକୁ ମାରି ଦୁର୍ଗା ନାମରେ ପୂଜିତ ହେବାର ପ୍ରତିଶ୍ରୁତି ଦେଇ କହିଛନ୍ତି–

‘ତତ୍ରୈବ ଚ ବଧିଷ୍ୟାମି ଦୁର୍ଗାମାଖ୍ୟଂ ମହାସୁରମ୍
ଦୁର୍ଗାଦେବୀତି ବିଖ୍ୟାତଂ ତନ୍ମେ ନାମ ଭବିଷ୍ୟତି ।’

ଶବ୍ଦକଳ୍ପ ଦ୍ରୁମରେ ସୁନ୍ଦର ଭାବରେ ବର୍ଣ୍ଣନା କରାଯାଇଛି ଯେ, ଦୁର୍ଗା ଶବ୍ଦରେ– ‘ଦ’ ଶବ୍ଦର ଅର୍ଥଦୈତ୍ୟନାଶିନୀ, ‘ଉ’ କାରର ଅର୍ଥ ସର୍ବବିଘ୍ନ ବିନାଶିନୀ, ‘ରେଫ୍’ ଦ୍ୱାରା ବୁଝାଏ ସର୍ବରୋଗ ବିନାଶିନୀ, ‘ଗ’ ଅକ୍ଷରର ଅର୍ଥ ପାପ ବିନାଶିନୀ ଏବଂ ‘ଆ’କାର ଅର୍ଥ ବୋଧହୁଏ ସ୍ନେହ ଓ ବାତ୍ସଲ୍ୟ ମମତା ।

ଋଗ୍ ବେଦରେ ସର୍ବପ୍ରଥମେ ଶକ୍ତିତତ୍ତ୍ୱର ପରିଚୟ ଦିଆଯାଇଥିଲା । ଅମ୍‌ଭୃଣ ଋଷିଙ୍କର ବାକ୍ ନାମ୍ନୀ ବ୍ରହ୍ମବିଦୁଷୀ କନ୍ୟା ପ୍ରଥମେ ନିଜକୁ ଦେବୀ ଶକ୍ତିଙ୍କ ସହିତ ଅଭିନ୍ନାରୂପେ ଅନୁଭବ କରି ଯେଉଁ ପ୍ରଭାବଶାଳୀ ତତ୍ତ୍ୱ ବର୍ଣ୍ଣନା କରିଥିଲେ, ତାହାକୁ ଦେବୀସୂକ୍ତ କୁହାଯାଏ ।

ମୁଁ (ସଚ୍ଚିଦାନନ୍ଦ ସ୍ୱରୂପ ଆତ୍ମା) ରୁଦ୍ର, ବସୁ, ଆଦିତ୍ୟ ତଥା ବିଶ୍ୱଦେବ ରୂପରେ ବିଚରଣ କରେ । ମିତ୍ର, ବରୁଣ, ଇନ୍ଦ୍ର, ଅଗ୍ନି ଓ ଅଶ୍ୱିନୀ କୁମାର ଦ୍ୱୟଙ୍କୁ ମୁଁ ଧାରଣ କରିଛି ।

ମୁଁ ଶତ୍ରୁହନ୍ତା ସୋମ, ବିଶ୍ୱକର୍ମା, ସୂର୍ଯ୍ୟ ଓ ଷଡୈଶ୍ୱର୍ଯ୍ୟଶାଳୀ ଦେବତାଙ୍କୁ ଧାରଣ କରିଛି । ଯେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଚୁର ହବିଯୁକ୍ତ ସୋମଯଜ୍ଞାଦି ଅନୁଷ୍ଠାନ କରେ, ସେହି ଯଜମାନଙ୍କର ଯଜ୍ଞଫଳ ମୁଁ ଧାରଣ କରିଥାଏ ।

‘ଅହଂ ରାଷ୍ଟ୍ର ସଙ୍ଗମନୀ ବସୁନାଂ
ଚିକିତୁଷୀ ପ୍ରଥମା ଯଜ୍ଞିୟାନମ୍,
ତାଂ ମା ଦେବା ବ୍ୟଦଧୁଃ ପୁରୁତ୍ରା
ଭୁରିସ୍ଥାତ୍ରାଂ ଭୁର୍ଯ୍ୟାବେଶୟନ୍ତୀମ୍ ।’

ମୁଁ ସୃଷ୍ଟି ସ୍ଥିତି ପ୍ରଳୟକାରୀ ଜଗଦିଶ୍ୱରୀ । ମୁହିଁଗୋ, ହିରଣ୍ୟ ତଥା ଜ୍ଞାନ-ବିଦ୍ୟାଦି ଧନଦାତ୍ରୀ । ମୁଁ ଯେଉଁ ଜ୍ଞାନ ଦିଏ, ଜୀବ ସେଥିରେ ଆତ୍ମସ୍ୱରୂପ ବା ଆତ୍ମଜ୍ଞାନ ଲାଭ କରେ । ଏହା ସର୍ବଉପାସନାର ଆଦିଜ୍ଞାନ । ମୁଁ ବହୁଭାବରେ ଅବସ୍ଥିତ । ଦେବତାମାନେ ଏହି ଆତ୍ମଜ୍ଞାନକୁ ଭଜନ କରନ୍ତି ।

ଦେବୀସୂକ୍ତ ବ୍ୟତୀତ ବେଦରେ ଦୁର୍ଗାସୂକ୍ତରେ ମଧ୍ୟ ଶକ୍ତିଙ୍କ ବର୍ଣ୍ଣନା କରାଯାଇଛି– ଯଥା:

‘ଓଁ ଜାତବେଦସେ ସୁନବାମ ସୋମ ମରତୋବତୋ
ନିଦହାତି ବେଦସନଃ ପର୍ଷଦତି ବିଶ୍ୱାନାବୈବ
ସିନ୍ଧୁଂ ଦୁରିତାତ୍ୟଗ୍ନିଃ ।’

ଏହି ଦୁର୍ଗାସୂକ୍ତର ମନ୍ତ୍ରପାଠ ଦ୍ୱାରା ସକଳ ଦୁଃଖର ଦୂରହୁଏ, ଆସୁରିକ ପ୍ରବୃତ୍ତିର ବିନାଶ ହୁଏ, ଶତ୍ରୁ ଭୟ ଦୂରହୁଏ ଓ ଅନ୍ୟାୟ ଅତ୍ୟାଚାର ଲୋପପାଏ ।

ଉପନିଷଦ ଦର୍ଶନ ଗ୍ରନ୍ଥରେ ତାଲିକାଭୁକ୍ତ ହୋଇଥିବା ୧୧୬ଟି ଉପନିଷଦ ମଧ୍ୟରୁ ପ୍ରାୟ ସମସ୍ତ ଉପନିଷଦ ଶକ୍ତି ଉପାସନାରେ ଶତମୁଖର । କେନ ଉପନିଷଦରେ ହେମବତୀ ଉମା ଉପାଖ୍ୟାନ ସର୍ବଜନବିଦିତ । ରାମାୟଣ ଉପନିଷଦରେ ଦୁର୍ଗା ଗାୟତ୍ରୀ ଓ ପ୍ରଣାମ ମନ୍ତ୍ରରେ ଦୁର୍ଗାଙ୍କର ସନ୍ଧାନ ମିଳିଥାଏ । ମହାଭାରତର ବିରାଟ ପର୍ବରେ ପାଣ୍ଡବଙ୍କର ଅଜ୍ଞାତ ବନବାସ, ବିରାଟପୁରରେ ନିର୍ଭୟରେ ଜୀବନ ଅତିବାହିତ ନିମନ୍ତେ ଯୁଧିଷ୍ଠିର ଭାଇମାନଙ୍କୁ ଧରି ଦୁର୍ଗାଙ୍କର ଉପାସନା କରିବାର ବର୍ଣ୍ଣନା ଅତ୍ୟନ୍ତ ହୃଦୟସ୍ପର୍ଶୀ । କୁରୁକ୍ଷେତ୍ର ଯୁଦ୍ଧର ଜୟଲାଭ ନିମିତ୍ତ ଅର୍ଜୁନଙ୍କର ଦୁର୍ଗୋତ୍ସବ ଅତ୍ୟନ୍ତ ଚମତ୍କାର । ରାମାୟଣର ମଧ୍ୟ ଅନୁରୂପ ଭାବେ ଦୁର୍ଗା ପୂଜାର ଆଭାସ ମିଳିଥାଏ । ଅକାଳ ବୋଧନ ପୂଜା ତନ୍ମଧ୍ୟରୁ ଅନ୍ୟତମ ।

ଆମର ୧୮ଟି ପୁରାଣ ଓ ୧୮ଟି ଉପପୁରାଣ ମଧ୍ୟରୁ ଶ୍ରୀମଦ୍ ଭାଗବତ, ମାର୍କଣ୍ଡ ପୁରାଣ, ଦେବୀ ପୁରାଣ, ଚଣ୍ଡୀ ପୁରାଣ, ବୃହଦ୍‌ନନ୍ଦକେଶର ପୁରାଣ ଏବଂ କାଳିକା ପୁରାଣ ମା’ ଦୁର୍ଗାଙ୍କ ସ୍ତୁତିରେ ଶତମୁଖର ।

ବୈଦିକ ଯୁଗରୁ ପ୍ରଚଳିତ ହୋଇ ଆସୁଥିବା ଦୁର୍ଗାତତ୍ତ୍ୱର ଧାରଣାର ପରିପୂର୍ତ୍ତି ସାଧିତ ହୁଏ ତନ୍ତ୍ରରେ । ତନ୍ତ୍ରରେ ମା’ ଦୁର୍ଗାଙ୍କୁ ଏକ ଅଖଣ୍ଡ ମହାଶକ୍ତି– ବ୍ରହ୍ମମୟୀ ବ୍ରାହ୍ମୀ, ବିଷ୍ଣୁମୟୀ ବୈଷ୍ଣବୀ, ଶମ୍ଭୁମୟୀ-ଶାମ୍ଭଦେବୀ ଆଦିଭାବେ ଚିତ୍ରଣ କରାଯାଇଛି । ଚଉଷଠି ପ୍ରକାର ତନ୍ତ୍ର ସାଧନାରେ ମା’ ଦୁର୍ଗା ସକଳ ଦେବତା ଏବଂ ସକଳ ଉପାସନା ତତ୍ତ୍ୱଗୁଡ଼ିକୁ ଏକ ସମନ୍ୱୟ ସୂତ୍ରରେ ଗୁନ୍ଥି ଦେଉଛନ୍ତି । ଏହି ଆଦ୍ୟାଶକ୍ତି ମା’ ଦୁର୍ଗାଙ୍କର ଉପାସନା ବେଦ, ଉପନିଷଦ, ପୁରାଣ ଓ ତନ୍ତ୍ରର ଧର୍ମ ଧାରଣାରେ ପ୍ରଭାବିତ ଓ ପରିପୁଷ୍ଟ ଲାଭ କରିବା ସଙ୍ଗେ ସଙ୍ଗେ କମନୀୟ ଓ ମହନୀୟ ହୋଇ ସର୍ବଜନାଦୃତ ହୋଇ ଉଠିଛି ।

ସର୍ବୋପରି ଦୁର୍ଗାଦେବୀ ସ୍ୱୟଂ ଶାସ୍ତ୍ରାଦିରେ ‘ଦଶହରା’ ନାମରେ ଅଭିହିତ ହୋଇଅଛି । ଯଥା– ‘ଦଶରାବଣ ମସ୍ତକାନି ହରତି ଯା ସା ଦଶହରା ।’ ଦେବୀ ଦୁର୍ଗା ରାବଣର ଦଶ ମସ୍ତକ ହରଣ କରିବା ସହିତ ଦେବତାମାନଙ୍କର ଦଶାହରଣ କରିଥିବାରୁ ଦେବୀଙ୍କୁ ‘ଦଶହରା’ ବା ‘ଦଶାହରା’ ବୋଲି କୁହାଯାଇଥାଏ । ‘ଦଶ ଅବତୋପାଦାନ ହଂସାଦି ଦଶବିଧାନି ଦଶଜନ୍ମକୃତ ପାପାନି ହରତୀତି ଦଶହରା’– ପ୍ରୋକ୍ତ ଉକ୍ତିରୁ ଜଣାଯାଏ ଯେ ଦୁର୍ଗା ପୂଜାରେ ଦଶଜନ୍ମକୃତ ହଂସାଦି ଦଶ ଅବତୋପାଦାନ ପାପରୁ ନିଷ୍କୃତି ମିଳେ ବୋଲି ଏହାକୁ  ଦଶହରା କୁହାଯାଏ ।

ସାଧାରଣତଃ ଆଷାଢ଼ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ ପର୍ଯ୍ୟନ୍ତ ଦେବଦେବୀଙ୍କ ରାତ୍ରି ବା ଶୟନ ସମୟ । ତେଣୁ ଏହି ସମୟ ଅବଧି ମଧ୍ୟରେ ବିବାହ, ବ୍ରତ, ଗୃହାରମ୍ଭ ଇତ୍ୟାଦି ଶୁଭକର୍ମାନୁଷ୍ଠାନ ପୂର୍ବକ ଦେବଦେବୀଙ୍କୁ ଆବାହନ କରଣୀୟ ନୁହେଁ । କାରଣ ଏହି ସମୟରେ ଆବାହନ କଲେ ତାଙ୍କର ଯୋଗ ନିଦ୍ରାରେ ବ୍ୟାଘାତ ଘଟିବା ଅବଶ୍ୟମ୍ଭାବୀ । କିନ୍ତୁ ତ୍ରେତୟା ଯୁଗରେ ମର୍ଯ୍ୟାଦାପୁରୁଷ ରାମଚନ୍ଦ୍ର ଦେବୀ ଦୁର୍ଗାଙ୍କୁ ଶରତ କାଳରେ (ଅକାଳରେ) ନିଦ୍ରାରୁ ଉଠାଇ ପୂଜା ମାଧ୍ୟମରେ ବୋଧନ କରାଇଥିବାରୁ ଏହି ଦୁର୍ଗାପୂଜାକୁ ‘ଅକାଳବୋଧନ’ କୁହାଯାଇଥାଏ । ପୁନଶ୍ଚ ଶ୍ରୀରାମଚନ୍ଦ୍ର ଦେବୀଙ୍କର ସହାୟତାରେ ଦଶାନନକୁ ଯୁଦ୍ଧରେ ନିହତ ପୂର୍ବକ ବିଜୟଲାଭ କରିଥିବାରୁ ଦୁର୍ଗାପୂଜାର ଉଦ୍‌ଯାପନ ଉତ୍ସବଟି ‘ବିଜୟାଦଶମୀ’ ନାମରେ ନାମିତ ହୋଇଅଛି ।

ଇତିହାସର ପୃଷ୍ଠା ଅନୁଶୀଳନ କଲେ ଜଣାଯାଏ ଯେ ଓଡ଼ିଶାରେ ଭୌମକର ବଂଶୀୟ ରାଜାମାନଙ୍କ ରାଜତ୍ୱ କାଳରେ ଶକ୍ତି ସ୍ୱରୂପିଣୀ ଦୁର୍ଗା ପୂଜାର ପ୍ରସାର ବ୍ୟାପକ ହୋଇଥିଲା । ଏହି ସମୟରେ ପ୍ରାଚୀ, ଚିତ୍ରୋତ୍ପଳା ଓ ବ୍ରାହ୍ମଣୀ ନଦୀର ଅବବାହିକାରେ ଏବଂ ଓଡ଼ିଶାର ଅନ୍ୟାନ୍ୟ ସ୍ଥାନରେ ବାରାହୀ, ଭୈରବୀ, ମନସା, କାଳୀ, ପର୍ଣ୍ଣଶବରୀ, ତାରା, ଅମ୍ବା, ଅମ୍ବାଳିକା, ପ୍ରଭୃତି ଶାନ୍ତ ଦେବୀଙ୍କ ସହିତ ଚତୁର୍ଭୁଜା, ଷଡଭୁଜା, ଅଷ୍ଟଭୁଜା, ଦଶଭୁଜା, ଦ୍ୱାଦଶଭୁଜା, ଷୋଡଶ ଭୁଜା ମହିଷମର୍ଦ୍ଦିନୀ ଦୁର୍ଗା

ଉପାସିତା ହେଉଥିଲେ । ଭୁବନେଶ୍ୱରସ୍ଥ ବୈତାଳ ମନ୍ଦିର ଗାତ୍ରରେ ଖୋଦିତ ଅଷ୍ଟଭୁଜା ଦୁର୍ଗା ଏହି ସମୟର ଜବାଲି ଗବେଷକମାନଙ୍କ ମତ । ଭୌମରାଣୀ ତ୍ରିଭୁବନ ମହାଦେବୀ ଓ ଦଣ୍ଡୀ ମହାଦେବୀଙ୍କ ପ୍ରଶସ୍ତିରେ ସେମାନଙ୍କୁ କାତ୍ୟାୟିନୀଙ୍କ ସହିତ ତୁଳନା କରାଯାଇଛି । ପ୍ରତିଷ୍ଠା ଓ ଲୋକପ୍ରିୟତା ଅର୍ଜନ କରିବା ନିମନ୍ତେ ଜନମାନସରେ ଅଧିଷ୍ଠିତ ଦେବତାଙ୍କ ଭାବମୂର୍ତ୍ତି ଗ୍ରହଣ କରିବା ଏକ ବହୁଳ ଅନୁସୃତ ପ୍ରଥା ଥିଲା । ସେ ସମୟରେ ବହୁ ଅଭିଲେଖରେ ଚାମୁଣ୍ଡା ଓ କାତ୍ୟାୟିନୀଙ୍କ ସ୍ତୁତିଗାନ କରାଯାଇଛି । ତହିଁରୁ ତତ୍କାଳୀନ ପ୍ରଜାବର୍ଗଙ୍କର ଦୁର୍ଗାନୁରକ୍ତି ସ୍ପଷ୍ଟ ସୂଚିତ । ସୋମବଂଶୀ ରାଜାମାନଙ୍କ ଦ୍ୱାରା ଗୃହୀତ ପରମ ଭଟ୍ଟାରକ ଉପାଧିରୁ ଜଣାଯାଏ ସେମାନେ ଶାକ୍ତ ଉପାସକ ଥିଲେ । ସେମାନଙ୍କ ପରବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନେ ମୁଖ୍ୟତଃ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ ହେଁ ଶାକ୍ତ ବିରୋଧୀ ନଥିଲେ । ଚୋଡଗଙ୍ଗ ନୃପତି ଚୋଡଗଙ୍ଗଦେବଙ୍କ ରାଜତ୍ୱ କାଳରେ ନିର୍ମିତ ଜଗନ୍ନାଥ ମନ୍ଦିରରେ ସୁଭଦ୍ରା ଦେବୀ ଦୁର୍ଗା ବା କାତ୍ୟାୟିନୀଙ୍କ ଅବତାରରୂପୀ ଏକାନଂସା ଭାବେ ପୂଜିତା ହୋଇଆସୁଛନ୍ତି । ବେଢା ମଧ୍ୟରେ ମୁଖ୍ୟ ଦେବୀଭାବେ ପୂଜିତା ମା' ବିମଳା ହେଉଛନ୍ତି ଜଗନ୍ନାଥଙ୍କର ଭୈରବୀ । ଏଠାରେ ଅନୁଷ୍ଠିତ ଷୋଳ ଦିବସୀୟ ପୂଜାରେ ବିମଳାଙ୍କୁ ଏଗାର ପ୍ରକାର ଭିନ୍ନ ଭିନ୍ନ ଭବ୍ୟବେଶ କରାଯାଇଥାଏ । ସେଗୁଡ଼ିକ ହେଲା– (୧) ବନଦୁର୍ଗା (୨) ଭୁବନେଶ୍ୱରୀ (୩) ନାରାୟଣୀ (୪)ଶ୍ରୀ ମଙ୍ଗଳା (୫) ଜୟଦୁର୍ଗା (୬) ଉଗ୍ରତାରା (୭) ମାତଙ୍ଗିନୀ (୮) ଦଶଭୁଜା, (୯) ରାଜ ରାଜେଶ୍ୱରୀ (୧୦) ହରଚଣ୍ଡୀ (୧୧) ସିଂହବାହିନୀ । ସିଂହବାହିନୀ ବେଶ ଷଷ୍ଠୀ ଦିବସରେ ଅନୁଷ୍ଠିତ ହୁଏ ଏବଂ ଏହି ବେଶ ନବମୀ ପର୍ଯ୍ୟନ୍ତ ଚାରିଦିନ ରହେ ।

ଗଙ୍ଗ ରାଜତ୍ୱ କାଳରେ ପ୍ରଣୀତ ଧର୍ମଶାସ୍ତ୍ରରେ ଶତାନନ୍ଦ ଆଚାର୍ଯ୍ୟଙ୍କ ଶତାନନ୍ଦ ସଂଗ୍ରହ ଗ୍ରନ୍ଥରେ ଗୌରୀବ୍ରତ ଅପରାଜିତା ଦଶମୀ, ଦଶହରା ବ୍ରତର ଉଲ୍ଲେଖ ଅଛି । ବୃହସ୍ପତି ସୂରୀଙ୍କ 'କୃତ୍ୟ କୌମୁଦୀ' ଗ୍ରନ୍ଥରେ ମଧ୍ୟ ମହାଷ୍ଟମୀ ଦୁର୍ଗାପୂଜା ବ୍ରତ ସମ୍ପର୍କରେ ବର୍ଣ୍ଣନା ଅଛି ।

ସୂର୍ଯ୍ୟବଂଶୀ ରାଜା ଗଜପତି କପିଳେନ୍ଦ୍ର ଦେବ, ପୁରଷୋତ୍ତମ ଦେବ ଓ ପ୍ରତାପରୁଦ୍ର ଦେବ ନିଜକୁ ଶ୍ରୀଦୁର୍ଗାଙ୍କର ବରପୁତ୍ର ରୂପେ ଅଭିଲେଖଗୁଡ଼ିକରେ ଉଦ୍‌ଘୋଷଣା କରିଛନ୍ତି । ଗଜପତି ପୁରୁଷୋତ୍ତମ ଦେବ ପ୍ରଣୀତ 'ଭୁବନେଶ୍ୱରୀ ପୂଜା ପଲ୍ଲବ, ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଶାରଦା ଶରଦ ଅର୍ଚ୍ଚନ ପଦ୍ଧତି, ବାସୁଦେବ ରଥଙ୍କର ଶ୍ୟାମାର୍ଚ୍ଚନ ପଦ୍ଧତି ଓ ଭୁବନେଶ୍ୱରୀ ପ୍ରକାଶ ଗ୍ରନ୍ଥରୁ ଗଜପତି ରାଜତ୍ୱ କାଳରେ ଶାକ୍ତ ଉପାସନା ଲୋକପ୍ରିୟ ଥିଲା ବୋଲି ଜଣାଯାଏ ।

ଖୋର୍ଦ୍ଧା ଭୋଇବଂଶ ରାଜତ୍ୱ କାଳରେ ପ୍ରଣୀତ ଧର୍ମଶାସ୍ତ୍ରଗୁଡ଼ିକରେ ବିଶ୍ୱନାଥ ମିଶ୍ରଙ୍କ 'ସ୍ମୃତିସାର ସଂଗ୍ରହ' ଦିବ୍ୟ ସିଂହ ମହାପାତ୍ରଙ୍କ 'କୁଳଦୀପ', ରଘୁନାଥ ସିଂହଙ୍କ କାଳ ନିର୍ଣ୍ଣୟ ଓ ବନଦୁର୍ଗାପୂଜା, ଗଦାଧର ରାଜଗୁରୁଙ୍କ କାଳସାର ଗ୍ରନ୍ଥଗୁଡ଼ିକରେ ଅନ୍ୟାନ୍ୟ ଶାକ୍ତ ଓଷା, ବ୍ରତ ସହିତ ଦୁର୍ଗାଷ୍ଟମୀ ବ୍ରତର ଉଲ୍ଲେଖ କରାଯାଇଛି । ସୂର୍ଯ୍ୟବଂଶୀ ରାଜତ୍ୱ କାଳରେ ତାନ୍ତ୍ରିକ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପ୍ରଣୀତ ଶାରଦା ଶରଦର୍ଚ୍ଚନ ପଦ୍ଧତି ଓଡ଼ିଶାରେ ଶରତ କାଳୀନ ଦୁର୍ଗାପୂଜା ସମ୍ବନ୍ଧରେ ସର୍ବପ୍ରଥମ ପ୍ରଣିଧାନଯୋଗ୍ୟ ଗ୍ରନ୍ଥ । ଏଥିରେ ବିଭିନ୍ନ ନ୍ୟାସ, ମନ୍ତ୍ର, ଦେବତା ଶୁଦ୍ଧି, ଦେବୋପାସନା, ରଥ, ଗଜ ଓ ଅଶ୍ୱପୂଜା, ପଶୁବଳୀ, ଶାସ୍ତ୍ରାଦି ପୂଜା, କାଷ୍ଠଦେବୀ ପୂଜା, ବିଭିନ୍ନ ଅସ୍ତ୍ର ଶସ୍ତ୍ର ବାଦ୍ୟ ଓ ଶଲ୍ୟ ଗ୍ରନ୍ଥାବଳୀ ସମ୍ପର୍କରେ ବିସ୍ତୃତଭାବେ ଆଲୋଚନା କରାଯାଇଛି ।

ଭୋଇବଂଶ ରାଜତ୍ୱ କାଳରେ କବିବର୍ଦ୍ଧନ ମହାପାତ୍ରଙ୍କ ରଚିତ, 'ଦୁର୍ଗୋତ୍ସବ ଚନ୍ଦ୍ରିକା' ଗ୍ରନ୍ଥ ମଧ୍ୟ ଓଡ଼ିଶାରେ ସମ୍ୟକ୍ ଆଦର ଲାଭ କରିଛି । ଦେଶ ତଥା ଗୋସମ୍ପତ୍ତି, ଶସ୍ୟ ସମ୍ପଦର ସମୃଦ୍ଧି ସହିତ ବର୍ଣ୍ଣ ନିର୍ବିଶେଷରେ ପ୍ରଜାବର୍ଗଙ୍କ କଲ୍ୟାଣ ସାଧନ ନିମିତ୍ତ ମହିଷମର୍ଦ୍ଦିନୀ ଦୁର୍ଗାଙ୍କର ଷୋଡଶ ଦିବସାବିଧି ପୂଜାବିଧିର ଦିଗ୍‌ଦର୍ଶନ ଏହାର ମୁଖ୍ୟ ପ୍ରତିପାଦ୍ୟ ବିଷୟ ।

ବ୍ୟାସକୃତ ମୂଳ ମହାଭାରତର ଅନୁକରଣରେ ଓଡ଼ିଶାର ଆଦିକବି ଶାରଳା ଦାସ ମହାଭାରତର ବିରାଟ ପର୍ବରେ ଯୁଧିଷ୍ଠିରଙ୍କ 'ଦୁର୍ଗୋତ୍ସବ', ଭୀଷ୍ମ ପର୍ବରେ ଅର୍ଜୁନଙ୍କ 'ଦୁର୍ଗାସ୍ତୋତ୍ର'ର ଅବତାରଣା କରିଛନ୍ତି । ଚଣ୍ଡୀ ପୁରାଣରେ ସେ ମହାପରାକ୍ରମୀ ଦୈତ୍ୟ ମହିଷାସୁରର ବିନାଶ ପାଇଁ ଧରାପୃଷ୍ଠରେ ମହାମାୟା ଦୁର୍ଗାଙ୍କ ଆବିର୍ଭାବର ପ୍ରସଙ୍ଗକୁ ଚମତ୍କାରଭାବେ ବର୍ଣ୍ଣନା କରିଛନ୍ତି । କବି ବଳରାମ ଦାସଙ୍କ ରଚିତ 'ରାମାୟଣ'ରେ ଶ୍ରୀରାମଚନ୍ଦ୍ର ଯୁଦ୍ଧରେ ରାବଣକୁ ପରାଜୟ କରିବା ନିମନ୍ତେ ଶ୍ରୀଦୁର୍ଗାଙ୍କୁ ଅର୍ଚ୍ଚନା କରିଥିବାର ଉଲ୍ଲେଖ ଅଛି ।

ଏହି ଶାରଦୀୟ ଉତ୍ସବ ନିମିତ୍ତ ଦେବୀଙ୍କର ମୃଣ୍ମୟ ମୂର୍ତ୍ତି ନିର୍ମାଣର କାର୍ଯ୍ୟକ୍ରମ ଏକ ଶୁଭଦିନ ଦେଖି ନିକଟସ୍ଥ ବିଲ୍ୱ କିମ୍ବା ଅଶ୍ୱତ୍ଥ ବୃକ୍ଷମୂଳରୁ ବିଶେଷପୂଜା ସହ ମାଟି ଆଣି ମୂର୍ତ୍ତିଗଢା କାର୍ଯ୍ୟ ଆରମ୍ଭ ହୋଇଥାଏ । ଖଡ଼ିଚଢା ଅମାବାସ୍ୟା ଦିନ ରଙ୍ଗଦେବା କାର୍ଯ୍ୟ ବିଧିମୁତାବକ ଆରମ୍ଭ ହୁଏ । ମୂଳାଷ୍ଟମୀ ଦିନ ମା'ଙ୍କୁ ଆବାହନ କରି ପୀଠ ନିକଟକୁ ଅଣାଯାଏ । ଏହାକୁ ଷୋଳପୂଜା ଘଟ କୁହାଯାଏ ।

ଶାରଦୀୟ ଦୁର୍ଗା ପୂଜାରେ ଓଡ଼ିଶାର ବିଭିନ୍ନ ପୂଜାପୀଠ ମାନଙ୍କରେ ଆଶ୍ୱିନ ଶୁକ୍ଳ ଷଷ୍ଠୀଠାରୁ ଦଶମୀ ପର୍ଯ୍ୟନ୍ତ ମୃଣ୍ମୟୀ ଦେବୀଙ୍କଠାରେ ବିଲ୍ୱାଧିବାସ, ନବପତ୍ରିକା, ସନ୍ଧି, ଅପରାଜିତା ଓ କୁମାରୀ ପୂଜା ଆଦି ବିଶେଷ ପୂଜାନୁଷ୍ଠାନ କରାଯାଏ । ଆଶ୍ୱିନ ଶୁକ୍ଳ ଷଷ୍ଠୀର ରାତ୍ରିକାଳରେ ଦେବୀଙ୍କ ଅକାଳବୋଧନ ବା ଆମନ୍ତ୍ରଣାଧିବାସ ବିଲ୍ୱବୃକ୍ଷ ସମୀପରେ ସମ୍ପନ୍ନ ହୁଏ । ବିଲ୍ୱବୃକ୍ଷରେ ଦେବୀଙ୍କ ବୋଧନ କାଳରେ 'ଶ୍ରୀ ବୃକ୍ଷେ ବୋଧୟାମି ତ୍ୱାଂ ଯାବତ୍ ପୂଜାଂ କରୋମ୍ୟହମ୍ ।', ଏହି ମନ୍ତ୍ରରେ ବିଲ୍ୱାଧିବାସ କାଳରେ ଦେବୀଙ୍କୁ ଆବାହନ କରାଯାଏ । ନବ ପତ୍ରିକା ପୂଜାରେ ନଅ ପ୍ରକାର ଉଦ୍ଭିଦ ମଧ୍ୟରେ ବିଲ୍ୱଶାଖା ଅନ୍ୟତମ । ଯୁଗଳ ବିଲ୍ୱଫଳ ନବ ପତ୍ରିକା ମଧ୍ୟରେ ସଂଯୁକ୍ତ କରି 'ଓଁ ବିଲ୍ୱାଧିଷ୍ଠାତ୍ର୍ୟୈ ଶିବାୟୈ ନମଃ'– ଏହି ମନ୍ତ୍ରରେ ବିଲ୍ୱଶାଖାକୁ ପୂଜା କରାଯାଏ ।

ଦୁର୍ଗାପୂଜା ସହ ନବ ପତ୍ରିକାର ସଂଯୋଗ ପରବର୍ତ୍ତୀ କାଳରେ ହୋଇଅଛି ବୋଲି ପଣ୍ଡିତମାନେ ମତ ଦିଅନ୍ତି । କାଳିକା ପୁରାଣରେ ନବ ପତ୍ରିକା ପୂଜାର ପ୍ରଶସ୍ତ ବର୍ଣ୍ଣନା ରହିଛି । ନବ ପତ୍ରିକାର ଅର୍ଥ– କଦଳୀ, ସାରୁ, ହରିଦ୍ରା, ଜୟନ୍ତୀ, ବିଲ୍ୱ, ଡାଳିମ୍ବ, ଅଶୋକ, ପାନ ଓ ଧାନ ଆଦି ନଅଟି ଗଛକୁ ବୁଝାଏ । ସପତ୍ର ଶାଖାଯୁକ୍ତ ଏହି ନଅଗୋଟି ଗଛକୁ ଜୋଡାବେଲ ସହ ଅପରାଜିତା ଲତାରେ ବାନ୍ଧି ଲାଲ ଶାଢୀ ଦ୍ୱାରା ଏକ ବଧୂ କଳ୍ପନାରେ ଆବୃତ କରି ପୂଜା କରିବାର ବିଧି ରହିଛି । ନ'ଟି ଉଦ୍ଭିଦର ଏକତ୍ର ସହାବସ୍ଥାନ ନବ ପତ୍ରିକାକୁ ନବଦୁର୍ଗା ଭାବରେ– 'ଓଁ ନବପତ୍ରିକା ବାସିନ୍ୟୈ ନବ ଦୁର୍ଗା ଯୈ ନମଃ'– ଏହି ମନ୍ତ୍ରରେ ଆବାହନ ପୂର୍ବକ ପୂଜା କରାଯାଏ । ଦୁର୍ଗାପୂଜା ସହ ନବ ପତ୍ରିକାର ସମ୍ପର୍କରୁ ପଣ୍ଡିତଗଣ ମତ ଦିଅନ୍ତି ଯେ ନବ ପତ୍ରିକା ପୂଜା ଦ୍ୱାରା ଶସ୍ୟଦେବୀ ପୃଥିବୀ ମାତାଙ୍କୁ ପୂଜା କରିବାର ଏଥିରେ ଏକ ପ୍ରଚ୍ଛନ୍ନ ପ୍ରୟନ୍ ନିହିତ ଅଛି ।

ନବପତ୍ରିକା ପୂଜାପରି ସନ୍ଧିପୂଜା ଦୁର୍ଗାପୂଜାର ଏକ ବିଶେଷ ଅନୁଷ୍ଠାନ । ଅଷ୍ଟମୀ ଓ ନବମୀ ତିଥିର ସଂଯୋଗ କାଳରେ ଅନୁଷ୍ଠିତ ବିଶେଷ ପୂଜା ସନ୍ଧିପୂଜା ନାମରେ ଖ୍ୟାତ । ଲୌକିକ ବିଶ୍ୱାସ ଅଛି ଯେ ଏହି ସମୟରେ ଦେବୀଙ୍କ ସାକ୍ଷାତ ଆବିର୍ଭାବ ହୁଏ । ବୃହର୍ଦ୍ଧମ ପୁରାଣରେ ବର୍ଣ୍ଣିତ ଅଛି ରାବଣ ବଧ ନିମନ୍ତେ ବ୍ରହ୍ମା ସନ୍ଧିପୂଜା କରି ଆଶ୍ୱିନ କୃଷ୍ଣ ନବମୀରେ ଦେବୀଙ୍କୁ ଆବାହନ କରିଥିଲେ । ଦେବୀ ଚଣ୍ଡିକା ସନ୍ଧିପୂଜା ସମୟରେ ଆବିର୍ଭୁତା ହୋଇ ରାବଣ ବଧ ନିମିତ୍ତ ବର ପ୍ରଦାନ କରିଥିଲେ । ଏହି କାରଣରୁ ସନ୍ଧି ପୂଜାର ସ୍ୱାତନ୍ତ୍ର୍ୟ ରହିଅଛି । ଅଷ୍ଟମୀ ତିଥିର ଶେଷ ୨୪ମିନିଟ ଏବଂ ନବମୀ ତିଥିର ପ୍ରଥମ ୨୪ ମିନିଟ ମଧ୍ୟରେ ମୋଟ ୪୮ ମିନିଟ୍ 'ସନ୍ଧିପୂଜା'ର ସମୟ । ଏହି ସମୟରେ ଚାମୁଣ୍ଡା ରୂପିଣୀ ଦୁର୍ଗାଙ୍କର ପୂଜା କରାଯାଏ । ଏହି ନବମୀ ତିଥିରେ ବଳିଦାନର ବ୍ୟବସ୍ଥା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

କୁମାରୀ ପୂଜା ଦୁର୍ଗାପୂଜାର ଏକ ବୈଶିଷ୍ଟ୍ୟପୂର୍ଣ୍ଣ ଦିଗ । ସପ୍ତମୀ, ଅଷ୍ଟମୀ ଓ ନବମୀ ପୂଜା ଶେଷରେ କୁମାରୀ କନ୍ୟାଙ୍କୁ ନବବସ୍ତ୍ର ପରିଧାନ କରାଇ ଦେବୀଜ୍ଞାନରେ ପୂଜା କରିବାର ରୀତି ପ୍ରଚଳିତ ଅଛି । ବୃହର୍ଦ୍ଧମ ପୁରାଣରେ କୁହାଯାଇଛି ଯେ ଦେବତାମାନଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଦୁର୍ଗା ଦେବଗଣଙ୍କ ସମ୍ମୁଖରେ କନ୍ୟା ରୂପରେ ଆବିର୍ଭୂତ ହୋଇଥିଲେ । ଦେବୀ ପୁରାଣରେ ନିର୍ଦ୍ଦେଶ ଅଛି ଯେ ଦେବୀଙ୍କ ପୂଜା ଶେଷରେ କୁମାରୀମାନଙ୍କୁ ଯଥୋକ୍ତ ପୂଜା କରି ସୁମିଷ୍ଟ ଭୋଜନ ଦ୍ୱାରା ଆପ୍ୟାୟିତ କରାଇବା ଉଚିତ । ଦୁର୍ଗାପୂଜା ସହ କୁମାରୀ ପୂଜାର ସମ୍ପର୍କ ତାନ୍ତ୍ରିକ ସାଧନାର ନିଚ୍ଛକ ପ୍ରତିଫଳନ ଅଟେ । ପ୍ରଥମେ ପଶ୍ଚିମବଙ୍ଗରେ କୁମାରୀ ପୂଜାର ସୂତ୍ର ଘଟି ପରବର୍ତ୍ତୀ କାଳରେ ଅନ୍ୟତ୍ର ଏହାର ପ୍ରସାର ଘଟିଅଛି ବୋଲି ମନେହୁଏ ।

ତନ୍ତ୍ର ମତବାଦର ଛାୟା ରୂପେ କୁମାରୀ ପୂଜାପରି ଅପରାଜିତା ପୂଜା ଦୁର୍ଗାପୂଜାର ଅନ୍ୟଏକ ତାତ୍ପର୍ଯ୍ୟପୂର୍ଣ୍ଣ ଦିଗ ଅଟେ । ଦୁର୍ଗାପୂଜାର ଦଶମୀ ଦିନ ଘଟ ବିସର୍ଜନ ପରେ ଅପରାଜିତା ପୂଜାବିଧି ପ୍ରଚଳିତ । ଚତୁର୍ଭୁଜା ଅପରାଜିତା ବୈଷ୍ଣବୀ ଶକ୍ତି ଲକ୍ଷ୍ମୀ ଓ ଶିବଶକ୍ତି ଶିବାନୀଙ୍କ ମିଶ୍ରିତ ଶକ୍ତି ରୂପେ କଳ୍ପିତା । ଦୁର୍ଗାଙ୍କ ନାମାନ୍ତର ମଧ୍ୟ ଅପରାଜିତା । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଦୁର୍ଗେ ନିବେଶିତା ଦେବୀ ଅପରାଜିତା ନାମରେ ପୂଜା ହେବା ବିଷୟ ବର୍ଣ୍ଣିତ ହୋଇଅଛି । ସମ୍ଭବତଃ ନାମ ସାଦୃଶ୍ୟ ହେତୁ ଏହି ଦଶମୀରେ ଅପରାଜିତା ପୁଷ୍ପ ସମର୍ପଣ ପୂର୍ବକ ଅପରାଜିତା ସ୍ତୋତ୍ର ପାଠ କରାଯିବାର ବିଧି ଅଛି ।

ଦୁର୍ଗୋତ୍ସବ ଦଶହରା ପର୍ବ ରୂପେ ସର୍ବଭାରତୀୟ ପ୍ରସିଦ୍ଧି ଲାଭ କରିଅଛି । ଆଶ୍ୱିନ ଶୁକ୍ଳ ଶ୍ରବଣାଯୁକ୍ତ ଦଶମୀ ବିଜୟା ଦଶମୀ ନାମରେ ଖ୍ୟାତ ଅଟେ । ଏ ସମ୍ପର୍କୀୟ ଶାସ୍ତ୍ରୀୟ ପ୍ରମାଣ ପ୍ରଣିଧାନଯୋଗ୍ୟ ।

'ଆଶ୍ୱିନ ଦଶମୀଯୁକ୍ତା ଶ୍ରବଣେନ ସମନ୍ୱିତା
ବିଜୟା ଦଶମୀ ପ୍ରୋକ୍ତା ସାଚୈବାତ୍ୟନତ ଦୁର୍ଲଭା'

ଆମ ଓଡ଼ିଶାରେ ଦୁର୍ଗାପୂଜା ବହୁ ପ୍ରାଚୀନ । ଓଡ଼ିଶାରେ ଥିବା ସମସ୍ତ ଶକ୍ତି ପୀଠରେ ଏଇ ପୂଜା ପ୍ରଚଳିତ ହୋଇଆସୁଅଛି ।

ଖଣ୍ଡାୟତର ଖଣ୍ଡା, ବାରିକର କ୍ଷୁର, କରଣର ଲିଖନୀ, ରଜକର କୁରାଢୀ ଓ ବିଭିନ୍ନ ବୃତ୍ତିକାରମାନଙ୍କର ବୃତ୍ତିର ସରଞ୍ଜାମ ଇତ୍ୟାଦି ମହାସପ୍ତମୀଠାରୁ ବିଜୟାଦଶମୀ ପର୍ଯ୍ୟନ୍ତ ମାତୃଘଟ ସମୀପରେ ପୂଜା ହୋଇଥାଏ । ମାତୃଆଶିଷ ଲାଭ କରି ଅସ୍ତ୍ରଶସ୍ତ୍ରର ଅନୁକୂଳ ହୁଏ ସେଇ ବିଜୟା ଦଶମୀ ଦିନ। ଦୁର୍ଗାଙ୍କୁ ମଧ୍ୟ 'ଶାକମ୍ଭରୀ' ବୋଲି କୁହାଯାଇଛି । କାରଣ ଅନାବୃଷ୍ଟି ସମୟରେ ସେ ଶରୀରରୁ ପ୍ରାଣ ସଞ୍ଜିବନୀ ଶସ୍ୟ ସମୂହ ଦ୍ୱାରା ଜଗତବାସୀଙ୍କୁ ଭରଣପୋଷଣ କରନ୍ତି । ଦେବୀ ଦୁର୍ଗା କେବଳ ସୃଷ୍ଟିର ପାଳନ କର୍ତ୍ତ୍ରୀ ବା ଦୁଷ୍ଟ ସଂହାରିଣୀ ଶକ୍ତି ନୁହନ୍ତି, ଏହି ମଙ୍ଗଳମୟ ସୃଷ୍ଟିର ସେ ମଙ୍ଗଳଦାତ୍ରୀ, ଏହି ଶୋଭାମୟ ସୁନ୍ଦର ସୃଷ୍ଟିର ସେ ମୁଖ୍ୟ ଶାନ୍ତି ପ୍ରଦାୟିନୀ । ଏବେ ଆଧୁନିକ ଯୁଗରେ ଏହି ପର୍ବ ଏକ ମହାନ୍ ପର୍ବରେ ପରିଣତ ହୋଇଛି । ବସ୍ତୁବାଦୀ ନାସ୍ତିକ ହୃଦୟ ମଧ୍ୟରେ ଏହି ପୂଜା ମାଧ୍ୟମରେ ଭକ୍ତି ଭାବନାର ଉଦ୍ରେକ ପୂର୍ଣ୍ଣ ପବିତ୍ରର ନିର୍ଯ୍ୟାସ, ପ୍ରେମ ପୁଲକର ସୁଗନ୍ଧ, ସତ୍ୟ–ଧର୍ମ–ଦୟା–କ୍ଷମା ବାଣୀର ଚିନ୍ତନ, ସୁଖ– ସମ୍ଭୋଗର ମହକ ଏବଂ ଶାନ୍ତି–ମୈତ୍ରୀ–ପ୍ରୀତିର କଲ୍ଲୋଳ ଗଙ୍ଗା–ଯମୁନା–ସରସ୍ୱତୀର ତ୍ରିବେଣୀ ସଙ୍ଗମରେ ହିଲ୍ଲୋଳିତ ହୋଇଥାଏ ।

କିନ୍ତୁ ସମୟ ଚକ୍ରରେ ଆଜି ଏକ ପ୍ରକାର ସ୍ଥାଣୁତ୍ୱ ଓ ଅବକ୍ଷୟ ଏହି ଐତିହାସିକ ଐକ୍ୟରେ ଘୋର ଅନ୍ତରାୟ ସୃଷ୍ଟି କରିଛି। ଆଜି ସ୍ୱାର୍ଥ, ଦ୍ୱେଷ, ଶୋଷଣ ଓ ଲାଭଖୋର ମନୋବୃତ୍ତି ଦ୍ୱାରା ସମାଜ କଳୁଷିତ ହୋଇପଡିଛି । ପୂଜା ପାର୍ବଣର ଅନ୍ତରାଳରେ ବିଦ୍ୟମାନ ଧର୍ମପ୍ରାଣତା ଆଜି ସୁଦୂର ପରାହତ । କେତେକ କ୍ଷେତ୍ରରେ ଗୋଷ୍ଠୀ କନ୍ଦଳ ଓ ପ୍ରତିଦ୍ୱନ୍ଦିତା କେତେକ ନିରୀହ ଲୋକଙ୍କ ନିର୍ମମ ହତ୍ୟାର କାରଣ ହୋଇପଡିଛି । ସଂକୀର୍ଣ୍ଣ ରାଜନୀତି ଦ୍ୱାରା ପ୍ରୋତ୍ସାହିତ ଯୁବ ସଂପ୍ରଦାୟ ଏହାଦ୍ୱାରା ଜୀବନକୁ ଅତି ମାମୁଲି ଭାବିବା ସହ ରାଜନୀତି ସମ୍ପର୍କିତ କେତେକ ହୀନଭାବ ଜୀବନର ଆଦର୍ଶ ବୋଲି ଭାବୁଛନ୍ତି । ଏ ରାଜ୍ୟକୁ ଅପସଂସ୍କୃତିରୁ ରକ୍ଷା କରିବା ପାଇଁ ସମୟ ଆସିଛି । ନିଜର ସଂସ୍କୃତି, ଐତିହ୍ୟ ଓ ପରମ୍ପରାର ପୁନର୍ବିନ୍ୟାସରେ ଏ ରାଜ୍ୟକୁ ସୁଫଳା ଶସ୍ୟଶାମଳା କରିବାକୁ ପଡିବ । ଶକ୍ତି ରୂପିଣୀ ମା' ଦୁର୍ଗା ଆମକୁ ଏହି ଶକ୍ତି ଦିଅନ୍ତୁ, ଏହି ରାଜ୍ୟକୁ ପ୍ରଗତିର ଶୀର୍ଷସ୍ଥାନକୁ ନେବାକୁ ଆମ ଶରୀରରେ ଉତ୍ସାହ ଓ ମନରେ ସମ୍ବିତ୍ ଦିଅନ୍ତୁ, ଏତିକି ପ୍ରାର୍ଥନା ।

ସଭାପତି, ଚାନ୍ଦବାଲି ସାଂସ୍କୃତିକ ପରିଷଦ, ଚାନ୍ଦବାଲି
ଭଦ୍ରକ, ପିନ୍–୭୫୬୧୩୩

## ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁର ଲେଖକଲେଖିକାମାନଙ୍କୁ ନିବେଦନ

ଉତ୍କଳ ପ୍ରସଙ୍ଗ ଓ ଓଡ଼ିଶା ରିଭ୍ୟୁ ପତ୍ରିକାଦ୍ୱୟରେ ପ୍ରକାଶ ନିମନ୍ତେ ଲେଖା ପ୍ରେରଣ କରୁଥିବା ଲେଖକଲେଖିକାମାନଙ୍କୁ ସେମାନଙ୍କର ଲେଖା ପ୍ରେରଣ କରିବା ସମୟରେ ନିମ୍ନସୂଚିତ ସୂଚନା ପ୍ରଦାନ କରିବା ପାଇଁ ଅନୁରୋଧ କରାଯାଉଛି, ଯାହା ଫଳରେ ଲେଖା ପ୍ରକାଶ ପାଇବା ପରେ ଲେଖା ପାଇଁ ମିଳୁଥିବା ସେମାନଙ୍କର ପ୍ରାପ୍ୟ ସିଧାସଳଖ ସେମାନଙ୍କର ବ୍ୟାଙ୍କ୍ ଏକାଉଣ୍ଟ୍‌ରେ ସୂଚନା ଓ ଲୋକସମ୍ପର୍କ ବିଭାଗ ଦ୍ୱାରା ଜମା କରାଯାଇପାରିବ ।

୧. ଲେଖକ/ଲେଖିକାଙ୍କ ନିଜ ନାମରେ ରହିଥିବା ବ୍ୟାଙ୍କ୍ ଏକାଉଣ୍ଟ୍ ନମ୍ବର

୨. ବ୍ୟାଙ୍କର ନାମ, ଶାଖା ରହିଥିବା ସ୍ଥାନର ନାମ

୩. ଆଇ.ଏଫ୍.ଏସ୍.ସି (IFSC) କୋଡ୍ ନମ୍ବର ।

୪. ଲେଖକ/ଲେଖିକାଙ୍କ ସହିତ ଯୋଗାଯୋଗ ପାଇଁ ତାଙ୍କର ମୋବାଇଲ୍ କିମ୍ବା ଟେଲିଫୋନ୍ ନମ୍ବର ।

୫. ତାଙ୍କର ସମ୍ପୂର୍ଣ୍ଣ ଡାକ ଯୋଗାଯୋଗ ଠିକଣା ।

ଲେଖା ଡି.ଟି.ପି.ରେ ହାର୍ଡ କପି ଓ ସଫ୍ଟ କପି ପଠାଇବା ପାଇଁ ଅନୁରୋଧ । ଲେଖା ପଠାଇବା ସମୟରେ ଉପରୋକ୍ତ ସମସ୍ତ ସୂଚନା ପ୍ରଦାନ କରି ଲେଖାଟି ସମ୍ପାଦକ, ଉତ୍କଳ ପ୍ରସଙ୍ଗ/ଓଡ଼ିଶା ରିଭ୍ୟୁ, ସୂଚନା ଓ ଲୋକସମ୍ପର୍କ ବିଭାଗ, ଓଡ଼ିଶା ସରକାର, ଲୋକସମ୍ପର୍କ ଭବନ, ୟୁନିଟ୍–୫, ଭୁବନେଶ୍ୱର–୭୫୧୦୦୧ ଠିକଣାରେ ଡାକ ଯୋଗେ ପ୍ରେରଣ କରନ୍ତୁ ।

# ଶାକ୍ତଭୂମି ଓ ପ୍ରମୁଖ ଶକ୍ତିପୀଠ

ବୈକୁଣ୍ଠ ନାଥ ମହାପାତ୍ର

ଦେବୀପୁରାଣରେ ଶକ୍ତି ରହସ୍ୟ ଉଲ୍ଲେଖ ଅଛି ଯେ ଦକ୍ଷ ପ୍ରଜାପତି ସତ୍ୟଯୁଗରେ ପ୍ରାଜାପତ୍ୟ ଯଜ୍ଞର ଆୟୋଜନ କରିଥିଲେ । ଏହି ଯଜ୍ଞରେ ସମସ୍ତ ଦେବାଦେବୀ, ମୁନିଋଷିଙ୍କୁ ସେ ଆବାହନ କରିଥିଲେ । ପରନ୍ତୁ ଦକ୍ଷ ପ୍ରଜାପତି ନିଜର କନ୍ୟା ସତୀ ବା ଉମାଙ୍କୁ ନିମନ୍ତ୍ରଣ କରିବାକୁ ଜାଣି ଜାଣି ଉପେକ୍ଷା କରିଥିଲେ । ତାହାର କାରଣ ଥିଲା ଯେ ଉଲଗ୍ନ, ଚିତାଭସ୍ମ ଲେପନ, ଗରଳପାନକାରୀ, ଜଟାଜୁଟଧାରୀ, ସର୍ପଭୂଷଣକାରୀ ମହାଦେବ ବା ବାମଦେବଙ୍କୁ ସେ ନିଜ ଜାମାତା ରୂପରେ ଦେବଲୋକ ସମୀପରେ ପରିଚୟ ଦେବାକୁ ଲଜ୍ଜା ମନେ କରିଥିଲେ ।

ଏହିପରି ଏକ ସମୟରେ ମା' ସତୀ ଦେଖିଲେ ଯେ କୈଳାସ ଶିଖରର ଊର୍ଦ୍ଧ୍ୱ ଦେଇ ଘୋର ଘର୍ଘର ଘୋଷରେ ଇନ୍ଦ୍ରାଦି ଦେବତାମାନଙ୍କର ସ୍ୱର୍ଣ୍ଣମୟ ଦିବ୍ୟରଥ ସବୁ ଦକ୍ଷପୁର ଆଡକୁ ଗତି କରୁଅଛନ୍ତି । ଏହା ଦେଖି ସତୀ ମହାଦେବଙ୍କୁ ପଚାରିଲେ– 'ହେ ଯୋଗେଶ୍ୱର, ଆଜି ଆପଣଙ୍କୁ ଛାଡି ଦେବଗଣ କାହାର ଯଜ୍ଞଭାଗ' ନେବା ନିମନ୍ତେ ଧାବିତ ହେଉଅଛନ୍ତି । ଭଗବାନ ଶଙ୍କର ଏକଥା ସତୀଙ୍କ ମୁଖରୁ ଶ୍ରବଣ କରିବା ପରେ ନିଜର ଯୋଗ ନେତ୍ରରେ ଅନୁସନ୍ଧାନ କରି ହସି ହସି କହିଲେ– 'ହେ ପ୍ରିୟତମେ । ତୁମ ପିତା ପ୍ରାଜାପତ୍ୟ' ଯଜ୍ଞର ଆୟୋଜନ କରୁଅଛନ୍ତି । ମାତ୍ର ମୋର ଏତାଦୃଶ କିମ୍ଭୁତ କିମାକାର ଉଲଗ୍ନ କଳେବର ହେତୁ ମତେ ସେ ନିଜର ଜାମାତା ବୋଲି ପରିଚୟ ଦେବା ପାଇଁ ଲଜ୍ଜିତ ମନେ କରି ଅପମାନ ଦେବାପାଇଁ ଉକ୍ତ ପ୍ରାଜାପତ୍ୟ ଯଜ୍ଞ କର୍ମରେ ଯଜ୍ଞଭାଗରୁ ବଞ୍ଚିତ କରିଅଛନ୍ତି । ଏହି କଥା ମା' ଉମାସତୀ ଶ୍ରବଣ କରି ମର୍ମାହତ ହୋଇ ରୋଦନ କରିବାକୁ ଲାଗିଲେ । କ୍ରମେ ତାଙ୍କର ଶୋକ କ୍ରୋଧରେ ପରିଣତ ହେଲା ଏବଂ ଶିବଙ୍କ ନିକଟରେ ପ୍ରାର୍ଥନା କଲେ ହେ ପ୍ରଭୁ ମୋତେ ଆଜ୍ଞା ଦିଅନ୍ତୁ, ମୁଁ ମୋର ପିତୃ ଆଳୟକୁ ଯିବି ।' ପରନ୍ତୁ ଶିବଙ୍କର ଇଚ୍ଛା ନଥିଲେ ମଧ୍ୟ ମା' ନିଜର ମହାବିଦ୍ୟା ଶକ୍ତି ପ୍ରଦର୍ଶନ କରି ଶଙ୍କରଙ୍କୁ ଅବଜ୍ଞା କରି ଦକ୍ଷପୁରକୁ ଗମନ କଲେ । ମା' ସତୀ ଦକ୍ଷ ପୁରରେ ପଦାର୍ପଣ ପୂର୍ବକ ନିଜର ପିତାଙ୍କ ନିକଟରେ ଉପସ୍ଥିତ ହେଲେ । ଦକ୍ଷ ପ୍ରଜାପତି ନିଜର କନ୍ୟା ସତୀଙ୍କୁ ଦେଖି ସମସ୍ତ ଦେବ ଲୋକ ସମ୍ମୁଖରେ ନିଜର ପ୍ରାଣପ୍ରିୟ ସ୍ୱାମୀ ମହାଦେବଙ୍କର ଭସ୍ମ ବିଲେପନ, ଅସ୍ଥିଭୂଷଣ, ଉଲଗ୍ନ କଳେବରକୁ ଲକ୍ଷ୍ୟ କରି ଶିବ ନିନ୍ଦା କରିବାକୁ ଲାଗିଲେ । ପତି ନିନ୍ଦା ସହ୍ୟ କରି ନପାରି ସତୀ ଉମା ଦକ୍ଷଙ୍କର ଯଜ୍ଞ କୁଣ୍ଡରେ ନିପତିତା ହୋଇ ଯଜ୍ଞ ବିଘ୍ନ କରାଇଲେ ।

ମାତା ସତୀ ଦକ୍ଷଙ୍କର ଯଜ୍ଞ କୁଣ୍ଡରେ ନିପତିତା ହେବା ମାତ୍ରେ ସମସ୍ତ ଯଜ୍ଞସ୍ଥଳୀ ଶକ୍ତି ଶୂନ୍ୟ ହୋଇ ବିଲକ୍ଷଣ ହୋଇପଡିଲା । ଏହି ସମୟରେ ଯୋଗେଶ୍ୱର ମହାଦେବ ଜାଣିପାରିଲେ ଯେ ସତୀ ନିଜର 'କାୟୋତ୍ସର୍ଗ' କରିଅଛନ୍ତି । ସେ କ୍ରୋଧ ନେତ୍ରରୁ କ୍ରୋଧ ସ୍ୱରୂପ ବୀରଭଦ୍ର ଭୈରବଙ୍କୁ ସୃଷ୍ଟି କରି ନନ୍ଦିକେଶ୍ୱର ଆଦି ଶିବସେନାଙ୍କୁ ନେଇ କ୍ଷଣମାତ୍ରେ ଯଜ୍ଞସ୍ଥଳରେ ପ୍ରବେଶ କରି ଦକ୍ଷଯଜ୍ଞ ଧ୍ୱଂସ କରିଥିଲେ। ଦେବତାମାନଙ୍କୁ ଶକ୍ତିହୀନ କରିବା ଉଦ୍ଦେଶ୍ୟରେ ସେ ସତୀଙ୍କ ଦେହରୁ ଶିକଭାଗ କାଢି ନନେଇ ସତୀଙ୍କର ଶରୀରକୁ କାନ୍ଧରେ ରଖି ବ୍ରହ୍ମାଣ୍ଡ ବା ଜମ୍ବୁଦ୍ୱୀପର ତୀର୍ଥଖଣ୍ଡ ଭ୍ରମଣ ନିମନ୍ତେ ବାହାରିଲେ । ବିରହୀ ସଦାଶିବଙ୍କର ଏତାଦୃଶ୍ୟ ଦଶାରେ ସର୍ବଦେବତା ନିଜକୁ ଶକ୍ତି ହୀନ ମଣିଲେ । ଶିବ ବିଗର୍ହିତ ଯଜ୍ଞରେ ଭାଗ ନେବାର ପରିଣାମ ଜାଣିପାରିଲେ । ଏହିପରି କିଛି କାଳପରେ ଦେବଗଣ ଶକ୍ତି ବିହୀନ ହେବା ଜାଣିପାରି ଆଦିଦେବ ନାରାୟଣ ନିଜର ଆୟୁଧ ଶ୍ରେଠ ଚକ୍ରରାଜ ସୁଦର୍ଶନଙ୍କୁ ଆଜ୍ଞା ଦେଲେ । ହେ ଚକ୍ରରାଜ ! ଶିବ ଶକ୍ତିବିରହରେ ବିହ୍ୱଳ । ଆପଣ ଏହି ଅବସ୍ଥାରେ ଅତ୍ୟନ୍ତ ନିଷ୍ଠା ଓ ଯତ୍ନବାନ ହୋଇ ଶକ୍ତିଙ୍କର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗକୁ ଖଣ୍ଡ ଖଣ୍ଡ କରି ଭୂପୃଷ୍ଠରେ ପତିତ କରାଅ । ସେହି ଅଙ୍ଗ ଯେଉଁ ଯେଉଁ ସ୍ଥଳରେ ପଡିବ, ତାହା ଶାକ୍ତ

ଭୂମି ବା ଶାକ୍ତ ପୀଠ ରୂପରେ ବିଦିତ ହେବ ଓ ପ୍ରତ୍ୟେକ ସ୍ଥଳକୁ ଭୈରବ ରୂପରେ ଦେବଗଣ ଯୁଗ ଯୁଗ ଧରି ଜାଗ୍ରତ ରଖିଥିବେ । ଏହି ଆଜ୍ଞାରେ ଶିବଙ୍କର ଅଜ୍ଞାତ ସାରରେ ସୁଦର୍ଶନ ଚକ୍ରରାଜ ଶକ୍ତିଙ୍କର ଦେହକୁ ଖଣ୍ଡ ଖଣ୍ଡ କରିବାକୁ ଲାଗିଲେ ଓ ତାହା ମଧ୍ୟରୁ ସତୀଙ୍କର ଯେଉଁ ଅଙ୍ଗ ଯେଉଁଠାରେ ପଡିଲା, ତାହା ସମଗ୍ର ଆର୍ଯ୍ୟାବର୍ତ୍ତ ଭାରତ ଭୂଖଣ୍ଡରେ ଜମ୍ବୁ ଦ୍ୱୀପରେ ଏକାବନ ଗୋଟି ଶକ୍ତି ପୀଠ ରୂପରେ ଆର୍ଯ୍ୟମାନେ ମର୍ଯ୍ୟାଦା ପ୍ରଦାନ କରିଅଛନ୍ତି, ଏହା ଶକ୍ତି ଉପାସନାର ମୂଳକେନ୍ଦ୍ର ରୂପରେ ଖ୍ୟାତ ଅଟେ ।

ମା' ସତୀଙ୍କର କେଉଁ ଅଙ୍ଗ କେଉଁଠାରେ ପଡିଲେ ଓ ସେଠାରେ କେଉଁ ଶକ୍ତି ପ୍ରତିଷ୍ଠିତ ହେଲା ଏବଂ ସେହି ଶକ୍ତିଙ୍କର ଭୈରବ କିଏ ହୋଇ ରହିଲେ, ତାହାର ଏକ ବିବରଣୀ ଉଡ୍ଡିଶତନ୍ତ୍ର ଓ ତନ୍ତ୍ରଚୂଡାମଣିରେ ବର୍ଣ୍ଣିତ ହୋଇଅଛି, ଯାହା ଜାଣିବା ପ୍ରତ୍ୟେକ ସନାତନୀୟ ଆର୍ଯ୍ୟମାନଙ୍କର ପରମ କର୍ତ୍ତବ୍ୟ ଅଟେ ।

| ନଂ | ପୀଠର ନାମ | ଦେବୀଅଙ୍ଗ | ଶକ୍ତି | ଭୈରବ |
|---|---|---|---|---|
| ୧ | ହିଙ୍ଗୁଳା | ବ୍ରହ୍ମରନ୍ଧ୍ର | କୋଟରୀ | ଭୀମଲୋଚନ |
| ୨ | ସର୍କରାର | ଚକ୍ଷୁତ୍ରୟ | ମହିଷମର୍ଦ୍ଦିନି | କ୍ରୋଧୀଷ |
| ୩ | ସଂଗନ୍ଧା | ନାସିକା | ସୁନନ୍ଦା | ତ୍ରୟମ୍ବକ |
| ୪ | କାଶ୍ମୀର | କଣ୍ଠଦେଶ | ମହାମାୟା | କ୍ରୁଂସଧେଶ୍ୱର |
| ୫ | ଜ୍ୱାଳାମୁଖୀ | ମହାଜିହ୍ୱା | ସିଂଧିଦା | ଉନ୍ମତ୍ତ |
| ୬ | ଜାଳନ୍ଧର | ସ୍ତନ | ତ୍ରିପୁରମାଳିନୀ | ଭୀଷଣ |
| ୭ | ବୈଦ୍ୟନାଥ | ହୃଦୟ | ଜୟଦୁର୍ଗା | ବୈଦ୍ୟେଶ୍ୱର |
| ୮ | ନେପାଳ | ଜାନୁ | ମହାମାୟୀ | କପାଳୀ |
| ୯ | ମାନସ | ଦକ୍ଷିଣହସ୍ତ | ଦକ୍ଷାୟଣୀ | ଅମର |
| ୧୦ | ଉତ୍କଳ | ନାଭିଦେଶ | ବିମଳା | ଜଗନ୍ନାଥ |
| ୧୧ | ଗଣ୍ଡକୀ | ଗଣ୍ଡସ୍ଥଳ | ଗଣ୍ଡକୀ | ଚକ୍ରପାଣି |
| ୧୨ | ବହୁଳା | ବାମବାହୁ | ବାହୁଳାଦେବୀ | ଭିରୁକ |
| ୧୩ | ଉଜ୍ଜୟିନୀ | କୁର୍ପର | ମଣ୍ଡଳଚଣ୍ଡିକା | କପିଳେଶ୍ୱର |
| ୧୪ | ଚଟ୍ଟଳ | ଦକ୍ଷିଣବାହୁ | ଭବାନୀ | ଚନ୍ଦ୍ରଶେଖର |
| ୧୫ | ତ୍ରିପୁରା | ଦକ୍ଷିଣପଦ | ତ୍ରିପୁରସୁନ୍ଦରୀ | ତ୍ରିପୁରେଶ |
| ୧୬ | ତ୍ରିସ୍ରୋତା | ବାମପଦ | ଭ୍ରାମରୀ | ଭୈରବେଶ୍ୱର |
| ୧୭ | କାମଗିରି | ଯୋନିଦେଶ | କାମାକ୍ଷା | ଉମାନନ୍ଦ |
| ୧୮ | ପ୍ରୟାଗ | ହସ୍ତାଙ୍ଗୁଳି | ଲଳିତା | ଭବ |
| ୧୯ | ଜୟନ୍ତୀ | ବାମଜଙ୍ଘ | ଜୟନ୍ତୀ | କ୍ରମଦିଶ୍ୱର |
| ୨୦ | ଯୁଗାଦ୍ୟୋଂ | ଦକ୍ଷିଣାଙ୍ଗୁଷ୍ଠ | ଭୂତଧାତ୍ରୀ | କ୍ଷୀରଖଣ୍ଡଳ |
| ୨୧ | କାଳୀପୀଠ | ଦକ୍ଷିଣପାଦାଙ୍ଗୁଳି | କାଳିକା | ନକୁଳିଶ |
| ୨୨ | କୀରିଟ | କିରୀଟ | ବିମଳାକ୍ଷି | ସମ୍ବର୍ତ୍ତ |
| ୨୩ | ବାରଣାସୀ | କର୍ଣ୍ଣକୁଣ୍ଡଳ | ମଣିକର୍ଣ୍ଣିକେଶ୍ୱରୀ | କାଳଭୈରବ |
| ୨୪ | କନ୍ୟାଶ୍ରମ | ପୃଷ୍ଠ | ସର୍ବାଣୀ | ନିମିଷ |
| ୨୫ | କୁରୁକ୍ଷେତ୍ର | ଗୁଲ୍‌ଫ | ସାବିତ୍ରୀ | ସ୍ଥାଣୁ |
| ୨୬ | ମଣିବନ୍ଧ | ମଣିବନ୍ଧଯୁଗଳ | ଗାୟତ୍ରୀ | ସର୍ବାନନ୍ଦ |
| ୨୭ | ଶୀଶୈଳ | ଗ୍ରୀବା | ମହାଲକ୍ଷ୍ମୀ | ସଂବରାନନ୍ଦ |
| ୨୮ | କାଞ୍ଚି | ମେରୁଅସ୍ଥି | ଦେବଗର୍ଭା | ରୁରୁ |
| ୨୯ | କାଳମାଧମ | ନିତମ୍ବ | କାଳୀ | ଅସିତାଙ୍ଗ |
| ୩୦ | ଶୋଣଦେଶ | ନିତମ୍ବକ | ନର୍ମଦା | ଭଦ୍ରସେନ |
| ୩୧ | ରାମଗିରି | ଅନ୍ୟସ୍ତନ | ଶ୍ରବାଣୀ | ଚଣ୍ଡ |
| ୩୨ | ବୃନ୍ଦାବନ | କେଶପାଶ | ଉମା | ଭୂତେଶ |
| ୩୩ | ସୂଚୀ | ଊର୍ଦ୍ଧ୍ୱଦନ୍ତ | ନାରାୟଣୀ | ସଂହାର |
| ୩୪ | ପଞ୍ଚସାଗର | ଅଧୋଦନ୍ତ | ବାରାହୀ | ମହାରୁଦ୍ର |
| ୩୫ | କରତୋୟା | ତଳ୍ପ | ଅପର୍ଣ୍ଣ | ବାମନ |
| ୩୬ | ଶ୍ରୀପର୍ବତ | ଦକ୍ଷିଣଗୁଲ୍‌ଫ | ଶିଶୁନ୍ଦରି | ସୁନ୍ଦରାନନ୍ଦ |
| ୩୭ | ବିଭାସ | ବାମଗୁଲ୍‌ଫ | କପାଳିନୀ | ସର୍ବାନନ୍ଦ |
| ୩୮ | ପ୍ରଭାସ | ଉଦର | ଚନ୍ଦ୍ରଭାଗା | କ୍ରତୁଣ୍ଡ |
| ୩୯ | ଭୈରବ ପର୍ବତ | ଊର୍ଦ୍ଧ୍ୱଓଷ୍ଠ | ଅବନ୍ତୀ | ଲଂବକର୍ଣ୍ଣ |
| ୪୦ | ଜନସ୍ଥଳ | ଚିବୁକଦ୍ୱୟ | ଭ୍ରାମରୀ | ବିକୃତାକ୍ଷ |
| ୪୧ | ଗୋଦାବରୀତୀର | ଗଣ୍ଡ | ବିଶ୍ୱସୀ | ଦଣ୍ଡପାଣି |

| | | | |
|---|---|---|---|
| ୪୨ ସର୍ବଶୈଳ | ବାମଗଣ୍ଡ | ରାକିନୀ | ବସ୍ତ୍ରନାଭ |
| ୪୩ ରତ୍ନାବଳୀ | ଦକ୍ଷିଣସ୍କନ୍ଧ | କୁମାରୀ | ଶିବ |
| ୪୪ ମିଥିଳା | ବାମସ୍କନ୍ଧ | ଉମା | ମହୋଦର |
| ୪୫ ନଳହଟ | କଣ୍ଠନଳୀ | କାଳୀକା | ଯୋଗେଶ |
| ୪୬ କର୍ଣ୍ଣାଟ | କର୍ଣ୍ଣ | ଜୟଦୁର୍ଗା | ଅଭୀରୁ |
| ୪୭ ବକ୍ରେଶ | ମନ | ମହିଷାମର୍ଦ୍ଦିନୀ | ବକ୍ରନାଥ |
| ୪୮ ଯଶୋର | ପାଣିପଦ୍ମ | ଯଶୋରେଶ୍ୱର | ଚଣ୍ଡ |
| ୪୯ ଅଟ୍ଟହାସ | ଗୁଣ୍ଡ | ଫୁଲରା | ବିଶ୍ୱେଶ |
| ୫୦ ନାନ୍ଦିପୁର | କଣ୍ଠହାର | ନନ୍ଦିନୀ | ନନ୍ଦିକେଶ୍ୱର |
| ୫୧ ଲଙ୍କା | ନୂପୁର | ଇନ୍ଦ୍ରାକ୍ଷି | ରାକ୍ଷସେଶ୍ୱର |

ନୟାଗଡ଼ ଚିତ୍ରକାର ସାହି
୧୦–ନୟାଗଡ଼ ବଜାର–୨
ଜିଲ୍ଲା– ନୟାଗଡ଼

# ଦେବୀ

**ଅମିୟ ରଞ୍ଜନ ମହାପାତ୍ର**

ଆଃ ମୁଁ ଏବେ କାଞ୍ଚନଜଙ୍ଘାରେ...

ତୁ ଆସିବୁ ବୋଲି ତରଳିଲାଣି ତୁଷାର ।
ତରଳିଲାଣି ମୋ ଲୋମଶ ଅହମିକା ।
ପଥରମାନେ ପିନ୍ଧିଲେଣି ପାଦରେ ଘୁଙ୍ଗୁର ।
ଫୁଲପରି ଦିଶିଲାଣି ଦିଗନ୍ତର ଚିତ୍ରମୟ ଚେହେରା ।
ଅନ୍ଧାର ବି ପୋଛି ନେଲାଣି ଅନ୍ଧାର ପିଠିରୁ ଅନ୍ଧାର ।

ପରୀକଥା ପରି ଦିଶୁଚି ତୋ' ପୌରାଣିକ ରୂପ ।
ପବନର ସ୍ଥାପତ୍ୟରେ ତିଆରି ତୋ' କରୁଣା ଓ କଟାକ୍ଷ ।
ଇନ୍ଦ୍ରଧନୁ ପରି ଆଲୁଳାୟିତ କେଶ ।
ପଦ୍ମପାଖୁଡାରେ ତିଆରି ପାଦ ଓ ପାପୁଲି ।

ତୋ'ର ଗୋଟାଏ ହାତ ବିଜୁଳିର ତରବାରି
ତ ଆରହାତ ମେଘର ରୁମାଲ ପରି ।
ତୁ ନିଆଁର ନିମନ୍ତ୍ରଣ ଅଥଚ
ପ୍ରେମ ଓ ପ୍ରାର୍ଥନାର ଶେଷତମ ଗୀତ ।

ମୋ ଯାଯାବର ଇଚ୍ଛାର ସିଂହ ଏବେ ତୋ' ବାହନ ।
ତୋ' ପାଦତଳେ ପ୍ରେମିକ ପରି ଶୋଇଚି
ମୋ ସୁଖ ଓ ସଂସାରପଣ ।
ତୋ' ଦେହର ସମୁଦ୍ରରେ ଅନ୍ଧମାଛ ପରି
ପହଁରୁଚି ମୋ ଆଖି ।

ମତେ ନିସ୍ତାର ଦେ' ଏ ତଟସ୍ଥତାରୁ...

ଆ, ମୋ ଛାତିରେ ପୋତିଦେ'
ତ୍ରିଶୂଳ ପରି ଗୋଟାଏ ପାଟଳ ପତାକା ।
ମୋ ରକ୍ତର ଉତ୍ତରୀୟରେ ଲେଖିଦେ' ତୋ' ନାଆଁ ।
ମୋ ନିଃସଙ୍ଗତାକୁ ହଜେଇଦେ' ତୋ' ନୀଳାଭ ଆଲିଙ୍ଗନରେ ।

ମତେ ମରିବାକୁ ଦେ'
ନିଃସର୍ତ୍ତ ନିଃସ୍ୱପ୍ନ ନିରବରେ
ତୋ' ମାୟା ଓ ମରୀଚିକାରେ ।
ଜାଣେ, ଯେଉଁଠି ମୋର ମୃତ୍ୟୁ ସେଇଠି ମୋ ଅମରତ୍ୱ ।

କଳାମଣ୍ଡପ ରାସ୍ତା,
ପିଠାପୁର, କଟକ–୭୫୩୦୦୧

❖ ❖ ❖

# ବିଦ୍ୟାଳୟ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ଦ୍ୱାରା ରକ୍ତହୀନତା ନିୟନ୍ତ୍ରଣ

ରକ୍ତହୀନତା ବିଶ୍ୱର ଏକ ବୃହତ୍ ଜନସ୍ୱାସ୍ଥ୍ୟ ସମସ୍ୟା । ଏହା ସମଗ୍ର ପୃଥିବୀରେ ଅକର୍ମଣ୍ୟତା ପାଇଁ ୨ୟ ସର୍ବବୃହତ କାରଣ । ମୁଖ୍ୟତଃ ଗର୍ଭବତୀ ମହିଳା, ନବଜାତ ଶିଶୁ ଏବଂ କିଶୋର କିଶୋରୀମାନଙ୍କଠାରେ ଅଧିକ ମାତ୍ରାରେ ଏହା ଦେଖାଯାଇଥାଏ । ରକ୍ତହୀନତା ଯୋଗୁଁ ଶାରୀରିକ ଓ ମାନସିକ ଦକ୍ଷତା ହ୍ରାସ ପାଇଥାଏ ।

### ୧) ରକ୍ତହୀନତା କ'ଣ

ରକ୍ତ କଣିକାରେ ଥିବା ଲାଲ୍ ଅଂଶକୁ ହିମୋଗ୍ଲୋବିନ୍ କୁହାଯାଏ । ଯାହାକି ଲୌହସାର ବା ଆଇରନ୍ ଭରପୂର । ଏହା ଶରୀରର ବିଭିନ୍ନ ଅଂଶକୁ ଅମ୍ଳଜାନ ଯୋଗାଇଥାଏ । ଲୌହସାର ଅଭାବରେ ହିମୋଗ୍ଲୋବିନର ପରିମାଣ କମିଯାଏ । ଏଣୁ ରକ୍ତର ଅମ୍ଳଜାନ ଧାରଣ କ୍ଷମତା କମିଯାଇଥାଏ । ଏହି ଅବସ୍ଥାକୁ ରକ୍ତହୀନତା କୁହାଯାଏ । ପ୍ରାପ୍ତ ବୟସ ପୁରୁଷମାନଙ୍କଠାରେ ହିମୋଗ୍ଲୋବିନ୍ ସ୍ତର ୧୩ ଗ୍ରାମ୍ ଏବଂ ମହିଳାଙ୍କଠାରେ ୧୨ ଗ୍ରାମ୍ ପ୍ରତି ୧୦୦ ଡେସି.ଲି.ରୁ କମ୍ ଥିଲେ ରକ୍ତହୀନତା ବୋଲି ଧରାଯାଏ ।

| **ବୟସ ସୀମା** | **ନ୍ୟୂନତମ ହିମୋଗ୍ଲୋବିନ୍ ସ୍ତର (ଗ୍ରାମ/ଡେସିଲି.)** |
|---|---|
| ଶିଶୁ (୬ମାସ–୫ବର୍ଷ) | ୧୧ |
| ପିଲା (୫–୧୨ ବର୍ଷ) | ୧୧.୫ |
| ପିଲା (୧୨–୧୫ ବର୍ଷ) | ୧୨ |
| ମହିଳା (ଗର୍ଭବତୀ ନୁହେଁ) ୧୫ବର୍ଷରୁ ଉର୍ଦ୍ଧ୍ୱ | ୧୨ |

### ୨. ରକ୍ତହୀନତାର କାରଣ

କ) ଖାଦ୍ୟରେ କମ୍ ଲୌହସାର ପଦାର୍ଥ, ଭିଟାମିନ୍ 'ଗ'ର ଅଭାବ ।

ଖ) ଋତୁସ୍ରାବରେ ଅତ୍ୟଧିକ ରକ୍ତ କ୍ଷୟ ।

ଗ) କୃମି ସଂକ୍ରମଣ।

ଘ) କମ୍ ବୟସରେ ବିବାହ ତଥା ଗର୍ଭଧାରଣ ।

### ୩. ଲକ୍ଷଣ

କ) ପାଠପଢାରେ ଏକାଗ୍ରତା ନରହିବା ।

ଖ) ଆଖି, ଜିଭ, ପାପୁଲି, ଚର୍ମ ଓ ନଖ ଶେତା ଦେଖାଯିବା ।

ଗ) ଦୈନନ୍ଦିନ କାର୍ଯ୍ୟରେ ହାଲିଆ ଲାଗିବା ।

ଘ) ଦୁର୍ବଳ, ଅଣନିଃଶ୍ୱାସୀ ଲାଗିବା, ମୁଣ୍ଡ ବୁଲାଇବା ।

ଙ) ପାଦ ଫୁଲିବା, ନଖ ଚାମଚ ଆକୃତି ହେବା ଓ ଶ୍ୱାସକ୍ରିୟାରେ ଧଇଁସଇଁ ହେବା ।

ଚ) ଶରୀରରେ ଛୁଞ୍ଚି ବା କଣ୍ଟାଫୋଡାର ଅନୁଭବ କରିବା ।

### ୪. ସମାଧାନ

କ) ସଠିକ୍ ଖାଦ୍ୟ: ସୁଷମ ଖାଦ୍ୟ ଖାଇବା, ପୁଷ୍ଟିସାର, ସ୍ନେହସାର, ଧାତବ ଲବଣ ଓ ଜୀବସାର (ରୁଟି, ଭାତ, ଡାଲି, ସବୁଜ ପନିପରିବା, ଫଳ, କ୍ଷୀର ଆଦି ଖାଇବା)

ଖ) ଆଇରନ୍ ବଟିକା ଖାଇବା: ପ୍ରତ୍ୟେକ ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ରକ୍ତହୀନତା ନିୟନ୍ତ୍ରଣ ପାଇଁ ଆଇରନ୍ ଓ ଫଲିକ୍ ଏସିଡ୍ ବଟିକା ଖାଇବେ ।

ଗ) ଅନ୍ୟାନ୍ୟ ପଦ୍ଧତି: ଯେପରି ମ୍ୟାଲେରିଆ ରୋଗ, ଅଂକୁଶ

କୃମି ସଂକ୍ରମଣର ପ୍ରତିରୋଧ, ପରିଷ୍କାର ପରିଚ୍ଛନ୍ନତା ଓ ସଫା ପରିବେଶ ।

**୫. ରକ୍ତହୀନତା ନିୟନ୍ତ୍ରଣ ଓ କାର୍ଯ୍ୟକ୍ରମ ପରିଚାଳନା**

ଜାତୀୟ ଗ୍ରାମୀଣ ସ୍ୱାସ୍ଥ୍ୟ ମିଶନ୍ ଅନ୍ତର୍ଗତ ବିଦ୍ୟାଳୟ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମ ଦ୍ୱାରା ରକ୍ତହୀନତା ଦୂରୀକରଣ ପାଇଁ ପ୍ରତ୍ୟେକ ଛାତ୍ରଛାତ୍ରୀଙ୍କୁ ଲୌହ ଏବଂ ଫଲିକ୍ ଏସିଡ୍ ଏବଂ କୃମିନାଶକ ବଟିକା ଦିଆଯିବ । ଏହା ବିଦ୍ୟାଳୟ ଏବଂ ଗଣଶିକ୍ଷା ବିଭାଗ ଅନ୍ତର୍ଗତ ମଧ୍ୟାହ୍ନଭୋଜନ କାର୍ଯ୍ୟକ୍ରମ ମାଧ୍ୟମରେ କାର୍ଯ୍ୟକାରୀ କରାଯିବ । ଉକ୍ତ କାର୍ଯ୍ୟକ୍ରମରେ ବିଦ୍ୟାଳୟ ଏବଂ ଗଣଶିକ୍ଷା ବିଭାଗ ଏବଂ ଜିଲ୍ଲା ଏବଂ ରାଜ୍ୟ) ତ୍ରୟମାସିକ ବୈଠକରେ ଉକ୍ତ କାର୍ଯ୍ୟକ୍ରମର ଅଗ୍ରଗତି ବିଷୟରେ ବିଶଦ ଆଲୋଚନା କରାଯିବ ।

ଉପରୋକ୍ତ ବିଦ୍ୟାଳୟ ଅନ୍ତର୍ଗତ ଛାତ୍ରଛାତ୍ରୀମାନଙ୍କୁ ନିମ୍ନମତେ ଔଷଧ ମାତ୍ରା ଦିଆଯିବ ।

**୬. ସାବଧାନତା**

କ) ଖାଲିପେଟରେ ଔଷଧ ଖାଇବାକୁ ଦିଆଯିବ ନାହିଁ ।

ଖ) ମଧ୍ୟାହ୍ନ ଭୋଜନ ପରେ ଶିକ୍ଷକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଔଷଧ ଖାଇବାକୁ ଦିଆଯିବ ।

| ବୟସ/ଶ୍ରେଣୀ | ଲୌହ ଓ ଫଲିକ୍ ଏସିଡ୍ ବଟିକାର ପରିମାଣ | ମାତ୍ରା | କୃମିନାଶକ ବଟିକାର ପରିମାଣ | ମାତ୍ରା |
|---|---|---|---|---|
| ୬ରୁ ୧୦ବର୍ଷ (୧ମରୁ ୫ମଶ୍ରେଣୀ) | ୩୦ମି.ଗ୍ରା. ଲୌହସାର ଓ ୦.୨୫ମି.ଗ୍ରା. ଫଲିକ ଏସିଡ୍ | ଖାଇବା ପରେ ଦିନକୁ ୧ଟି ଲେଖାଏଁ ବଟିକା ବର୍ଷକୁ ୧୦୦ ଦିନ | ୪୦୦ମି.ଗ୍ରା ଆଲ୍‌ବେଣ୍ଡାଜୋଲ୍ | ପ୍ରତି ୬ମାସରେ୧ଟି ବଟିକା ଖାଇବା ପରେ |
| ୧୦ରୁ ୧୯ବର୍ଷ (୬ଷ୍ଠରୁ ୧୦ମ ଶ୍ରେଣୀ) | ୧୦୦ ମି.ଗ୍ରା. ଲୌହସାର ଓ ୦.୫ ମି.ଗ୍ରା. ଫଲିକ୍ ଏସିଡ୍ | ଖାଇବାପରେ ପ୍ରତି ସୋମବାର ୧ଟି ଲେଖାଏଁ ବଟିକା | ୪୦୦ ମି.ଗ୍ରା ଆଲ୍‌ବେଣ୍ଡାଜୋଲ୍ | ପ୍ରତି ୬ମାସରେ୧ଟି ବଟିକା ଖାଇବା ପରେ |

ଅନୁସୂଚିତ ଜନଜାତି ଉନ୍ନୟନ ଏବଂ ସଂଖ୍ୟାଲଘୁ ଓ ଅନଗ୍ରସର କଲ୍ୟାଣ ବିଭାଗ ଅଧୀନସ୍ଥ ସମସ୍ତ ସରକାରୀ ଏବଂ ସରକାରୀ ଅନୁଦାନ ପ୍ରାପ୍ତ ବିଦ୍ୟାଳୟ, ଶ୍ରମବିଭାଗ ଅଧୀନସ୍ଥ ବାଳଶ୍ରମିକ ବିଦ୍ୟାଳୟ ଓ ମହିଳା ଏବଂ ଶିଶୁ ଉନ୍ନୟନ ବିଭାଗ ଅଧୀନସ୍ଥ (Special School And Child Care Institution) ବିଦ୍ୟାଳୟଗୁଡ଼ିକୁ ଅନ୍ତର୍ଭୁକ୍ତ କରାଯାଇଅଛି । ଏହା ଉପରୋକ୍ତ ବିଭାଗର ମିଳିତ ଉଦ୍ୟୋଗରେ କାର୍ଯ୍ୟକାରୀ କରାଯାଉଅଛି । ଏଥିପାଇଁ ସ୍ୱାସ୍ଥ୍ୟ ବିଭାଗ ଦ୍ୱାରା ଆବଶ୍ୟକୀୟ ଲୌହ ଏବଂ ଫଲିକ୍ ଏସିଡ୍ ବଟିକା ଏବଂ କୃମିନାଶକ ବଟିକା ଯୋଗାଇ ଦିଆଯିବ । ଉକ୍ତ ବଟିକାଗୁଡ଼ିକ ସିଆର୍‌ସିସିଙ୍କ ଜରିଆରେ ସମସ୍ତ ବିଦ୍ୟାଳୟକୁ ଯୋଗାଇ ଦିଆଯିବ ଏବଂ ବିଦ୍ୟାଳୟ ସ୍ତରରେ ସ୍କୁଲ୍ ଶିକ୍ଷକ (ବିଦ୍ୟାଳୟ ସ୍ୱାସ୍ଥ୍ୟ ସଂଯୋଜକ) ତଥା ଶ୍ରେଣୀ ଶିକ୍ଷକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଛାତ୍ରଛାତ୍ରୀମାନଙ୍କୁ ମଧ୍ୟାହ୍ନଭୋଜନ ପରେ ଖାଇବାକୁ ଦିଆଯିବ । ଉପରୋକ୍ତ ବଟିକା ଖାଇବା ପରେ ବିଦ୍ୟାଳୟ ସ୍ୱାସ୍ଥ୍ୟକାର୍ଡରେ ଟିକ୍ ଚିହ୍ନଦେବେ ଏବଂ ଏମ୍‌ଡିଏମ୍ ରେଜିଷ୍ଟ୍ରରେ ଲେଖିବେ । ବିଦ୍ୟାଳୟ ପ୍ରଧାନ ଶିକ୍ଷକ ପ୍ରତ୍ୟେକ ଦିନ ତଦାରଖ କରିବେ ଏବଂ ମାସିକ ତଥ୍ୟ ସିଆର୍‌ସିସିଙ୍କୁ ପ୍ରଦାନ କରିବେ । ରକ୍ତହୀନତା ନିୟନ୍ତ୍ରଣ କାର୍ଯ୍ୟକ୍ରମକୁ ତତ୍ ସଂଲଗ୍ନ ପ୍ରତ୍ୟେକ ବିଭାଗର ଅଧିକାରୀ ତଦାରଖ କରିବେ ଏବଂ ପ୍ରତ୍ୟେକ ସ୍ତରରେ (ବ୍ଲକ୍,

ଗ) ଔଷଧ ବଣ୍ଟନ ସମୟରେ ତା'ର ବୈଧତା ତାରିଖ (ଏକ୍ସପାରି ଡେଟ୍) ଦେଖି ଠିକ୍ ଥିଲେ ବାଣ୍ଟିବେ ।

ଘ) ଯାହାର ବୈଧତା ନଥିବ ତାକୁ ବାଣ୍ଟିବେ ନାହିଁ ।

ଙ) ବଟିକା ଖାଇବାର କୌଣସି ପାର୍ଶ୍ୱ ପ୍ରତିକ୍ରିୟା ନ'ଥାଏ, ତେଣୁ ଗୁଜବରେ ବିଶ୍ୱାସ କରିବା ଅନୁଚିତ୍ ।

ଚ) ବଟିକା ଖାଇବା ପରେ ସ୍ୱାସ୍ଥ୍ୟ କାର୍ଡରେ ନିର୍ଦ୍ଦିଷ୍ଟ ସ୍ଥାନରେ ଟିକ୍ ଚିହ୍ନ (√) ଦେବେ ।



ରାଜ୍ୟ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ସୌଜନ୍ୟରୁ

# ବ୍ରହ୍ମାନନ୍ଦମୟୀ ଶକ୍ତି ପୂଜା ଯୁଗେ ଯୁଗେ

**ଇଂଜିନିୟର ରଘୁନାଥ ପାତ୍ର**

ଅନାଦି ଅନନ୍ତ କାଳୁ ଏ ବିଶ୍ୱ ବ୍ରହ୍ମାଣ୍ଡ
ଆଦି ଶକ୍ତି ବଳେ ଦିବାନିଶି ଉଦ୍ଭାସିତ
ଗତିଶୀଳ କ୍ରିୟାଶୀଳ ଦେଖୁଛେ ସକଳ
ନମସ୍ୟା ସବୁରି, କରୁ ଦଣ୍ଡ ପ୍ରଣିପାତ

ବ୍ରହ୍ମା ବିଷ୍ଣୁ ଶିବ ଦ୍ୱାରା ଆରାଧିତା ଦେବୀ
ସୃଷ୍ଟି ସ୍ଥିତି ପ୍ରଳୟର କାରଣ କାରଣ
ଯଶ ଗୌରବ ସାମର୍ଥ୍ୟ ପାଇଁ କରୁ ପୂଜା
ଅନାୟାସେ ଲଭିବାକୁ ଭବୁ ପରିତ୍ରାଣ ।

ଶକ୍ତିଦ୍ୱାରା ପିଣ୍ଡ ଗତିଶୀଳ, କ୍ରିୟାଶୀଳ
ଶକ୍ତି ବିନା ପଡିରହେ ଶବ ତୁଲ୍ୟ ପିଣ୍ଡ
ଇଚ୍ଛା, କ୍ରିୟା, ଜ୍ଞାନ ଶକ୍ତି ତ୍ରିବିଧ ପ୍ରକାର
ଶକ୍ତି ବିନା ଶବ ସର୍ବେ  ଏ ବିଶ୍ୱ ବ୍ରହ୍ମାଣ୍ଡ ।

ରୁଦ୍ରାଣୀ ରୂପେ ପୂଜିତା ଇଚ୍ଛାଶକ୍ତି ବିଶ୍ୱେ
କ୍ରିୟାଶକ୍ତି ବ୍ରାହ୍ମୀରୂପେ ଆରାଧିତା ସଦା
ବୈଷ୍ଣବୀ ଶକ୍ତି ରୂପରେ ଜ୍ଞାନଶକ୍ତି ପୂଜା
ଶକ୍ତି ପୂଜା ଦୂର କରେ ଜୀବ ଭବ ବାଧା ।

ବ୍ରହ୍ମାଣୀ ଶକ୍ତିରେ ସୃଷ୍ଟ ଏ ସାରା ଜଗତ
ପରିପାଳିତ ଜଗତ ବୈଷ୍ଣବୀ ଶକ୍ତିରେ
ରୁଦ୍ରାଣୀ ଶକ୍ତିରେ ହୁଏ ଜଗତ ସଂହାର
ସାରା ବିଶ୍ୱ ଆତ ଯାତ ଦିବ୍ୟ ଶକ୍ତି ବଳେ ।

ବେଦ ଅବେଦ ଓ ବିଦ୍ୟା ଅବିଦ୍ୟା ସକଳ
ବ୍ରହ୍ମମୟୀଠାରୁ ଜାତ, ବିଶ୍ୱେ ପରିବ୍ୟାପ୍ତ
ପ୍ରକୃତି ପୁରୁଷାତ୍ମକ ଜଗତ ଉତ୍ପତ୍ତି
ଯୁଗେ ଯୁଗେ ଆରାଧିତା ଜଗନ୍ମୟୀ ମାତ

ସତ୍ୟ ଯୁଗରେ ମହର୍ଷି ମେଧା ଉପଦେଶେ
ସୁରଥ ନୃପତି କଲେ ପୂଜା ଆରାଧନା
ଅପହୃତ ଐଶ୍ୱର୍ଯ୍ୟର ହେଲେ ଅଧିକାରୀ
ଶକ୍ତିପୂଜା ଦ୍ୱାରା କୃତକାର୍ଯ୍ୟ ମହାମନା

ତ୍ରେତୟାରେ ବଇଦେହୀ ରମ୍ୟ ଉପବନେ
ଗିରିଜା ପୂଜି ଲଭିଲେ କୌଶଲ୍ୟା ନନ୍ଦନ
ପ୍ରସ୍ରବଣେ ରଘୁପତି କରି 'ନବରାତ୍ର'
ଉଦ୍ଧାର କଲେ ସୀତାଙ୍କୁ ବଧି ଦଶାନନ ।

ଦ୍ୱାପରେ ବ୍ରଜସୁନ୍ଦରୀ ମାର୍ଗଶିର ମାସେ
କାତ୍ୟାୟନୀ ପୂଜା କରି ଲଭିଲେ ଗୋବିନ୍ଦ
ଭାରତ ଯୁଦ୍ଧେ ଅର୍ଜୁନ ସ୍ତବ କରି ଦୁର୍ଗା
ଲଭିଲେ ଅଖଣ୍ଡ ଯଶ ଗୌରବ ଆନନ୍ଦ ।

ବିବାହୋତ୍ସବ ପୂର୍ବରୁ ଶ୍ରୀଦେବୀ ରୁକ୍ମିଣୀ
ବିମଳାଙ୍କୁ ପୂଜାକରି ଲଭନ୍ତି ଶ୍ରୀପତି
ସୁଭଦ୍ରା ପାଆନ୍ତି ପୂଜା ନିତି ନୀଳାଚଳେ
ଚାଲିଛି ପୁରୁଷ ସଂଗେ ପୂଜନ ପ୍ରକୃତି ।

ତାତ୍ତ୍ୱିକ ଭାଷାରେ ଯାହା ପ୍ରାଣ ଭୂତି ଧ୍ୱନି
ତେଜ ପ୍ରଭା ନାମେ ଖ୍ୟାତ, ତାହା ପୁରାଣରେ
ରାଧାଲକ୍ଷ୍ମୀ, ସରସ୍ୱତୀ, ଦୁର୍ଗା ଓ ସାବିତ୍ରୀ
ବହୁ ରୂପେ ଶକ୍ତି ପୂଜା ଚାଲିଛି ବିଶ୍ୱରେ ।

ଚିନ୍ମୟୀ ଅଜ୍ଞେୟ ମହାଶକ୍ତି ବ୍ରହ୍ମମୟୀ
ଯୁଗେ ଯୁଗେ ବହୁ ରୂପେ ପାଉଛନ୍ତି ପୂଜା
କବି ରଘୁନାଥ ଭାଷେ ଶକ୍ତି ପୂଜା ଶ୍ରେୟ
ଦେବୀ କୃପା ବଳେ ଉଡେ ଯଶକୀର୍ତ୍ତି ଧ୍ୱଜା ।

ବୃନ୍ଦାବନ ଧାମ
ଲୋକନାଥ ରୋଡ
ପାଟଣାହାଟ ସାହି ଛକ, ପୁରୀ–୭୫୨୦୦୧

# ପୂଜା ନିବେଦନ

ନିବେଦିତା ଭଞ୍ଜ

ମାଆ ମାଆ ବୋଲି
ଡାକିଲେ କି ହେବ
ମାତୃ ମହାନତା ଯେବେ ନବୁଝିବ
ଘୃଣ୍ୟ ଭାବନାକୁ ଯେବେ ନତେଜିବ
ମାଆ କି ହୋଇବ ସାହା ।

କମଳ ନୟନୀ ନୟନୁ ସ୍ଫୁଲିଙ୍ଗ
ଝରିଲେ ରକ୍ଷକ ଭକ୍ଷକ ହୋଇବ
କୋମଳ ଭାଷିଣୀ ଉଦ୍‌ଗାରିଲେ ବିଷ
କୋଟି କୋଟି ପାପୀ ଲଭିବେ ବିନାଶ
କେହି ନକରିବେ ଦୟା ।

ବେଳ ଥାଉ ବନ୍ଧ, ପାର ଯେବେ ବାନ୍ଧ,
ଅନ୍ତର ଭରି ପ୍ରାୟଶ୍ଚିତେ କାନ୍ଦ
ଅଳିକ ସୁଖରେ ନହୋଇ କାମାନ୍ଧ ।
ମୋକ୍ଷ କବଚ ପିନ୍ଧି,
ଆରତେ ଡାକିଲେ
ଅନନ୍ତ–ରୂପାକୁ
ନିଶ୍ଚୟ କରିବେ ସନ୍ଧି ।

ନାରୀ ନାରାୟଣୀ
ସାମାନ୍ୟ ମଣନି
ପ୍ରେମ ଓ ମମତା ତ୍ୟାଗର ସଙ୍ଗିନୀ
ଜନନୀ, ଭଗିନୀ, ଜାୟା
ଏ ଦେଶର ନାରୀ
ସୀତା, ସାବିତ୍ରୀ
ତା' ସାଥେ ନକର ମାୟା ।

ଆଜିର ସମାଜ
ବିଜ୍ଞାପନେ ପ୍ରୀତ
ଅତୀତ–ସଂସ୍କାର
ଭୁଲି ଯାଉଛିତ
ଶିକ୍ଷା ଅଛି ଦୀକ୍ଷା ନାହିଁ ।

ନାରୀର ନୟନେ ଶାଣୀତ ଅସ୍ତ୍ର
ଦେଖିଛି ରାବଣ !
ହୋଇଛି ପରାସ୍ତ
ପାଞ୍ଚାଳୀ– କଟାକ୍ଷେ
କୁରୁ–କୁଳ ନାଶ
ଏବେ କି ସେ ନାରୀ ନାହିଁ... ?

ଆସ ମା', ଦୁର୍ଗେ ଦୁର୍ଗତି ନାଶିନୀ... !
ବିଶ୍ୱ ସମୁଦାୟ ଅଥୟ ହେଲାଣି
ବଜ୍ର–କବଚ ଅଙ୍ଗେ ଉହାଡି
ଅରାତି କବଳୁ ରଖ
ମାଆ ଥାଉ ଥାଉ ସନ୍ତାନ–ଅନାଥ
ହେଲେ କି ବୋଲିବେ ଲୋକ !

୮୬/ସତ୍ୟନଗର
ଭୁବନେଶ୍ୱର

# ଆମେତ ଭାରତବାସୀ

**ଚନ୍ଦ୍ରଶେଖର ପଣ୍ଡା**

ପୁଣ୍ୟ ମୋର ଏ ଭାରତ ଜନନୀ
ପୁଣ୍ୟ ମୋର ଏ ଉତ୍କଳ
ବସୁଧା ଗୋଟିଏ ତରଙ୍ଗିଣୀ ହେଲେ
ଏ ଦୁହେଁ ନୀଳ ଉତ୍ପଳ ।

ବୀର, ଧୀର, କବି ପ୍ରସବିନୀ ମା'
ଗର୍ବେ ଟେକି କହେ ମାଥ
ମୋ' ସନ୍ତାନ ସମ କହ କିଏ ସରି
ରଖିଛି ଜାତିର ଟେକ ।

ବଇରି କମାଣ ଗର୍ଜିଲା ଯେବେ
ନିର୍ଭୀକ ସନ୍ତାନ ବାଜି
ତୁଚ୍ଛ କରି ପ୍ରାଣ ମାଟି ମାଆ ପାଇଁ
ଆଖି ଦେଲା ତାର ବୁଜି ।

ବୀର ସୁରେନ୍ଦର, ଭଗତ ସିଂହ ବା
ମାଧୋ, ରଘୁ ଦିବାକର
ରଖିଗଲେ ଯଶ ଦେଶ ଗଉରବ
ଯାବତ ଚନ୍ଦ୍ର ଦିବାକର

ଏ ଦେଶ ସନ୍ତାନ ଗାନ୍ଧୀ, ସୁଭାଷ
ପଟେଲ ବା ଗୋପବନ୍ଧୁ
ଫିରିଙ୍ଗି ସଇନେ କହିଦେଇ ଗଲେ
ବିଶ୍ୱବାସୀ ସର୍ବେ ବନ୍ଧୁ ।

କବି କାଳିଦାସ ଭବଭୂତି ଅବା
କବି ସୂର୍ଯ୍ୟ, କବିବର
ଜୟଦେବ, ଦୀନକୃଷ୍ଣ, ରାଧାନାଥ
ଭଞ୍ଜବୀର, ଗଙ୍ଗାଧର ।

ଏ ମୋର ସନ୍ତାନେ ରଚିଛନ୍ତି କେତେ
କେତେ ଯେ ଅମର ଗୀତି
ଜୟଦେବ ଆଉ ରବୀନ୍ଦ୍ର ବିଶ୍ୱରେ
ଉଡାଅନ୍ତି ବୈଜୟନ୍ତୀ ।

ପଞ୍ଜାବ, ସିନ୍ଧୁ, ଦ୍ରାବିଡ, ଉତ୍କଳ,
ବଙ୍ଗ, ଗୁଜୁରାଟବାସୀ
ଭେଦଭାବ ଭୁଲି କହରେ ସଭିଏଁ
ଆମେତ ଭାରତବାସୀ

ଆସୁ ନଈବଢି ହେଉ ବା ମରୁଡି
ଆସୁ ଯେତେ ଘନଘଟା
ଏକ ହୁଅ ଯେହ୍ନେ ଯୁଝିଲା ବେଳକୁ
ମଇଁଷିର ଶିଙ୍ଗ ଗୋଟା ।

ପ୍ଲଟ୍ ନଂ– ୧୮୫୩/୩୭୨୦
କପିଳ ପ୍ରସାଦ, ପୁରୁଣା ଭୁବନେଶ୍ୱର

# ପୁନଶ୍ଚପବନ

ରାଜକିଶୋର ଦାସ

ହାତ ଛାଡିଦେଲା ପରେ
ଦେଖ, ପବନ ହୋଇଗଲା,
ଚହଲି ଗଲା ଚାରିଆଡ
ଦୋହଲିଗଲା ବାହାର ଭିତର,

ଆଉ କେତେ କାଳ, ବାଦୁଡି
ଓହଳି ଥାଆନ୍ତା ପିଜୁଳି ଡାଳରେ
ଆକାଶକୁ ପାଦ
ମାଟିକୁ ମଥା ଦେଖେଇ,
ତୋ ପାରିଲାପଣର ଶତ ତାରିଫ୍
ଅଠାକାଠି, କିମିଆ, ଇନ୍ଦ୍ରଜାଲରେ
କାବୁ କରିପାରୁ ।

ହଁ, ଆଜିକାଲି କାଙ୍ଗାଳମାନଙ୍କୁ
ନିଜର କହିବା ତୋର ଆଉ ବଶରେ ନାହିଁ
ମହଣ ମହଣ ସୁନାର ରୂପାର ମେଢ ହେଉ ବା ମଞ୍ଚ
ତୁ ସ୍ଲୋଗାନ ଦେଉଥା ବା ନାଚୁଥା
ବା ଚୁପ୍ ଚୁପ୍ କାମକରୁଥା, ଅୟସ କରୁଥା
କେତେ ଆଉ ତଳକୁ ଚାହିଁବୁ
କବି ହେଉ, କି ଅସୁର ହେଉ
ତୋତେ ଫରକ୍ ପଡେନି
ସେଇ ଆଖି, ସେଇ ଚାହାଣୀ
ସେଇ ହାରିଲା ପଣ, କାକୁସ୍ଥ

ତୋତେ କେବେ ଭୂମିରେ
ପାଦ ଥାପିବାକୁ ପଡେ ଯେ ?
ସବୁଠିତ ସେଇ ଗୋଟିଏ କଥା
ଉଚ୍ଚବର୍ଗ, ନିମ୍ନବର୍ଗର ମାନ

କିନ୍ତୁ, ତୋର ଏଠି
ଗୋଟିଏ ଭୁଲ ହେଇଗଲା
ହାତ ଛାଡି ଦେଇ,
ଝୁଲେଇଥିଲୁ ତ ଠିକ୍ ଥିଲା
ଏବେ ପବନ ହେବା ପରେ
ଦେଖ ସବୁ ଛୁଇଁ ହେଇଗଲା
ଆକାଶ, ସମୁଦ୍ର, ନିଆଁ, ସୁନ୍ଦରୀନାରୀ
ବଂଶୀଧ୍ୱନି, ଏମିତି କି ଆମ୍ବା,
ଦେ ଫୋପାଡି ଦେ
ପାରିବୁ ଯଦି ଚିରିଦେ ଛାତି, ଛାତି ତଳ
ସବୁଠି ପବନର ଘର
ପବନର ଘର ।

ପ୍ଲଟ୍ ନଂ–୩୨୧୬–୧୭
କେଦାରଗୌରୀ କମ୍ପ୍ଲେକ୍ସ,
ଗୌରୀ ବିହାର, ଭୁବନେଶ୍ୱର–୨

# ଓଃ ସାବରମତି !

ପୀତାମ୍ବର ତରାଇ

ଇଏ ଆଶ୍ରମ, ନା ନିଅାଁଫୁଲର ନମସ୍ୟ ଅଂଚଳ
କଥା ପଡିଲେ ଗପିଯାଉଥିବେ ଅନର୍ଗଳ
ଅବସର ପ୍ରାପ୍ତ– ଇତିହାସ ଅଧ୍ୟାପକ ଶ୍ରୀରାମଶଙ୍କର ।

କେମିତି ଥିବ ଅରଟ, ସ୍ମୃତିର ସଜ ସରଞ୍ଜାମ
ସବୁଠୁ ବଡ ହିସାବୀ ସେହି ତିନିଗୋଟି ମାଙ୍କଡ
ଖୋଲିଲେଣି କି କାନ, ପାଟି, ନିବୁଜ ନୟନ
କିଛି ଖବର ଅଛି କହିବେ ତ !

ଆଜି ବି ଅଗଣାରେ କେଉଁଠି ନା କେଉଁଠି ପଡିଥିବ
ଧୂଳି ଧୂସର ଝରାପତ୍ର ପରି
ପରାଧୀନତାର ଡାହି ଡାଳରୁ ବାଇ ଚଢେଇଙ୍କ
ଲୁହ ଜଡସଡ ବେଜାଏ ଗପସପ
ଅନ୍ତେବାସୀଙ୍କ ସ୍ୱପ୍ନ ସଜଡା ବିମୁକ୍ତ ଭାରତର
ରକ୍ତଓଦା କାଗଜ ଖଣ୍ଡିକ
ଅବଶ୍ୟ ଏ ଅଧମ ପ୍ରାଣଭରି ଛୁଇଁ ପାରିବ ତ !

ହଁ, ଏଇଠି କଥା ପଡିଥିବ କିଏ ପଶୁ କି ପ୍ରଭୁ
କିଏ ମୁନି କିଏ ମୁନିବ
ତଥାପି ସବା ଉପରେ ନିଅଁ ପଡିଥିବ ଅକାତକାତ
ମଣିଷ ଗଢିବାର ମନ୍ତ୍ରମୁଠାକ
ଟିକେ ଛୁଇଁ ପାରନ୍ତା କି ବାଟବଣା ବିବେକ, ବିମୂଢମନ ।

ଏଇଠୁ ବାହାରିଥିବ କେତେକେତେ ବୁଲାଣି
ବାଙ୍କର ନୂଆନୂଆ ପଥ, ପାନିପଥ ।

ଲୁଣମରା ସୂତ୍ର, ଭାରତ ଛାଡର
ସାଇଁ ସାଇଁ ଡାକ, ମୁକ୍ତିର ଗୀତ

ଉଠାଣି ଗଡାଣିର ଲହୁ ଲୁହାଣ ଲୋଡିବା ପଣ
ଭେଦିଯାଇଥିବ ମାଟି, ମାନଚିତ୍ର, ମଣିଷ ପରେ ମଣିଷ ।

ଏହା କଅଣ କ୍ରାନ୍ତିର ନିଅାଁଫୁଲ ନା କାଠହଣା
ଚଢେଇର ଲାଲ୍‌ଚୂଳ, କହୁନାହାଁନ୍ତି ଆପଣ !
ଆପଣ ତ ବରାବର ଚୁପ୍, ଅଭିଯୋଗହୀନ କେରେଘାସ
ତିନିମାଙ୍କଡ ପରି ଆଖି, କାନ, ପାଟି ବନ୍ଦ ରଖି
କହୁଥିବେ ଏହା ଆଦର୍ଶ
ଏଥିରେ କଅଣ ଚଳେଇ ହେବ ଘର ନା ଦେଶ
ନାଇଁ ନାଇଁ, ଆପଣଙ୍କୁ ନେଇ ଅବିକା ଯୁଗରେ
ଘଟ, ଘାଟ, ଘଟଣା ପାରିହେବା ବଡ କଠିନ ଜାଣ ।

ଅନେଇବେ ତ, ମହୁ ମଞ୍ଚରେ କିଏ ଅଜାଡୁଛି
ଆପଣଙ୍କ ମେଲା ମୁକୁଳା ଜୀବନ ବହିର ମହମହ
ଦରଦୀ ଦର୍ଶନ
ଆରେ ଆରେ, ଇଏ ସେଇଲୋକ ଯିଏ ଗଲା କାଲିଯାଏ
ଭଣଭଣ ଗନ୍ଧ, ଆଜି ଅଜାଡୁଚି ଗାନ୍ଧିଗିରି, ହମହମ
ଫୁଟାଣି ଫୁଟ୍‌କି ଫୁ– ପବନ
ଅତରପରି ମୋହି ନେଉଛି ଜନଗଣମନ
ବ୍ଲକ୍ ପଡିଆରେ ଫୁଟଉଚି ନାରେ ନାରେ ନିଅାଁ ଫୁଲ ।

ଅବି ଦଶାଦଶରେ ଖୁଉବ୍ ଗରମଅଛି ଦେଶ, ଭାରତବନ୍ଧ
ଏବେ କଅଣ ଯାଇହେବ ସାବରମତି, କହୁନାହାଁନ୍ତି ଆପଣ !

ଅଶ୍ରୁନୀଡ, ମଙ୍ଗରାଜପୁର,
କୁଜଙ୍ଗ–୭୫୪୧୪୧
ଜଗତସିଂହପୁର

# ସ୍ୱଦେଶପ୍ରେମୀ ଗଙ୍ଗାଧର

ନେପାଳ ପ୍ରଧାନ

ଉତ୍କଳର ବରପୁତ୍ର ଗଙ୍ଗାଧର
ବିଚକ୍ଷଣ ପ୍ରତିଭା ତୁମର
ସୁଭାବ ଚରିତ୍ର ତୁମ ସ୍ୱଭାବ କବିତା
ତୁମ ସୃଷ୍ଟି 'ଇନ୍ଦୁମତୀ', 'ପ୍ରଣୟବଲ୍ଲରୀ',
'ତପସ୍ୱିନୀ' 'କୀଚକବଧ'ର ବାର୍ତ୍ତା
କହେ ଆର୍ଯ୍ୟ ସଂସ୍କୃତିର କଥା ।
ପ୍ରକୃତି ବର୍ଣ୍ଣନା ଏବଂ ଜାତୀୟତାପ୍ରୀତିପୂର୍ଣ୍ଣ
ତୁମରି କବିତା ।
'ଉତ୍କଳ ଲକ୍ଷ୍ମୀ'ରେ ତୁମ ସୌନ୍ଦର୍ଯ୍ୟ ପ୍ରାଣତା
'ମାତୃଭୂମି' ଗାଏ ମାତୃଭାଷାର ମମତା ।
'ଉତ୍କଳ ଭାରତୀଙ୍କ ନିବେଦନ'
ମାତୃଭାଷା ପାଇଁ କଲା ଆନ୍ଦୋଳନ ।
ଦ୍ୱିଅର୍ଥବୋଧକ 'ଭାରତୀଭାବନା'
କୃଷ୍ଣା କୃଷ୍ଣ ଘେନି ଭାରତ ଘଟଣା
ଉତ୍କଳ ସାହିତ୍ୟେ କାହିଁ ତା ତୁଳନା ?
ଉତ୍କଳର କବି ଉତ୍କଳର ପ୍ରାଣ
ଉତ୍କଳର କଲ ମଙ୍ଗଳ ସାଧନ
ଉତ୍କଳର ନେତା ଶ୍ରୀ ମଧୁସୂଦନ
ଆମନ୍ତ୍ରଣେ ଗଲ ଉତ୍କଳ ଭବନ ।
କବି ରାଧାନାଥ, ଫକୀର ମୋହନ
ଆଉ କେତେ ରାଜା, ମହାରାଜାଗଣ
ସହିତ ଘଟିଲା ହୃଦୟ ମିଳନ ।

ଇଦ୍‌ଗା ପଡିଆରେ ମଣ୍ଡପ ମଣ୍ଡିତ
କରିଥିଲ କବି ହୋଇ ନିମନ୍ତ୍ରିତ ।
ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ
ପାଇଁ ହୋଇଥିଲା ଏହି ସମ୍ମିଳନ ।
ସମ୍ମିଳନୀ କକ୍ଷେ ଦେଲ ଉଦ୍‌ବୋଧନ ।
ଦେଶପ୍ରାଣ କବି ଆହେ ଗଙ୍ଗାଧର !
'ଉଦ୍‌ବୋଧନ'ରେ ତୁମେ କହିଥିଲ
'ଚୌଦିଗେ ଶୁଭୁଛି ଉଠ ଜାଗଜାଗ
ଅଣ୍ଟାଭିଡି ନିଜ କର୍ମେ ଲାଗଲାଗ ।
ପ୍ରତିବେଶୀଙ୍କର ସହିତ ତୁଳନା
କରି କର ନିଜ ମଧ୍ୟରେ କଳନା ।
ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚକର ଆଗେ ନିଜ ମାତୃଭାଷା ।
ଧନ୍ୟ କବି ! ତୁମ ମାତୃଭାଷା ପ୍ରୀତି
ତୁମ ଗୀତ ତୁମ ଜାତୀୟ ସଂସ୍କୃତି ।
ସାରସ୍ୱତ କ୍ଷେତ୍ରେ ତୁମେ ମହୀୟାନ
ତୁମରି କବିତା ସଂଗୀତର ଗାନ
ବିଶ୍ୱ ଦରବାରେ ପାଉଥିବ ସ୍ଥାନ ।
ତୁମ 'ଭକ୍ତି' ତୁମ 'ମଧୁମୟ' ସୃଷ୍ଟି
'ଅମୃତମୟ'ରେ ଅମୃତରଗୀତି
ଓଡ଼ିଆ ଜାତିର ଅମୂଲ୍ୟ ସମ୍ପତ୍ତି ।

ଆଇବି ରୋଡ୍, ବରପାଲି

❖ ❖ ❖

# ଶାରଦୀୟ ଦୁର୍ଗାପୂଜା

ସୁଶାନ୍ତ କୁମାର ମହାନ୍ତି

ମହା ପରାକ୍ରମୀ ଦାନବ ସମ୍ରାଟ
ଦୁର୍ଦ୍ଧର୍ଷ ମହିଷାସୁର
ଏକଦା ସ୍ୱର୍ଗକୁ ଆକ୍ରମଣ କରେ
ପାଇ ବ୍ରହ୍ମାଙ୍କର ବର ।
ଦୀର୍ଘକାଳ ଦେବାସୁର ସମରରେ
ବିଜୟୀ ଦାନବାସୁର
ଅମରାବତୀରେ ପ୍ରଭୁତ୍ୱ ବିସ୍ତାରେ
ଦେବଙ୍କୁ କରି ବାହାର ।
ସ୍ୱର୍ଗପୁରୀରୁ ବିତାଡ଼ିତ ହୋଇ
ସମସ୍ତ ଦେବତାଗଣ
ଯୋଗାଧିରାଜ ଓ ବିଷ୍ଣୁଙ୍କ ସମୀପେ
ଦୁଃଖ କରନ୍ତି ଜଣାଣ ।
ମହାଦେବ ତଥା ପ୍ରଭୁ ଚକ୍ରଧାରୀ
ଦେବଙ୍କ ପ୍ରାର୍ଥନା ଶୁଣି
କ୍ରୁଧ ହୋଇ ଉପଚାର ପାଇଁ ଦୁହେଁ
ଉପାୟ ପାଞ୍ଚିଲେ ଜାଣି
ବ୍ରହ୍ମା, ବିଷ୍ଣୁ, ସଦାଶିବଙ୍କ ଶରୀରୁ
ଉଦ୍ରେକ ବିପୁଳ ତେଜ
ସମସ୍ତ ତେଜର ଏକୀଭୂତ ସତ୍ତା
ଦୁର୍ଗା ଜ୍ୟୋତିର୍ମୟୀ ପୂଜ୍ୟ
ମହିଷା ବିନାଶ ପାଇଁ ଏକ ହୋଇ
ସମସ୍ତ ଦେବତାଗଣ
ଦୁର୍ଗତିନାଶିନି ମାଆ ଦୁର୍ଗାଙ୍କୁ ଯେ
ଅସ୍ତ୍ରାଦି କଲେ ପ୍ରଦାନ
ଶିବଙ୍କ ତ୍ରିଶୂଳ, ବିଷ୍ଣୁଙ୍କର ଚକ୍ର
ବାୟୁଙ୍କର ଧନୁର୍ବାଣ
ସୂର୍ଯ୍ୟଙ୍କର ଜ୍ୱାଳା, ବରୁଣଙ୍କ ଶଙ୍ଖ
ଇନ୍ଦ୍ରଙ୍କର ବଜ୍ରବାଣ
ଯମ କାଳଦଣ୍ଡ, ଅଗ୍ନିଙ୍କ ଦହନ
କମଣ୍ଡଳୁ ବ୍ରହ୍ମାଙ୍କର
ପ୍ରଦାନ କରିଲେ ଆପଣା ଆୟୁଧ
ଚନ୍ଦ୍ର, ବରୁଣ କୁବେର
ସିଂହବାହିନୀ ମାଆ ଦୁର୍ଗାଦେବୀ
ଦେବାସ୍ତ୍ର ଧାରଣ କରି
ମହା ତେଜସ୍ୱିନୀ ରୂପରେ ଧାଇଁଲେ
ତତ୍‌କ୍ଷଣ ମହିଷାପୁରୀ
ମହିଷାସୁରକୁ ବଧ କରିବାକୁ
ଘମାଘୋଟ ଯୁଦ୍ଧ କରି
ବିଫଳ ହୋଇଲେ ସବୁ ଅସ୍ତ୍ରକୁ ସେ
ତା'ଠାରେ ପ୍ରୟୋଗ କରି
ଶେଷରେ ସୁନ୍ଦରୀ ନାରୀ ରୂପ ନେଇ
ସମ୍ମୁଖରେ ଉଭା–ହୋଇ
ବିବସ୍ତ୍ର ହୋଇଲେ ଦେବୀ ମହାମାୟୀ
ବ୍ରହ୍ମାବର ଅନୁଯାୟୀ
ହୀନବଳ ହେଲା ଦୁର୍ଦ୍ଧର୍ଷ ମହିଷା
ଦରଶନେ ବିଶ୍ୱରୂପ
ତତ୍‌କ୍ଷଣ ସ୍ୱହସ୍ତେ ଦେବୀ ବଧ କଲେ
ବିଧାତ୍ରୀ ଶକ୍ତି ସ୍ୱରୂପ
ପୁରାଣ ବର୍ଣ୍ଣିତ ଇତିହାସ କହେ
ଶରତ ଶୁକ୍ଳ ଆଶ୍ୱିନ
ମହିଷାସୁରକୁ ବଧ କରିଥିଲେ
ବିଜୟା ଦଶମୀ ଦିନ
ଏହିଦିନ ମାଆ ବିଶ୍ୱ ବନ୍ଦନୀୟା
ସର୍ବତ୍ର ତୁମ୍ଭରି ପୂଜା
ଲଭିଛି ଆଦର ଏ ଧରା ଧାମରେ
ଶାରଦୀୟ ଦୁର୍ଗାପୂଜା

ପ୍ଲଟ୍–୧୧୮୪/୧୬୭୫, ଭୋଇନଗର
ରୋଡ୍ ନଂ–୮, ୟୁନିଟ୍–୯, ଭୁବନେଶ୍ୱର

# ଚିନ୍ମୟୀ ଚେଇଁ ଉଠିବ

ସ୍ୱାମୀଶ୍ରୀ ଜୟଦେବ ଭାରତୀ

ମରତରେ ଆଜି ଶରତ ଶୀତରେ
ମହିଷ ମାତିଛି ମଣିଷ ଭିତରେ
ତଥାପି ନିରାଶ ନହୁଅ ମିତରେ
ରଚିବା ଅଧରେ ମଧୁର ଗୀତରେ
ଆସିଛି ଆଜିରେ ଦଶହରା ଶୁଭସଂଧ୍ୟା
ଦିଗହରା ନୋହି ନେବାରେ ଶପଥ
ଭରିଦେବା ସବୁ ଆହତ ଅତୀତ
ବାସଭରା ହେବ ସକଳ ଜଗତ
ପ୍ରତି ଅନ୍ତରେ ମଧୁ ଛନ୍ଦରେ
ପ୍ରୀତି ଗନ୍ଧରେ ହସିବ ରଜନୀଗନ୍ଧା ।
ବୃକ୍ଷରେ କିପାଇଁ ଜ୍ୟୋତ୍ସ୍ନା ବାସ୍ନା
ପରଷି ପାରୁନି ଚନ୍ଦା, ହିମଗିରି ଶିଖୁ
ଝରୁନାହିଁ କିଆଁ କୁଳୁକୁଳୁ ନାଦେ
ମନ ଆନନ୍ଦେ ପାବନୀ ଅଳକାନନ୍ଦା ।
କେଉଁ ଅଧିକାରେ ଅଳିଆ ଫିଙ୍ଗି ଜଳକୁ କରୁଛ ନିନ୍ଦା ।
ତୁମ ଧର୍ମର ଏ କେଉଁ ନୀତିହେ
ଯେଉଁ ଭଗବାନ ପାଇଁ କି ସାଥୀହେ
ଯାଅ ମନ୍ଦିର ଧାମେ, ସେଇ ଭଗବାନ ନୁହେଁ କି ଚେତନ
କେଉଁ ଅର୍ଥରେ ହୀନ ସର୍ତ୍ତରେ ପ୍ରସ୍ତର ମଣ ତୁମେ,
କଣରେ କୋଣରେ ବିଦ୍ୟମାନ ଯେ– ରୂପ ଗଢି ତାକୁ
ଭୋଗ ବାଢି ଦିଅ ନିଜ ସ୍ୱାର୍ଥରେ କିଆଁ, ତଇଳ ଜାଗାରେ
ଜଳଭଳି ମନ– ଦୀପରେ ଜଳାଅ ନିଆଁ,
ଜନ ଅଜ୍ଞାନ ଅନ୍ଧାର ଧରାଧାମେ ।
ଚେତନକୁ କରି ଅଚେତନ ତୁମେ
ଭ୍ରାନ୍ତକୁ ସଂଭ୍ରାନ୍ତ ମାନ ହେ କେଉଁ ଦମ୍ଭରେ
ମଣହେ ବୁଦ୍ଧିମାନ, ମଣିଷକୁ ଗଣ ମାଟିଧୂଳି ଗୋଡି
ନାରୀ ନେତ୍ରରୁ ଲୋତକ ଝରାଇ ମୂର୍ତ୍ତିକୁ ଦିଅ ମାନ...
ଗଳି କନ୍ଦିରେ ଆଜି ବି ନନ୍ଦି କାଗଜ ଚୋବାଇ କାନ୍ଦେ
ଶିବ ମନ୍ଦିରରେ ପଥର ନନ୍ଦି ଗାଧାଏ ଅରୁଆ ଦୁଗ୍ଧେ
ଗୋପାଳନ ଯଦି ନକଲ ନାହିଁ ହେ ବଉଳାକୁ କିଆଁ ହାଣ !
ଦେବକି ଗୋ ସଖି ଉତ୍ତର ହସି
ନିର୍ଭୀକ ସୁରେ ଯଦି ମଣିଷକୁ ଡର
ଆଶାକର କିଆଁ ମଣିଷ ନିକଟୁ
ଭରସା ନରଖି ପାଇ ପାରିବ ଆଦର
ପାଇ ମଣିଷର ଦେହ... କୁକୁର ଶେଯେ ଶୁଆଇ ପାରୁଛ
ସଉକରେ ରଖି ନଉକରେ କିଆଁ ଭୟ, ମଣିଷ ଜନମ ପାଇ
ମଣିଷକୁ କର ହତାଦର ଏଡେ ଅମଣିଷ ଭାଇ
କହକିଆଁ କହ କହ, ମଣିଷରେ ନାହିଁ ସ୍ନେହ... ।
ପୂଜୁଛ କାଠର ଠାକୁର ମୂରତି
ଶୁଣହେ ଭକତ ପୂଜକ ସାରଥୀ
ନିଆଁରେ କାହାର ଉତାର ଆରତୀ
କବିତା ଛନ୍ଦେ ପଚାରେ ଭାରତୀ
କୋହର ଲୁହରେ କାନ୍ଦି,
ଆପଣାର ପଣ ଆଣିନ ଯେଯାଏଁ
ଗରିବ ବେଦନା ଶୁଣିନ ଯେଯାଏଁ,
ମଣିଷକୁ ମାନ ଦେଇନ
ଯେଯାଏଁ, ସେତେ ଦିନ ଯାଏଁ
ମୂର୍ତ୍ତି ଦେବତା ପଥର ପଥରେ ବନ୍ଦି ।
କଥା କହିବନି ବଥା ପାରିବନି ହରି
ମଉନ ମଗନେ ରହିବ ଜଳକା ସରି
କେହି ବଡସାନ ନୁହେଁ ନୁହେଁ କବି
ଭରଭର ଭର ସମାଦର ଭାବ ଭର,
ଆସ ଆସ ଭାଇ ପ୍ରୀତି ଗୀତି ଗାଇ
ମଣିଷେ ଆଦରି ଯଥା ପିତାମାତା
ସନ୍ତାନ ପାଇଁ ପରିବାର ଭାବଧର
କର କର କର ସମାଜର ସେବାକର ।
ଯେତେଦିନ ଯାଏଁ ଶ୍ରଦ୍ଧାର ସହ
ଆସିନ ଆଗେଇ ବସୁଧାର ପୁଅ
ମୂର୍ତ୍ତି ଭିତର ଚେତନାଟା କିଆଁ
କୁହ କୁହ ଉଇଁ ଉଠିବ...
ଯେତେବେଳେ ଭାଇ ଆମ କର୍ମରେ
ସତ୍ୟ ଚେତନା ଆମ ମର୍ମରେ
ମାନବତା ପାଇଁ ବେଦନାର କଇଁ
ଧର୍ମ ଜଳରେ ଫୁଟିବ ।

ଶାନ୍ତିଧାମ, ଧଣ୍ଡାମୁଣ୍ଡା
ବଲାଙ୍ଗୀର–୨୮